ସୋମଦେବ ଭଟ୍ଟ ବିରଚିତ

# କଥା ସରିତ ସାଗର

ଜଗନ୍ନାଥ ପାତ୍ର

ପାଇନ୍ ବୁକ୍ସ

କଥା ସରିତ ସାଗର

ଜଗନ୍ନାଥ ପାତ୍ର

ପ୍ରକାଶକ

କନିଷ୍କ

ପାଇନ୍ ବୁକ୍ସ

ମଧୁସୂଦନ ନଗର, ତୁଳସୀ ପୁର, କଟକ-୮

ଡି. ଟି. ପି. ଟାଇପ୍ ସେଟ୍

ସ୍କ୍ରିନା

କାଫଲା, କଟକ-୨

ପ୍ରଥମ ପ୍ରକାଶ : ବିଜୟା ଦଶମୀ ୧୯୯୮





**KATHA SARITA SAGARA**

*by* **Jagannath Patra**

Published *by*

Kanishka

**Pine Books**

Madhusudan Nagar, Tulasipur, Cuttack-8




**Price : Rs. 60/-**

ପତ୍ନୀଙ୍କ ହାତରେ

# ଭୂମିକା

ଗୁଣାଢ୍ୟଙ୍କ ବୃହତ୍ କଥା ବିଶ୍ୱ କଥା ସାହିତ୍ୟରେ ନିଜ ଶୈଳୀରେ ଅତୁଳନୀୟ । ରାମାୟଣ ଓ ମହାଭାରତକୁ ବାଦ୍ ଦେଲେ ଏହା ସଂସ୍କୃତ ସାହିତ୍ୟ ପରମ୍ପରାର ସବୁଠୁଁ ପ୍ରଭାବଶାଳୀ ପୁସ୍ତକ । ଏହି ପରମ୍ପରାରେ ଗୁଣାଢ୍ୟଙ୍କୁ ବାଲ୍ମିକୀ ଓ ବ୍ୟାସଙ୍କ ସହିତ ସମାନ ଭାବରେ ସମ୍ମାନିତ କରାଯାଇଥାଏ । ସେ ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀ ଦ୍ୱିତୀୟାର୍ଦ୍ଧରେ ଆନ୍ଧ୍ରର ରାଜା ସାତବାହାନଙ୍କ ସମସାମୟିକ ଥିଲେ । ସେ ପୁସ୍ତକଟି ପ୍ରାକୃତ ଭାଷାରେ ଲେଖିଥିଲେ । ପ୍ରାକୃତ ଭାଷା କେବଳ ଗୋଟିଏ ଅଞ୍ଚଳର ଆଦିମ ଜନତାଙ୍କ ଭାଷା ହୋଇଥିବାରୁ ରାଜ ଦରବାର ଓ ସାଧାରଣରେ ଗ୍ରହଣୀୟ ହେବା ପାଇଁ ପୁସ୍ତକଟି ସଂସ୍କୃତରେ ଅନୂଦିତ ହୋଇଥିଲା । ରାମାୟଣ ଓ ମହାଭାରତ ଭଳି ବୃହତ କଥାରେ ମଧ ଅନେକ ଅନୁବାଦ ହୋଇଛି ଓ ବିଭିନ୍ନ ଅନୁବାଦକ ଅନୁବାଦ କରିଛନ୍ତି । କାଳକ୍ରମେ ଅନୁବାଦକମାନେ ମୂଳ କଥାକୁ ଅକ୍ଷୁର୍ଣ୍ଣ ରଖି ନିଜ ନିଜ ଶୈଳୀରେ ସେମାନଙ୍କ ସମୟର ଓ ତା' ପୂର୍ବରୁ ପ୍ରଚଳିତ ଅନେକ କାହାଣୀ ମଧ ଯୋଡି ଦେଇଛନ୍ତି । ସେହିସବୁ ପୁସ୍ତକମାନଙ୍କ ମଧ୍ୟରେ ସୋମଦେବ **ଭଟ୍ଟଙ୍କ ରଚିତ** କଥା ସରିତ ସାଗର ସବୁଠୁଁ ବେଶୀ ଲୋକପ୍ରିୟ । ସେ ଏଇ ପୁସ୍ତକକୁ ସମ୍ଭବତଃ ଏକାଦଶ ଖ୍ରୀଷ୍ଟାବ୍ଦରେ ରଚନା କରିଥିଲେ ।

ପ୍ରକୃତରେ କଥା ସରିତ ସାଗର ଭାରତୀୟ କଥା ପରମ୍ପରାର ଭଣ୍ଡାର । ଏହାକୁ ଆମ ଜାତୀୟ ସଂସ୍କୃତିର ଅନ୍ୟତମ ଶ୍ରେଷ୍ଠ ପ୍ରତିନିଧି ରୂପେ ବିବେଚନା କରାଯାଇପାରେ । ଏଥିରେ ପୁରାଣ ଓ ଇତିହାସ, ବାସ୍ତବ ଓ ଅବାସ୍ତବ, ସତ୍ୟ ଓ ଇନ୍ଦ୍ରଜାଲର ଅଦ୍ଭୁତ ମିଳନ ଘଟିଛି । ଏଥିରେ ମଣିଷ ଚରିତ୍ରର ଯେଉଁ ବୈଚିତ୍ର୍ୟ ଆମେ ପାଉ, ତାହା ଅନ୍ୟଠି ବିରଳ । ଅଦ୍ଭୁତ ଚରିତ୍ର ଓ ଇତିହାସପ୍ରସିଦ୍ଧ ନାୟକମାନଙ୍କର କଥା ବି ଏଥିରେ ଅତି ସୁନ୍ଦର ଓ ଚମତ୍କାର ଭାବେ କୁହାଯାଇଛି । ବ୍ୟାଡ଼ି, ବରରୁଚି, ଇନ୍ଦ୍ରଦତ୍ତ ଓ ପାଣିନୀଙ୍କ ଭଳି ବହୁ ପଣ୍ଡିତ ଓ ବ୍ୟାକରଣବିତ୍‌ମାନଙ୍କ ବିଷୟରେ ଅନେକ ଗତିପୂର୍ଣ୍ଣ କାହାଣୀ ମଧ ଏଥିରେ ଅଛି । ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀରୁ ମଧ୍ୟଯୁଗ ପର୍ଯ୍ୟନ୍ତ ଭାରତୀୟ ପରମ୍ପରା ଓ ସଂସ୍କୃତିର ଦସ୍ତାବିଜ ରୂପେ କଥା ସରିତ ସାଗରକୁ ବିବେଚନା କରାଯାଇପାରେ । ସୋମଦେବ ଭଟ୍ଟ ନିଜ ଅନୁବାଦରେ ଅନେକ କାହାଣୀ, ଯଥା : ବିକ୍ରମାଦିତ୍ୟ, ବେତାଳ ପଞ୍ଚବିଂଶତି, ଦଶ କୁମାର ଚରିତ, କାଦମ୍ବରୀ ଓ ମାଳତୀ ମାଧବ ଇତ୍ୟାଦି ସଂଲଗ୍ନ କରି କଥା ସରିତ ସାଗରକୁ ଅଧିକ ସରସ ଓ ସୁନ୍ଦର କରିପାରିଛନ୍ତି ।

କଥା ସରିତ ସାଗର କଥାମାନଙ୍କର ଏକ ରହସ୍ୟ ଭରା ସିନ୍ଦୁକ । ସେ ସିନ୍ଦୁକ ଭିତରେ ପେଡ଼ି ଭିତରେ ପେଡ଼ି ଓ ପୁଣି ପେଡ଼ି ଭିତରେ ଫରୁଆ ଓ ଫରୁଆ ଭିତରେ ଫରୁଆ ଭଳି କାହାଣୀମାନ ଏମିତି ପୁରିରହିଛି ଯେ, ଗୋଟିଏ ପେଡ଼ିକୁ ଖୋଲିଲେ ଆଉ ଗୋଟିଏ ପେଡି ଓ ପେଡି ଭିତରୁ ଫରୁଆକୁ ଖୋଲିଲେ ତା ଭିତରୁ ଆଉ ଗୋଟିଏ ଫରୁଆ ବାହାରିବା ପରି କାହାଣୀମାନ ବାହାରି ଆସନ୍ତି ।

ସୋମଦେବ ଭଟ୍ଟ କଥା ସରିତ ସାଗରକୁ ୨୧୩୮୮ଟି ଶ୍ଳୋକରେ ରଚନା କରିଥିଲେ । ଏହା ୧୨୪ଟି ପରିଚ୍ଛେଦ ଓ ୧୮ଟି ଖଣ୍ଡରେ ବିଭକ୍ତ । ମୂଳ କାହାଣୀରେ ଅନେକଗୁଡିଏ କାହାଣୀ ଯୋଡା ହେବାଦ୍ୱାରା ପୁସ୍ତକଟି ଗତିପୂର୍ଣ୍ଣ ହୋଇଥିଲେ ହେଁ ଜଟିଳ ମଧ ହୋଇଛି । ଜଟିଳତା ଓ ବିସ୍ତୃତ ବିବରଣୀରୁ ରକ୍ଷା କରିବା ପାଇଁ ଏହି ଅନୁବାଦରେ ଅନେକ ଅବାନ୍ତର କାହାଣୀକୁ ବାଦ୍ ଦିଆଯାଇଛି । ମୂଳ କାହାଣୀର ଧାରାକୁ ସ୍ୱଚ୍ଛନ୍ଦ କରିବା ପାଇଁ ବିବରଣୀଗୁଡିକୁ ମଧ ସଂକ୍ଷିପ୍ତ କରାଯାଇଛି ।

ମୋ'ର ବିଶ୍ୱାସ ଏଇ ଅନୁବାଦ ନୂଆ ପୀଢ଼ିର ପାଠକମାନଙ୍କୁ ନିର୍ମଳ ମନୋରଞ୍ଜନ ଦେବା ସଙ୍ଗେ ସଙ୍ଗେ ଭାରତୀୟ ପରମ୍ପରା ଓ ସଂସ୍କୃତି ସହିତ ସୁପରିଚିତ କରାଇବାକୁ ସମର୍ଥ ହେବ ।

**ଜଗନ୍ନାଥ ପାତ୍ର**

# କଥାରମ୍ଭ

ଶିବଙ୍କୁ ପ୍ରସନ୍ନ ଦେଖି ପାର୍ବତୀ ପୁଣିଥରେ ଅନୁରୋଧ କଲେ : ପ୍ରଭୁ ! ଆପଣ ମୋତେ ସରସ ସୁନ୍ଦର ଚମତ୍କାର ଗପଟେ ଶୁଣାଇବେ ବୋଲି କଥା ଦେଇଥିଲେ । ଭୁଲିଗଲେଣି କି ?

ଶିବ ସ୍ମିତ ହସି କହିଲେ : ହଁ, ମନେ ଅଛି ! ତମେ ଗପ ନ ଶୁଣି ମତେ କ'ଣ ଛାଡିବ ! କୁହ, କି ଗପ ଶୁଣିବ କୁହ ?

ପାର୍ବତୀ ଶିବଙ୍କ ସମ୍ମତିରେ ଆନନ୍ଦିତ ହୋଇ କହିଲେ : ଆପଣ ମତେ ଏମିତି ସେମିତି ଅନେକ ଗପ ଶୁଣାଇଛନ୍ତି । ହେଲେ ମୁଁ ଆପଣଙ୍କଠୁଁ ଆଜି ବହୁତ ବଡ ଗପଟେ ଶୁଣିବି । ଏତେବଡ ଗପ ଯେ, ଯେତେ ଶୁଣୁଥିଲେ ମୋଟେ ସରୁ ନଥିବ !

: ହଉ ହେଲା ! ବଡ ଗପଟେ ଶୁଣାଇବି । ଏବେ ଖୁସିତ ?

'ଏମିତିଆ ଗପ କହିବ ଯେ, ଯେମିତି ସେମିତିଆ ଗପ ଆଉକେହି ଜାଣି ନଥିବେ କି ଶୁଣି ନଥିବେ !'

: ହଉ ହେଲା ଏବେ !

'ମୁଁ କିନ୍ତୁ ଆଉ କାହାକୁ ଗପ ଶୁଣିବାକୁ ଦେବି ନାହିଁ । ଏକେଲା ହିଁ ଶୁଣିବି ।' ପାର୍ବତୀ ଅଳି କଲେ ।

ପାର୍ବତୀଙ୍କ ଅଳି ପାଖରେ ଶିବ କ'ଣ ଆଉ ମନା କରିପାରନ୍ତେ ? ପାର୍ବତୀଙ୍କୁ ସାଥିରେ ନେଇ ସେ କୈଳାସ ପର୍ବତର ନିଜ ଗୁମ୍ଫାରେ ବସିଗଲେ ଯେ ବସିଗଲେ । ଆଉ ଅସରନ୍ତି କାହାଣୀର ପେଡି ଖୋଲିଦେଲେ । ପାର୍ବତୀ ଶୁଣି ଚାଲିଲେ । କେତେ ସମୟ ଯେ ବିତିଗଲା, ଦୁହିଁଙ୍କର ଖିଆଲ ବି ରହିଲା ନାହିଁ । ଦିନ ପରେ ଦିନ, ମାସ ପରେ ମାସ, ବର୍ଷ ପରେ ବର୍ଷ ବିତିଗଲା । କାହାଣୀ ଶେଷ ହେଉ ନଥିଲା । ଗୁମ୍ଫା ଦ୍ୱାର ମୁହଁରେ ନନ୍ଦୀ ପହରା ଦେଉଥିଲେ । କାହାକୁ ଭିତରକୁ ଯିବାକୁ ଅନୁମତି ନଥିଲା ।

ଏହିଭଳି ପାର୍ବତୀ ଶିବଙ୍କଠାରୁ ବୃହତ୍ କଥା ଶୁଣିଲେ । ଶୁଣିସାରି ସେ ତୃପ୍ତ ଓ ସନ୍ତୁଷ୍ଟ ହେଲେ ।

ଦିନେ ପାର୍ବତୀ ଜୟା ଓ ବିଜୟା ଆଦିଙ୍କ ଗହଣରେ ବସିଥିଲେ । ତାଙ୍କ ମନରେ ଖିଆଲ ଆସିଲା ଯେ ଶିବଙ୍କଠାରୁ ଶୁଣିଥିବା କଥା ସେ ସେମାନଙ୍କୁ ଶୁଣାଇବେ । ସେ କହିଲେ : ଚାଲ, ମୁଁ ତୁମମାନଙ୍କୁ ଆଜି ଏମିତି କଥା ଶୁଣାଇବି ଯେ ଯୋଉ କଥାକୁ ମୋ ଛଡ଼ା ଆଉ କେହି ଜାଣି ନାହାନ୍ତି ।

ତା'ପରେ ସେ ବୃହତ୍ କଥା ଶୁଣାଇଲେ ।

ଜୟା କଥା ମଝିରେ ବାଧାଦେଇ କହିଲା : ଦେବୀ, ଏଇକଥା ତ ମୁଁ ଆଗରୁ ଶୁଣିଛି । ତା'ପରେ ସେ ପାର୍ବତୀଙ୍କୁ ବାକି କଥା ଶୁଣାଇବାକୁ ଲାଗିଲା ।

ପାର୍ବତୀ ତ ପ୍ରଥମରୁ ସ୍ତବ୍ଧ ହୋଇ ଯାଇଥିଲେ । ସେ ଜୟାକୁ ବିସ୍ଫାରିତ ଆଖିରେ ଚାହିଁ ରହିଲେ । 'ତୋତେ ଏଇ କଥା ଜଣା ?' ସେ ଚକିଯାଇ ପଚାରିଲେ ।

: ହଁ, ଏକଥା ମୁଁ ମୋ ସ୍ୱାମୀ ପୁଷ୍ପଦନ୍ତଙ୍କଠୁଁ ଶୁଣିଛି ।

ପାର୍ବତୀଙ୍କ ଆଖି ରାଗରେ ଲାଲ ପଡ଼ିଗଲା । ସେ କମ୍ପିବାକୁ ଲାଗିଲେ । ଭଗବାନ ଶିବ ଏପରି କାହିଁକି କଲେ ? ସେ ପୁଷ୍ପଦନ୍ତଙ୍କୁ ଏକଥା କାହିଁକି ଶୁଣାଇଲେ ?

ସେ ଝଡ଼ଭଳି ଉଠି ଶିବଙ୍କ ସମ୍ମୁଖରେ ଯାଇ ପହଞ୍ଚିଲେ । କ୍ରୋଧ ଓ ଅପମାନଭରା ରୁଦ୍ଧ କଣ୍ଠରେ ସେ ଭଗବାନ ଶିବଙ୍କୁ କହିଲେ : ଯେ ଆପଣ କ'ଣ କଲେ ? ଆପଣ ସେଇ କଥା ଆପଣଙ୍କ ସେବକମାନଙ୍କୁ ବି ଶୁଣାଇଛନ୍ତି ! ଏମିତି ଆପଣ କାହିଁକି କଲେ ?

: ମୁଁ ? ମୁଁ ତ ସେଇ କଥା ତୁମ ବ୍ୟତୀତ ଆଉ କାହାକୁ ବି କହି ନାହିଁ ।

: ସେଇ କଥା ତ ସମସ୍ତେ ଜାଣନ୍ତି । ପୁଷ୍ପଦନ୍ତ ଜୟାକୁ ବି ସେଇକଥା ଶୁଣେଇଛି ।

ଈର୍ଷା ଓ କ୍ରୋଧରେ ପାର୍ବତୀଙ୍କ ମୁହଁ ଲାଲ ହୋଇଯାଇଥିଲା । ଶିବ ମୁଗ୍ଧହୋଇ ତାଙ୍କୁ ଚାହିଁ ରହିଲେ । ପୁଣି ହସି ହସି କହିଲେ : ମୁଁ କେବେ ବି କୌଣସି ସେବକଙ୍କୁ ବୃହତ୍ କଥା ଶୁଣେଇନି । ନନ୍ଦୀକୁ କୁହ ଏବଂ ସେବକମାନଙ୍କୁ ମୋ ପାଖକୁ ଡାକୁ ।

ସବୁ ସେବକଙ୍କ ଉପସ୍ଥିତିରେ ଶିବଙ୍କ ଆଗରେ ଭୟରେ ଥରି ଥରି **ପୁଷ୍ପଦନ୍ତ** ତା'ର ଦୋଷ ମାନିଗଲା । ଯେତେବେଳେ ଶିବ ପାର୍ବତୀଙ୍କୁ ବୃହତ୍ କଥା ଶୁଣାଇବାକୁ ଆରମ୍ଭ କରୁଥିଲେ, ସେତେବେଳେ ସେ ଏମାନଙ୍କ ଦର୍ଶନ ପାଇଁ ପହଞ୍ଚିଥିଲା । ନନ୍ଦୀ ଗୁମ୍ଫା ଭିତରକୁ ଯିବାକୁ ମନାକରି ଦେଇଥିଲା । ନନ୍ଦୀ ମନା କରିବାରେ କୌତୂହଳୀ ହୋଇ ସେ ଯୋଗ ଶକ୍ତି ବଳରେ ଅଦୃଶ୍ୟ ହୋଇ ଗୁମ୍ଫା ଭିତରକୁ ଯାଇ ଲୁଚି ଯାଇଥିଲା ଓ ସବୁକଥା ଶୁଣିନେଇଥିଲା । ଆଉ ଜୟାକୁ ସେଇକଥା ଶୁଣାଇ ଦେଇଥିଲା ।

: ନୀଚ ! ତୋ'ର ଯେ ସାହସ ! –ପାର୍ବତୀଙ୍କ ଆଖିରୁ ଯେମିତି ନିଆଁ ବାହାରୁ ଥିଲା ।

ପୁଷ୍ପଦନ୍ତ ଭୟରେ ଥରିବାକୁ ଲାଗିଲା । ତା' ବନ୍ଧୁ ମାଲ୍ୟବାନ ତାକୁ ସାହାଯ୍ୟ କରିବାକୁ ଆଗେଇଯାଇ ପାର୍ବତୀଙ୍କ ପାଦ ଉପରେ ମଥା ରଖି ବିନୟରେ କହିଲା : ଯେ ମୂର୍ଖ କୌତୂହଳରେ ଏଇ ଧୃଷ୍ଟତା କରି ଦେଇଛି, ମା ! ତା'ର ପ୍ରଥମ **ଅପରାଧକୁ** କ୍ଷମାକର ।

: ଆଚ୍ଛା, ତୁ ତା ପାଇଁ ଓକିଲାତି କରୁଛୁ ? **ମୁଁ ତୁମ ଦୁଇଜଣଙ୍କୁ** ଅଭିଶାପ ଦେଉଛି । ତମେ ଦୁଇଜଣ ଯାଇ ମଣିଷ ଯୋନିରେ ଜନ୍ମହୁଅ । ଯାଅ ।

ଶିବ ନୀରବରେ ମୃଦୁ ମୃଦୁ ହସୁଥିଲେ । ପାର୍ବତୀ ଓ ସେବକମାନଙ୍କ କଥାବାର୍ତ୍ତାରେ ସେ କିଛି କହିଲେ ନାହିଁ ।

ସ୍ୱାମୀଙ୍କୁ ଅଭିଶାପ ଦେବାର ଦେଖି ଜୟା ଦୌଡ଼ି ଆସିଲା ଓ କାନ୍ଦି କାନ୍ଦି ପାର୍ବତୀଙ୍କୁ ଦୟା କରିବାକୁ ଭିକ୍ଷା ମାଗିଲା । ସେବକ ଦୁଇଜଣ ମଧ୍ୟ ପାର୍ବତୀଙ୍କ ପାଦ ଉପରେ ମଥା ରଖି ପଡ଼ି ରହିଲେ ।



ଶେଷରେ ପାର୍ବତୀଙ୍କ ମନରେ ଦୟାହେଲା । ଅଭିଶାପରୁ ମୁକ୍ତିର ଉପାୟ ଜଣାଇବାକୁ ଯାଇ ସେ କହିଲେ : ସୁପ୍ରତିକ ନାମକ ଯକ୍ଷ ଶାପଗ୍ରସ୍ତ ହୋଇ କାଣଭୂତି ନାମକ ପିଶାଚ ହୋଇ ବିନ୍ଧ୍ୟ ବଣରେ ରହୁଛି । ଶୁଣ ପୁଷ୍ପଦନ୍ତ, ମଣିଷ ଜନ୍ମରେ ତମେ ତାକୁ ଏଇ କଥା ଶୁଣାଇଲେ ତମେ ଶାପମୁକ୍ତ ହେବ । ଏଇ ମାଲ୍ୟବାନ ସେଇ କାଣଭୂତି ଠୁଁ ଏଇକଥା ଶୁଣି ମଣିଷମାନଙ୍କ ମଧ୍ୟରେ ତା'ର ପ୍ରଚାର କରିବ । ତା'ପରେ ସେ ମଧ୍ୟ ମୁକ୍ତି ପାଇବ ।

ପୁଷ୍ପଦନ୍ତ ଓ ମାଲ୍ୟବାନ ସଙ୍ଗେ ସଙ୍ଗେ ଯାଇ ମନୁଷ୍ୟ ରୂପରେ ଜନ୍ମ ନେଲେ ।

ତା'ପରେ ବହୁ ଦିନ ବିତିଗଲା । ସାମାନ୍ୟ କଥାରେ ନିଜ ସ୍ୱାମୀଙ୍କର ପ୍ରିୟ ସେବକମାନଙ୍କୁ ମର୍ତ୍ତ୍ୟଲୋକକୁ ନିର୍ବାସିତ କରିଥିବାରୁ ପାର୍ବତୀଙ୍କ ମନର ଅନୁଶୋଚନା ହେଉଥିଲା । ଦିନେ ସେ ଭଗବାନ ଶିବଙ୍କୁ ପଚାରିଲେ : ଭଗବାନ ! କ'ଣ ହେଲା ପୁଷ୍ପଦନ୍ତ ଓ ମାଲ୍ୟବାନର ? ସେମାନେ କୌଣସି କେବେ ଫେରି ଆସିବେ ?

ଶିବ ପୁଣି ମୃଦୁ ହସିଲେ । କହିଲେ :– ପ୍ରଥମେ ତ ଶାପ ଦେଇଦେଲ, ଏବେ ଦୟାରେ ତରଳିଯାଉଛ । ପୃଥିବୀକୁ ଯାଇ ଆମ ପୁଷ୍ପଦନ୍ତ ବହୁତ ଧନୀ ହୋଇଯାଇଛି ।

: ଆଚ୍ଛା ! ଚକିତ ହୋଇ ପାର୍ବତୀ ପଚାରିଲେ– ତା' ବିଷୟରେ କିଛି କୁହନ୍ତୁ ସ୍ୱାମୀ ?

: ହେଇ ଦେଖ– ଶିବ ବହୁତ ତଳକୁ ପୃଥିବୀ ଆଡ଼କୁ ଅଙ୍ଗୁଳି ଦେଖାଇ କହିଲେ– ସେଇ ଲୋକକୁ ଦେଖୁଛ ?

: ହଁ । ସେଇଠି ? ସେଇ ବିନ୍ଧ୍ୟ ବଣରେ ? ସେ କିଏ ?

: ସେ ପୁଷ୍ପଦନ୍ତ । ସେ ପାଟଳୀପୁତ୍ର ରାଜା ନନ୍ଦର ମନ୍ତ୍ରୀ ବରରୁଚି ହୋଇଯାଇଛି । ଆଉ ସେ ଶାପଗ୍ରସ୍ତ ଯକ୍ଷକୁ ତୁମର ପ୍ରିୟ କଥା ଶୁଣାଇବାକୁ ଯାଉଛି ..........: । ସେଇ ବରରୁଚି କାତ୍ୟାୟନ ନାମରେ ମଧ୍ୟ ପରିଚିତ । ସେ ବ୍ୟାକରଣରେ ପଣ୍ଡିତ ବନି ଯାଇଛି ।

## ବରରୁଚି କଥା

ବରରୁଚିଙ୍କ ଠାରୁ ବୃହତ କଥା ଶୁଣି ବିନ୍ଧ୍ୟ ଜଙ୍ଗଲରେ ପିଶାଚ ରୂପରେ ରହୁଥିବା କାଣଭୂତି ଶାପମୁକ୍ତ ହୋଇ ତାକୁ ପ୍ରଶଂସା କରି କହିଲା : ଆପଣ ତ ଶିବଙ୍କ ଅବତାର ଭଳି ଲାଗୁଛନ୍ତି । ଶିବଙ୍କ ଛଡ଼ା ଏମିତିକା କଥା ଆଉ କିଏ ଶୁଣାଇ ପାରିବ ? ଯଦି ଗୋପନୀୟ ନ ହୋଇଥାଏ, ତା'ହେଲେ ଆପଣ ଆପଣଙ୍କ ନିଜ କଥା ମୋତେ ଶୁଣାନ୍ତୁ ।

ବରରୁଚି କହିଲେ : ଶୁଣ କାଣଭୂତି, ମୁଁ ତୁମକୁ ମୋ ନିଜକଥା ବି ଶୁଣାଉଛି । କୌଶାମ୍ବୀ ନଗରରେ ସୋମଦତ୍ତ ନାମକ ଜଣେ ବ୍ରାହ୍ମଣ ରହୁଥିଲେ । ବସୁଦତ୍ତା ତାଙ୍କ ସ୍ତ୍ରୀ । ସେମାନେ ହେଉଛନ୍ତି ମୋ ବାପା ମା । ମୁଁ ଛୋଟ ଥିଲାବେଳେ ମୋ ବାପା ମରିଗଲେ । ମା' ମୋତେ ବହୁ କଷ୍ଟରେ ପାଳିଲେ ।

ଦିନକର କଥା । ଦୁଇଜଣ ବାଟୋଇ ଆମ ଘରକୁ ଆସିଲେ । ବ୍ରାହ୍ମଣ ଦୁଇଜଣ ବହୁ ଦୂରରୁ ଚାଲି ଚାଲି ଆସିଥିଲେ । ହାଲିଆ ହୋଇଥିବା ଯୋଗୁ ଆମେ ତାଙ୍କୁ ଆମଘରେ ରହିବାକୁ ଦେଲୁ । ରାତି ହୋଇଯାଇଥିଲା । ଦୂରରୁ ମୃଦଙ୍ଗ ବାଜିବା ଶୁଣାଗଲା । ମୃଦଙ୍ଗ ଶବ୍ଦ ଶୁଣିବା ମାତ୍ରେ ମୋ ମା'ଙ୍କ ଆଖି ଲୁହରେ ଛଳଛଳ ହୋଇଗଲା ଓ ସେ ମୋତେ କହିଲେ– ପୁଅ, ଇଏ ବାପାଙ୍କ ବନ୍ଧୁ ନନ୍ଦ । ସେ ଜଣେ ଖୁବ୍ ଭଲ ନାଚିଲାବାଲା । ଗୀତରେ ତାଙ୍କ ନାଚ ଚାଲୁଛି ।

ମୁଁ ତ ପିଲା ଥିଲି । ଉତ୍ସାହିତ ହୋଇ କହିଲି— ମା', ମୁଁ ନନ୍ଦଙ୍କାଙ୍କ ନାଚ ଦେଖିବାକୁ ଯାଉଛି । ଫେରି ଆସି ତୁମକୁ ତାଙ୍କ ଅଭିନୟର ସବୁକଥା ଶୁଣେଇବି । ଆଉ ତାଙ୍କ ନାଚ ବି ଅବିକଳ ନାଚି ଦେଖେଇବି ।

ଆମ ମା'-ପୁଅଙ୍କ କଥାବାର୍ତ୍ତା ସେଇ ଅତିଥି ଦୁଇଜଣ ଶୁଣୁଥିଲେ । ତାଙ୍କ ଭିତରୁ ଜଣେ ବଡ଼ କୌତୂହଳୀ ହୋଇ ପଚାରିଲା— ମା, ଏ ପିଲା କ'ଣ କହୁଛି ?

ମୋ ମା' କହିଲା— ମୋ ପୁଅ ବରରୁଚି ଭାରି ବୁଦ୍ଧିଆ । ଥରେ ସେ ଯାହା ଦେଖେ ବା ଶୁଣେ, ଅବିକଳ ସେମିତି ସେ ସଙ୍ଗେ ସଙ୍ଗେ କରିଦିଏ ।

ମୋ ପରୀକ୍ଷା ନେବାକୁ ସେଇ ବ୍ରାହ୍ମଣ ବୈଦିକ ବ୍ୟାକରଣରୁ ଗୋଟିଏ ଅଧ୍ୟାୟ ମୋ ଆଗରେ ବୋଲିଲେ । ମୁଁ ଶୁଣିଲି ଓ ଅବିକଳ ଦୋହରାଇ ଦେଲି ।

ସେଇ ବ୍ରାହ୍ମଣ ସଙ୍ଗେ ସଙ୍ଗେ ମୋ ମାଆଙ୍କ ପାଦତଳେ ପଡ଼ି କହିଲେ— ମୁଁ ହେଉଛି ବ୍ୟାଡ଼ି । ଇଏ ମୋର ବନ୍ଧୁ ଇନ୍ଦ୍ରଦତ୍ତ । ଆମେ ବି ଏମିତିକା ଅସାଧାରଣ ବୁଦ୍ଧିମାନ ପିଲା ଖୋଜୁଛୁ । ଆପଣଙ୍କ ଘରକୁ ଆସି ଆମ ଜନ୍ମ ସାର୍ଥକ ହୋଇଗଲା ।

ମୋ ମା' ପଚାରିବାରୁ ବ୍ୟାଡ଼ି ନିଜ କଥା ଏହି ପ୍ରକାର କହିଲେ—ବେତସ ନଗରୀରେ ଦେବସ୍ୱାମୀ ଓ କରମ୍ଭକ ନାମରେ ଦୁଇ ଭାଇ ରହୁଥିଲେ, ସେମାନଙ୍କ ମଧ୍ୟରୁ ଜଣକର ପୁଅ ହେଉଛି ମୁଁ— ବ୍ୟାଡ଼ି ଆଉ ଅନ୍ୟ ଜଣକର ପୁଅ ହଉଚି ଯେ— ଇନ୍ଦ୍ରଦତ୍ତ । ମୋ ବାପା ମୋ ଜନ୍ମ ପରେ ପରେ ମରିଗଲେ । ଆଉ ତାଙ୍କ ଦୁଃଖରେ କିଛିଦିନ ପରେ ଇନ୍ଦ୍ରଦତ୍ତଙ୍କ ବାପା ବି ମରିଗଲେ । ସ୍ୱାମୀମାନେ ନଥିବାରୁ ଆମ ମା'ମାନେ ବି କାନ୍ଦିକାଟି ଅଳ୍ପଦିନ ଭିତରେ ମରିଗଲେ । ଆମେ ଦୁହେଁ ଅନାଥ ହୋଇଗଲୁ । ଏଣେ ତେଣେ ବୁଲିଲୁ । ଆମ ପାଖରେ ଧନ ବହୁତ ଥିଲା, ପାଠ ନଥିଲା । ତେଣୁ ଆମେ ଦୁହେଁ କୁମାର କାର୍ତ୍ତିକେୟଙ୍କୁ ପୂଜାକଲୁ । ଦିନେ କାର୍ତ୍ତିକେୟ ଆମକୁ ସ୍ୱପ୍ନରେ ଦର୍ଶନଦେଲେ ଓ କହିଲେ ଯେ, ନନ୍ଦ ରାଜୁତି କରୁଥିବା ପାଟଳୀପୁତ୍ର ନଗରରେ ବର୍ଷ ନାମରେ ଜଣେ ବ୍ରାହ୍ମଣ ରହୁଛନ୍ତି, ତାଙ୍କଠୁଁ ଆମେ ବିଦ୍ୟାଲାଭ କରିପାରୁ ।

ଆମେ ଦୁହେଁ ପାଟଳୀପୁତ୍ରରେ ପହଞ୍ଚିଲୁ । ବହୁତ ପଚରା ଉଚୁରା କଲାପରେ ଲୋକମାନେ କହିଲେ ଯେ ବର୍ଷ ନାମରେ ଯଦି କେହି ମୂର୍ଖ ଥାଏ ତ, ସେ ସେଇ ନଗରୀରେ ରହୁଛି । ସେଇଭଳି ଢଙ୍ଗରେ ପାଟଳୀପୁତ୍ର ନଗରବାସୀ ବର୍ଷଙ୍କ ନାଁ ନେଲେ, ଆମ ମନ ଦବିଗଲା । ସେ ଯାହାହେଉ, କୌଣସି ମତେ ବର୍ଷଙ୍କ ଘରର ଠିକଣା ସଂଗ୍ରହକରି ଆମେ ତାଙ୍କ ଘରେ ପହଞ୍ଚିଲୁ । ବର୍ଷଙ୍କ ଘର ମୂଷାଗାତରେ ଭର୍ତ୍ତି ହୋଇଥିଲା । ଘରର କାନ୍ଥସବୁ ନଇଁ ଯାଇଥିଲା ଓ ଛପରର ଅଧାଅଧି ଉଡ଼ି ଯାଇଥିଲା । ସେଇ ଘର ଭିତରେ ବର୍ଷ ଧ୍ୟାନମଗ୍ନ ହୋଇ ବସିଥିଲେ । ତାଙ୍କ ସ୍ତ୍ରୀ ଆମର ଦେଖାଶୁଣା କଲେ । ସେ ବଡ ଦୟନୀୟା ଦେଖା ଯାଉଥିଲେ— ଧୂସର ଦେହ, ରୋଗିଣା ଓ ସେ ପୁରୁଣା ଫଟା ଶାଢ଼ୀ ପିନ୍ଧିଥିଲେ । ତାଙ୍କୁ ଆମର ଆସିବାର କାରଣ କହିବାରୁ ସେ କହିଲେ— ତୁମେମାନେ ମୋ ପୁଅ ଭଳି । ମୁଁ ତୁମକୁ ଆମ ନିଜକଥା ଶୁଣାଉଛି ।

ବର୍ଷଙ୍କ ସ୍ତ୍ରୀ ତାଙ୍କ କଥା ଏହି ପ୍ରକାର କହିଲେ— ଏଇ ପାଟଳୀପୁତ୍ର ନଗରୀରେ ଶଙ୍କର ସ୍ୱାମୀ ନାମକ ଜଣେ ବ୍ରାହ୍ମଣ ରହୁଥିଲେ । ତାଙ୍କର ଦୁଇ ପୁଅ— ଜଣେ ହେଉଛନ୍ତି ମୋ ସ୍ୱାମୀ ବର୍ଷ ଓ ଅନ୍ୟ ଜଣକ ଉପବର୍ଷ । ମୋ ସ୍ୱାମୀ ମୂର୍ଖ ଓ ଗରୀବ ଥିଲେ, କିନ୍ତୁ ତାଙ୍କ ସାନ ଭାଇ ଉପବର୍ଷ ବଡ଼ ପଣ୍ଡିତ ଓ ଧନୀ ଥିଲେ । ସେତେବେଳେ ବର୍ଷା ଦିନ ଥିଲା । ଏଇ ଋତୁରେ ସ୍ତ୍ରୀ ଲୋକମାନେ ଗୁଡ଼ ଆଉ ଅଟାରେ ପିଠା କରନ୍ତି ଓ ସେଇ ପିଠାକୁ ଲିଙ୍ଗ ବା ଯୋନି ଆକାରରେ ତିଆରିକରି ମୂର୍ଖ ବ୍ରାହ୍ମଣମାନଙ୍କୁ ଦାନ ଦିଅନ୍ତି । ଏହି କଦର୍ଯ୍ୟ ପ୍ରଥା ଏଠାରେ ବହୁଦିନରୁ ଚଳିଆସୁଥିଲା । ମୋ ସାନ



ଯାଆଙ୍କୁ ଆଉ କୌଣସି ବ୍ରାହ୍ମଣ ମିଳିଲେନି, ସେ ତା'ର ସେଇ ପିଠାକୁ ତା'ର ଦେଢ଼ଶୁର ତଥା ମୋ ସ୍ୱାମୀଙ୍କୁ ଦେଇଦେଲା । ଆଉ ମୋ ସ୍ୱାମୀ ଖୁସିହୋଇ ସେଇ ପିଠା ଘରକୁ ନେଇଆସିଲେ । ସାନ ଯାଆର ଏଇଭଳି ବ୍ୟବହାରରେ ମୋ ଦେହରେ ନିଆଁ ଲାଗିଗଲା । ମୁଁ ମୋ ସ୍ୱାମୀଙ୍କୁ ବହୁତ ଗାଳି ଦେଲି । ସେ ମଧ୍ୟ ନିଜର ମୂର୍ଖତା ଓ ଅଜ୍ଞାନତା ବୁଝିପାରି ବହୁତ ଅନୁତାପ କଲେ, ଆଉ କୁମାର କାର୍ତ୍ତିକେୟଙ୍କୁ ପୂଜା କରିବାକୁ ଲାଗିଲେ । କୁମାର କାର୍ତ୍ତିକେୟ ତାଙ୍କୁ ବର ଦେଲେ ଯେ, ତୁମକୁ ସବୁ ବିଦ୍ୟା ପ୍ରାପ୍ତହେବ । କିନ୍ତୁ ତୁମେ ଏକାଥରେ ଶୁଣି ପୁରା ମନେରଖି ପାରୁଥିବା କୌଣସି ଲୋକକୁ ପ୍ରଥମେ ଶିଖାଇବେ ।

ଏତକ କହି ବର୍ଷଙ୍କ ସ୍ତ୍ରୀ ଆମ ଦୁହିଁଙ୍କୁ (ବ୍ୟାଡ଼ି ଓ ଇନ୍ଦ୍ରଦତ୍ତଙ୍କୁ) କହିଲେ— ପୁଅମାନେ, ଯଦି ତୁମେମାନେ ମୋ ସ୍ୱାମୀଙ୍କ ଠାରୁ ସବୁ ପାଠ ଶିଖିବାକୁ ଚାହଁ, ତେବେ ଜଣେ ଥରେ ଶୁଣି ପୁରା ମନେରଖି ପାରୁଥିବା ଲୋକ ଖୋଜି ଆଣ । ସେ ପ୍ରଥମେ ତାଙ୍କ ବିଦ୍ୟା କେବଳ ସେଇ ଲୋକକୁ ଶିଖାଇବେ, ଅନ୍ୟ କାହାକୁ ନୁହେଁ ।

ବର୍ଷ ସ୍ତ୍ରୀଙ୍କ କଥା ଶୁଣି ଆମେ ତାଙ୍କୁ ହଜାରେ ସୁନା ମୋହର ଦେଲୁ, ଯାହା ଫଳରେ ବର୍ଷଙ୍କ ଦରିଦ୍ରତା କିଛି ଦିନ ପାଇଁ ଦୂର ହେଇଯିବ । ସେଇ ଦିନଠୁଁ ଆମେ ସେମିତି କୋଟେ ପିଲାକୁ ଖୋଜୁଛୁ ।

ବରରୁଚି କାଣଭୂତିଙ୍କୁ କହିଲେ— ବ୍ୟାଡ଼ି ଓ ଇନ୍ଦ୍ରଦତ୍ତଙ୍କର ଏଇ କଥା ଶୁଣି ମୋ ମା' କହିଲେ— ପୁଅ, ମୋର ଏଇ ପୁଅର ଜନ୍ମବେଳେ ଆକାଶବାଣୀ ହୋଇଥିଲା ଯେ, ସେ ବର୍ଷ ନାମକ ପଣ୍ଡିତଙ୍କଠୁଁ ସବୁ ବିଦ୍ୟା ଲାଭ କରିବ । ଏତେ ବର୍ଷ ହେଲା ସେଇ ଚିନ୍ତା ତ ମୋତେ ଖାଉଚି ଯେ, ମୋ ପୁଅକୁ ବର୍ଷ ନାମକ ଗୁରୁ କେବେ ଓ କେମିତି ମିଳିବ ? ତୁମେମାନେ ମୋ ଚିନ୍ତା ଦୂର କଲ । ଏବେ ତାକୁ ତମ ସାଙ୍ଗରେ ନେଇଯାଅ ।

ବରରୁଚି କାଣଭୂତିଙ୍କୁ କହିଲେ— ତା'ପରେ ବ୍ୟାଡ଼ି ଓ ଇନ୍ଦ୍ରଦତ୍ତ ମୋ ମା'ଙ୍କୁ ବି ବହୁତ ଟଙ୍କା ଦେଲେ ଓ ମୋତେ ନେଇ ଗୁରୁଦେବ ବର୍ଷଙ୍କ ପାଖରେ ପହଞ୍ଚିଲେ ।

ମୁଁ, ବ୍ୟାଡ଼ି ଓ ଇନ୍ଦ୍ରଦତ୍ତ— ତିନିଜଣଯାକ ଗୁରୁଦେବ ବର୍ଷଙ୍କ ସମ୍ମୁଖରେ ମାଟି ଉପରେ ବସିଲୁ । ବର୍ଷ ସବୁ ଶାସ୍ତ୍ର ଗାଇ ଚାଲିଲେ । ଆଉ ମୁଁ ଥରେ ଶୁଣି ସବୁଗୁଡ଼ିକ ମନେ ରଖିନେଲି । ବ୍ୟାଡ଼ିଙ୍କର କୌଣସି ଶାସ୍ତ୍ରକୁ ଦୁଇଥର ଶୁଣି ମନେ ରଖିବାର ଯୋଗ୍ୟତା ଥିଲା ଓ ଇନ୍ଦ୍ରଦତ୍ତ ତିନିଥର ଶୁଣି ମନେରଖି ପାରୁଥିଲେ । ମୁଁ ଥରେ ଶୁଣି ମନେ ରଖିଥିବା ଶାସ୍ତ୍ରକୁ ସେଇ ଦୁଇଜଣଙ୍କୁ ଶୁଣାଉଥିଲି । ବ୍ୟାଡ଼ିଙ୍କର ପ୍ରଥମେ ମୋ ଠାରୁ ଶୁଣି ମନେ ରହିଯାଉଥିଲା ଓ ସେ ପୁଣି ଇନ୍ଦ୍ରଦତ୍ତଙ୍କୁ ଶୁଣାଉ ଥିଲେ ଓ ଶେଷରେ ଇନ୍ଦ୍ରଦତ୍ତ ମନେରଖି ପାରୁଥିଲେ । ସାରା ପାଟଳୀପୁତ୍ର ନଗରୀରେ ବର୍ଷଙ୍କ ଶାସ୍ତ୍ରଜ୍ଞାନ ଓ ଆମମାନଙ୍କର ଯୋଗ୍ୟତାର ପ୍ରଚାର ହୋଇଗଲା । ବ୍ରାହ୍ମଣ ପଣ୍ଡିତମାନେ ଦଳ ଦଳ ହୋଇ ବର୍ଷଙ୍କ ଦର୍ଶନ ପାଇଁ ଆସିଲେ ଓ ଯେତେବେଳେ ଏଇସବୁ କଥା ରାଜା ନନ୍ଦଙ୍କ କାନକୁ ଆସିଲା, ସେ ବର୍ଷଙ୍କ ଘରକୁ ଟଙ୍କା ପଇସାରେ ପୂର୍ଣ୍ଣ କରିଦେଲେ ।

## ପାଟଳୀପୁତ୍ର ନଗର କଥା

ବରରୁଚି କାଣଭୂତିଙ୍କୁ କହିଲେ— ପଣ୍ଡିତ ବର୍ଷ ଶାସ୍ତ୍ରମାନଙ୍କର ସବୁ ଜ୍ଞାନ ଆମକୁ ଦେଇଦେଲେ, ତା' ସହିତ ଆମକୁ ସେ ଅନେକ କଥା ମଧ୍ୟ ଶୁଣାଇ ଥିଲେ । ସେଇ କଥା ଭିତରୁ ପାଟଳୀପୁତ୍ର ନଗର ନିର୍ମାଣ କଥା ବି ଗୋଟିଏ । ମୁଁ ତୁମକୁ ସେଇ କଥା ଶୁଣାଉଛି ।

ହରିଦ୍ୱାରରେ କନଖଳ ନାମରେ ପବିତ୍ର ତୀର୍ଥସ୍ଥାନ ଅଛି, ଯେଉଁଠୁ ଇନ୍ଦ୍ରଙ୍କ ହାତୀ ଐରାବତ ଉଶୀନର ପାହାଡ଼କୁ ଭାଙ୍ଗି ଗଙ୍ଗାଙ୍କୁ ମର୍ତ୍ତ୍ୟକୁ ଓହ୍ଲାଇ ଆଣିଥିଲେ । ସେଇ କନଖଳରେ ଜଣେ **ବ୍ରାହ୍ମଣ** ତପସ୍ୟା କରି ତିନୋଟି ପୁତ୍ର ଲାଭ କରିଥିଲେ । ସେଇ ତିନିପୁଅ ବାପ-ମା'ଙ୍କ ସ୍ୱର୍ଗବାସ **ଅନ୍ତେ** ପଢ଼ିବା ପାଇଁ ରାଜଗୃହରେ ପହଞ୍ଚିଲେ । ରାଜଗୃହରେ ପଢ଼ି ସାରିଲା ପରେ ସେମାନେ **ଦକ୍ଷିଣ ଆଡ଼କୁ** ଚାଲିଲେ ଓ ସେଠାରେ କୁମାର କାର୍ତ୍ତିକେୟଙ୍କ ଦର୍ଶନ ଲାଭକଲେ । ତା'ପରେ **ସେମାନେ ସମୁଦ୍ର** କୂଳରେ ଅବସ୍ଥିତ ଚିଚିନୀ ନାମକ ନଗରୀରେ ପହଞ୍ଚିଲେ ଓ ଭୋଜେ ନାମକ ଜଣେ **ବ୍ରାହ୍ମଣ** ଘରେ ରହିଲେ । ସେଇ ବ୍ରାହ୍ମଣଙ୍କର ତିନୋଟି ଝିଅ ଥିଲେ । ବ୍ରାହ୍ମଣ ଏଇ ତିନି ଭାଇଙ୍କୁ ଯୋଗ୍ୟ ବର ମନେକରି ତାଙ୍କର ତିନି ଝିଅଙ୍କୁ ସେମାନଙ୍କ ସହିତ ବିବାହ କରାଇଦେଲେ ଓ ନିଜେ ହରିଦ୍ୱାରକୁ ଚାଲିଗଲେ । ସେଇ ବ୍ରାହ୍ମଣ ଯୋଇଁପୁଅମାନେ ସେମାନଙ୍କ ଶ୍ୱଶୁରଙ୍କ ଘରେ ରହିବାକୁ ଲାଗିଲେ ।

କେତେ ଦିନ ପରେ ବର୍ଷା ନ ହେବାରୁ ସେଇ ନଗରୀରେ ଅକାଳ ପଡ଼ିଲା । ସେଇ ତିନି ବ୍ରାହ୍ମଣ ଘାବରେଇ ଯାଇ ସେମାନଙ୍କ ସ୍ତ୍ରୀମାନଙ୍କୁ ଛାଡ଼ିଦେଇ ପଳାଇଲେ । ତିନି ଭଉଣୀ ଘରେ ଏକୁଟିଆ ହୋଇ ରହିଗଲେ । ସେମାନଙ୍କ ଭିତରୁ ମଝିଆଁ ଭଉଣୀ ଗର୍ଭବତୀ ଥିଲା । ବିପଦ ସମୟରେ ସେଇ ତିନି ଭଉଣୀ ସେମାନଙ୍କ ବାପାଙ୍କର ଜଣେ ବନ୍ଧୁ ଯଜ୍ଞଦତ୍ତଙ୍କ ଘରକୁ ଚାଲିଗଲେ ଓ କୌଣସି ମତେ ନିଜର ଚରିତ୍ର ରକ୍ଷାକରି ଓ ନିଜ ସ୍ୱାମୀମାନଙ୍କୁ ମନେପକାଇ ବହୁତ କଷ୍ଟରେ ଜୀବନ କଟାଇଲେ ।

କିଛି ଦିନ ପରେ ମଝିଆଁ ଭଉଣୀର ପୁଅଟିଏ ହେଲା । ତିନି ଭଉଣୀ ଛୁଆଟିକୁ ଅତ୍ୟନ୍ତ ସ୍ନେହ କରୁଥିଲେ । ଥରେ ସେଇ ତିନି ଭଉଣୀ ଛୁଆଟିକୁ ନିଜ ନିଜ କୋଳକୁ ପାଳିକରି ଖେଳାଉଥିବା ଓ ବାତ୍ସଲ୍ୟରେ ଉତ୍‌ଫୁଲ୍ଲ ହେଉଥିବା ବେଳେ ଶିବ ଓ ପାର୍ବତୀ ଆକାଶ ପଥରେ ଉଡ଼ି ଯାଉଥିଲେ । କୁମାର କାର୍ତ୍ତିକେୟଙ୍କ ମା ପାର୍ବତୀ ଶିବଙ୍କ କୋଳରେ ବସି ପୃଥିବୀରେ ଏଇ ଅନୁପମ ଦୃଶ୍ୟ ଦେଖି ଶିବଙ୍କୁ କହିଲେ– ଦେଖନ୍ତୁ, ଦେଖନ୍ତୁ, ଭଗବାନ ! ସେଇ ତିନି ଭଉଣୀ ପିଲାଟିକୁ କେମିତି ସ୍ନେହରେ ଖେଳାଉଛନ୍ତି । ସେମାନଙ୍କର ବିଶ୍ୱାସ ଯେ ଏଇ ମା' କ୍ଷୀର ଛାଡ଼ି ନଥିବା ପିଲାଟି ବଡ଼ହୋଇ ସେମାନଙ୍କୁ ପୋଷିବ, ସେମାନଙ୍କର ଯତ୍ନ ନେବ । ଭଗବାନ, ଏଇକ୍ଷଣି ଆପଣ ସେଇ ଦୁଃଖିନୀମାନଙ୍କୁ ଦୟା କରନ୍ତୁ । ଏମିତି କିଛି କରନ୍ତୁ କି ଏଇ ଛୁଆ ବଡ଼ ହୋଇ ଏହି ଦୁଃଖିନୀ ମା'ମାନଙ୍କର ପାଳନ ପୋଷଣ କରି ପାରିବ ।

ଶିବ ସ୍ମିତ ହସିଲେ । କହିଲେ– କହିବା ଦରକାର ନାହିଁ, ଦେବୀ । ଏଇ ଛୁଆ ପୂର୍ବ ଜନ୍ମରେ ତା' ସ୍ତ୍ରୀ ସହ ମୋତେ ବହୁତ ପୂଜା ଆରାଧନା କରିଥିଲା । ତା'ସ୍ତ୍ରୀ ଥିଲା ପାଟଳୀ । ସେତେବେଳେ ସେ ରାଜା ମହେନ୍ଦ୍ର ବର୍ମାର ଝିଅ ଥିଲା । ଏଇ ଜନ୍ମରେ ବି ସେ ପୁଣି ତା'ର ସ୍ତ୍ରୀ ହେବ । ତୁମେ କହୁଛ ଯଦି ମୁଁ ଏଇକ୍ଷଣି ସେଇ ଦୁଃଖିନୀ ମାଆମାନଙ୍କୁ କିଛି ଆଶ୍ୱାସନା ଦେଉଛି ।

ଶିବ ପାର୍ବତୀଙ୍କୁ ଏଇ କଥା କହୁଥିଲାବେଳେ ପୃଥିବୀରେ ରାତି ହୋଇଗଲା । ତିନି ଭଉଣୀ ଛୁଆଟିକୁ କୋଳରେ ଧରି ଶୋଇଗଲେ ଓ ତିନିଜଣଯାକ ଗୋଟିଏ ଗୋଟିଏ ସ୍ୱପ୍ନ ଦେଖିଲେ । ସେମାନେ ସ୍ୱପ୍ନରେ ଦେଖିଲେ ଭଗବାନ ଶିବ ସେମାନଙ୍କୁ କହୁଛନ୍ତି ଯେ, ତୁମେମାନେ ଏଇ ପିଲାକୁ ବାରମ୍ବାର 'ପୁଅ' 'ପୁଅ' ବୋଲି ଡାକୁଛ, ତେଣୁ ସେ ପୁତ୍ରକ ନାଁରେ ପ୍ରସିଦ୍ଧ ହେବ । ପ୍ରତିଦିନ ତା' ମୁଣ୍ଡ ପାଖରେ ଲକ୍ଷେ ସୁନା ମୋହର ମିଳିବ ଓ ବଡ଼ହୋଇ ସେ ରାଜା ହେବ ।

ଦିନ ଗଡ଼ି ଚାଲିଲା । ପୁତ୍ରକ ବଡ ହେବାକୁ ଲାଗିଲା । ଏକ ଲକ୍ଷ ସୁନ ମୋହର ପ୍ରତିଦିନ ମିଳିବାକୁ ଲାଗିଲା । ମାଆମାନେ ବହୁତ ଖୁସିରେ ରହିଲେ । ସୁଖର ଦିନ ଫେରିଆସିଲା । ପୁତ୍ରକ ରାଜା ହେଲା । ସେ ପ୍ରତିଦିନ ବହୁତ ସୁନା ମୋହର ଦାନ କରୁଥିଲା । ଧୀରେ ଧୀରେ ତା'ର ପ୍ରଶଂସା ଚାରିଆଡେ ବ୍ୟାପିଗଲା । କ୍ରମଶଃ ଏଇକଥା ତା'ର ପଳାତକ ବାପା, ବଡ଼ବାପା ଓ ଦଦାଙ୍କ ପାଖରେ



ପହଞ୍ଚିଲା ଓ ସେମାନେ ଶ୍ୱଶୁର ଘରକୁ ଲେଉଟି ଆସିଲେ । ଦିନାକେତେ ସେମାନେ ସେମାନଙ୍କ ପୁଅର ବିପୁଳ ସମ୍ପତ୍ତିକୁ ଉପଭୋଗ କରି ସୁଖରେ ରହିଲେ, କିନ୍ତୁ ଧୀରେ ଧୀରେ ସେମାନଙ୍କ ମନରେ ପୁଣି ପାପ ଜନ୍ମିଲା । ସେମାନେ ରାଜା ପୁତ୍ରକକୁ ମାରି ତା'ର ରାଜ୍ୟ ହାତେଇବାକୁ ଇଚ୍ଛାକରି ତାକୁ ବିନ୍ଧ୍ୟବାସିନୀ ଦେବୀଙ୍କ ଦର୍ଶନ କରାଇବା ବାହାନାରେ ନେଇଗଲେ । ମନ୍ଦିର ଭିତରେ ସେମାନେ ପୂର୍ବରୁ ଘାତକମାନଙ୍କୁ ପ୍ରସ୍ତୁତ କରି ରଖିଥିଲେ ଓ ପୁତ୍ରକକୁ ପ୍ରଥମେ ଦେବୀଙ୍କ ଦର୍ଶନ କରିବାକୁ ପଠାଇ ଦେଲେ । ଘାତକମାନେ ତାକୁ ହତ୍ୟା କରିବାକୁ ଉଦ୍ୟମ କରନ୍ତେ ସେ ସେମାନଙ୍କୁ : ତାକୁ କାହିଁକି ମାରିବାକୁ ଯାଉଛନ୍ତି ? ବୋଲି ପଚାରିଲା । ଘାତକମାନେ କହିଲେ– ତୁମ ବାପା, ବଡ଼ବାପା ଓ ଦଦା ଆମକୁ ସୁନା ଦେଇ ତୁମକୁ ମାରିଦେବାକୁ କହିଛନ୍ତି । ପୁତ୍ରକ କହିଲା– ମୁଁ ତୁମକୁ ମୋର ସବୁ ଅଳଙ୍କାର ଓ ପୋଷାକ ଦେଇ ଦେଉଛି । ତୁମେମାନେ ମୋତେ ଛାଡିଦିଅ । ମୁଁ କାହାର କିଛି କହିବି ନାହିଁ ଆଉ ଏଠୁଁ ଚାଲିଯିବି ।

ଘାତକମାନେ ପୁତ୍ରକର କଥା ମାନିଗଲେ । ସେମାନେ ପୁତ୍ରକର ବାପା ଓ ତା'ର ଭାଇମାନଙ୍କୁ କହିଦେଲେ ଯେ ସେମାନେ ପୁତ୍ରକକୁ ମାରି ଦେଇଛନ୍ତି । ସେମାନେ ସନ୍ତୁଷ୍ଟ ହୋଇ ଚିଚିନୀ ନଗରୀକୁ ଫେରିଗଲେ, କିନ୍ତୁ ପୁତ୍ରକ ମନ୍ତ୍ରୀର ସେମାନଙ୍କ ଉପରେ ସନ୍ଦେହ ହେଲା ଓ ମନ୍ତ୍ରୀ ସେଇ ତିନିଜଣଙ୍କୁ ମାରି ଦେଲେ ।

ଏ ପାଖରେ ପୁତ୍ରକ ସଂସାର ଉପରେ ବିରକ୍ତ ହୋଇ ଗହନ ବନକୁ ଚାଲିଗଲା । ବନରେ କୁସ୍ତି କୁସ୍ତି ଦୁଇଜଣ ରାକ୍ଷସଙ୍କୁ ଲଢ଼େଇ କରିବା ପାଇଁ ଅଣ୍ଟା ଭିଡ଼ୁଥିବା ଦେଖିଲା । ସେ ସେମାନଙ୍କୁ ପଚାରିଲା– ତୁମେମାନେ କିଏ ଓ କାହିଁକି ଲଢ଼ିବାକୁ ବାହାରିଛ ?

ରାକ୍ଷସମାନେ କହିଲେ– ଆମେ ଦି'ଜଣ ମୟାସୁରଙ୍କ ପୁଅ । ଆମ ପାଖରେ ବାପାଙ୍କ ଧନ ସମ୍ପତ୍ତି ଭାବରେ ଗୋଟିଏ ବଂସା, ଗୋଟିଏ ବାଡ଼ି ଆଉ ହଳେ ଖଡ଼ମ ଅଛି । ଆମ ଭିତରୁ ଯିଏ ଜିତିବ ସେ ଏଇସବୁ ଜିନିଷ ନେବ ।

ପୁତ୍ରକକୁ ସେମାନଙ୍କ କଥା ଶୁଣି ହସ ମାଡ଼ିଲା । ସେ କହିଲା– ଏଇଥି ପାଇଁ ତୁମେ ଦୁଇ ଭାଇ ପରସ୍ପରକୁ ମାରିବାକୁ ଯାଉଛ ?

ରାକ୍ଷସମାନେ କହିଲେ– ଏଗୁଡ଼ା ସାମାନ୍ୟ ଜିନିଷ ନୁହେଁ । ବାଡ଼ି ଅଗରେ ଯାହା କିଛି ଲେଖିବ ସେଇଟା ସତ ହୋଇଯିବ । ବଂସାକୁ ଯାହା ଖାଇବା ଜିନିଷ ମାଗିବ, ମିଳିଯିବ । ଆଉ ଖଡମ ପିନ୍ଧିଲେ ମଣିଷ ଆକାଶ ମାର୍ଗରେ ଯା ଆସ କରିପାରିବ ।

ପୁତ୍ରକ କହିଲା– ଏଇ ସବୁ ଜିନିଷ ପାଇଁ ନିଜ ଭିତରେ ଲଢ଼ି ଜଣେ ଜଣକୁ ମାରିବା ଠିକ୍ ନୁହେଁ । ତୁମ ଦି'ଜଣଙ୍କ ଭିତରୁ ଦୌଡ଼ରେ ଯିଏ ପ୍ରଥମ ହେବ, ଏଇ ତିନିଟା ଜିନିଷ ସେ ନେବ ।

ସେଇ ଦୁଇଜଣ ରାକ୍ଷସ ପୁତ୍ରକ କଥା ମାନି ଦୌଡ଼ିଲେ । ସେମାନେ ଦୌଡ଼ୁଥିଲା ବେଳେ ପୁତ୍ରକ ବାଡ଼ି ଓ ବଂସାକୁ ହାତରେ ଧରି ଖଡମ ପିନ୍ଧି ଆକାଶରେ ଉଡ଼ିଗଲା । ରାକ୍ଷସ ଦି'ଜଣ ବୋକା ବନିଗଲେ ।

ପୁତ୍ରକ ଆକାଶରେ ଉଡ଼ି ଉଡ଼ି ତଳକୁ ଓହ୍ଲାଇଲା ଓ ନିଛାଟିଆ ଜାଗାରେ ଗୋଟାଏ କୁଡ଼ିଆ ଘର ପାଖରେ ପହଞ୍ଚିଲା । ସେଇ ଘରେ ଗୋଟାଏ ବୁଢ଼ୀ ରହୁଥିଲା । ପୁତ୍ରକ ବୁଢ଼ୀକୁ କିଛି ଧନ ଦେଇ ତା'ଘରେ ଲୁଚି ରହିଲା ।

ଦିନେ କଥା କଥା ବୁଢ଼ୀ ତାକୁ କହିଲା– ପୁଅ, ମୁଁ ଚାହୁଁଛି ତୋ ପାଇଁ ବୋହୂଟିଏ ମିଳିଯା'ନ୍ତା କି । ଏଇ ରାଜ୍ୟର ରାଜା ଝିଅ ଭାରି ସୁନ୍ଦରୀ । ସେ ତୋ ପାଇଁ ଠିକ୍ ହୁଅନ୍ତା । କିନ୍ତୁ ତାକୁ ରାଣୀ ଉଆସରେ କଡା ପହରାରେ ରଖିଛନ୍ତି ।

ବୁଢ଼ୀର କଥା ଶୁଣି ପୁତ୍ରକ ମନରେ ସେଇ ରାଜାଝିଅ ପାଟଳୀ ପ୍ରତି ପ୍ରେମ ଜନ୍ମିଲା । ଦିନେ ରାତିରେ ସେ ଖଡ଼ଉ ପିନ୍ଧି ଆକାଶରେ ଉଡ଼ି ଉଡ଼ି ଯାଇ ରାଣୀ ନିବାସରେ ପଶିଗଲା । ଗୋଟିଏ ଘରେ ସେ ପାଟଳୀକୁ ଏକୁଟିଆ ଶୋଇଥିବା ଦେଖିଲା । ଝରକା ବାଟେ ଜହ୍ନ ଆଲୁଅ ପାଟଳୀ ଉପରେ ପଡ଼ିଥିଲା । ପାଟଳୀ ସ୍ୱର୍ଗର ଅପ୍ସରା ଭଳି ଦେଖା ଯାଉଥିଲା ।

ପୁତ୍ରକ ଧୀରେ ଧୀରେ ତାକୁ ଆଲିଙ୍ଗନ କରି ନିଦରୁ ଉଠାଇଲା । ପ୍ରଥମେ ତ ପାଟଳୀ ତାକୁ ଦେଖି ଚାକୁବ ହୋଇଗଲା । ପୁଣି ଧୀରେ ଧୀରେ ସେମାନଙ୍କ ଭିତରେ କଥାବାର୍ତ୍ତା ହେଲା । କଥାବାର୍ତ୍ତା ଆଗେଇ ଚାଲିଲା ଓ ଦୁହେଁ ଫୁଲମାଳ ବଦଳକରି ବାହାହେଇ ପଡ଼ିଲେ । ତା'ପରେ ପ୍ରତିଦିନ ମିଳିତ ହେବାକୁ ଲାଗିଲେ ।

କିଛି ଦିନ ପରେ ପାଟଳୀ ଦେହରେ ପୁରୁଷ ସଂଯୋଗର ଚିହ୍ନ ଦେଖି ରାଣୀ ମହଲର ରକ୍ଷୀ ରାଜାଙ୍କୁ ଖବର ଦେଲା । ରାଜା ଜଣେ ଚତୁରୀ ସ୍ତ୍ରୀଲୋକକୁ ରାଜକୁମାରୀ ଉପରେ ନିଘା ରଖିବାକୁ କହିଲେ । ସେଇ ସ୍ତ୍ରୀଲୋକ ରାତିରେ ପୁତ୍ରକ ସହିତ ରାଜା ଝିଅର ମିଳନ ଦେଖିଲା ଓ ଲୁଚିଛପି ପୁତ୍ରକର ଲୁଗାରେ ରାଜାଙ୍କ ମୋହର ଚିହ୍ନ ମାରିଦେଲା ।

ତା'ପରଦିନ ରାଜାଙ୍କ ସୈନ୍ୟମାନେ ଖୋଜା ଖୋଜି କରି ଲୁଗାରେ ଲାଗିଥିବା ମୋହର ଚିହ୍ନରୁ ପୁତ୍ରକକୁ ଧରିନେଇ ରାଜାଙ୍କ ସାମ୍ନାରେ ହାଜର କରାଇଲେ । ରାଜା ତା ଉପରେ ରାଗିଛନ୍ତି ଜାଣି ପୁତ୍ରକ ଖଡ଼ଉ ପିନ୍ଧି ଆକାଶରେ ଉଡ଼ିଗଲା । ସେ ସିଧା ରାଣୀ ନିବାସରେ ପହଞ୍ଚି ପାଟଳୀକୁ କହିଲା– ଆମ କଥା ତୁମ ବାପା ଜାଣିଗଲେଣି । ଆସ, ଆମେ ଆକାଶରେ ଉଡ଼ି ଉଡ଼ି ପଳେଇବା ।

ପାଟଳୀ ପୁତ୍ରକ ସହିତ ଯିବାକୁ ପ୍ରସ୍ତୁତ ହୋଇଗଲା । ପୁତ୍ରକ ତାକୁ କୋଳରେ ଧରି ଉଡ଼ି ଉଡ଼ି ଗଙ୍ଗା ନଦୀ କୂଳରେ ପହଞ୍ଚିଲା । ସେ ଦୁହଁଜଣ ସୁଖରେ ରହିବାକୁ ଲାଗିଲେ । ପୁତ୍ରକ ପାଟଳୀକୁ ନିଜ କଂସା ଦେଉଥିବା ସୁସ୍ୱାଦୁ ଖାଦ୍ୟ ଖୁଆଇ ସନ୍ତୁଷ୍ଟ କରୁଥାଏ । ପାଟଳୀ ଗଙ୍ଗା କୂଳରେ ରହିବାକୁ ଇଚ୍ଛା କଲା, ତେଣୁ ପୁତ୍ରକ ବାଡ଼ି ଅଗରେ ସେଠାରେ ଗୋଟାଏ ନଗରୀର ଚିତ୍ର ଆଙ୍କିଦେଲା । ସଙ୍ଗେ ସଙ୍ଗେ ପାଟଳୀପୁତ୍ର ନଗର ତିଆରି ହେଇଗଲା ।

# ଉପକୋଶା କଥା

ବିନ୍ଧ୍ୟର ସେଇ ବଣରେ ବରରୁଚି କାଣଭୂତିଙ୍କୁ ନିଜର ଗୁରୁ ବର୍ଷଙ୍କ ମୁହଁରୁ ଶୁଣିଥିବା ପାଟଳୀପୁତ୍ର ନଗର ସ୍ଥାପନା ବିଷୟରେ କହିସାରି ପୁଣି ନିଜ କଥା ଶୁଣାଇବାକୁ ଲାଗିଲେ :

ନିଜ ଦୁଇ ଗୁରୁଭାଇ– ବ୍ୟାଡ଼ି ଓ ଇନ୍ଦ୍ରଦତ୍ତଙ୍କ ସହିତ ପାଟଳୀପୁତ୍ରରେ ରହୁ ରହୁ ମୋର ପିଲାଦିନ କଟିଗଲା । ଦିନେ ଆମେ ତିନିଜଣ ଇନ୍ଦ୍ର ଉତ୍ସବ ଦେଖିବାକୁ ଯାଇଥିଲୁ । ମୁଁ ଝିଅଟିଏ ଦେଖିଲି । ସେ କାମଦେବଙ୍କ ଧନୁଭଳି ମୋ'ତେ ଲାଗିଲା । ଇନ୍ଦ୍ରଦତ୍ତ ପଚା ଲଗାଇ ମତେ କହିଲେ ଯେ, ସେ ଆମ ଗୁରୁ ବର୍ଷଙ୍କ ଭାଇ ଉପବର୍ଷର ଝିଅ, ଉପକୋଶା । ମୁଁ ଉପକୋଶାର ରୂପ ଯୌବନରେ ମୋହିତ ହୋଇଗଲି । ମୋତେ ରାତିରେ ନିଦ ହେଲାନାହିଁ । ସକାଳ ହେଲା ମାତ୍ରେ ମୁଁ ଉପକୋଶାର ଘର ପାଖକୁ ଯାଇ, ତାଙ୍କ ବଗିଚାରେ ବସିଗଲି । ଉପକୋଶାର ଜଣେ ସାଙ୍ଗ ସେଠାକୁ ଆସିଲା । ମୁଁ ତା' ହାତରେ ଉପକୋଶାର ମା'ଙ୍କ ପାଖକୁ ଖବର ପଠେଇଲି । ଉପକୋଶାର ମା ତାଙ୍କ ସ୍ୱାମୀ ଉପବର୍ଷଙ୍କୁ କହିଲେ ଓ ଉପକୋଶା ସହିତ ମୋ ବାହାଘର ଠିକ୍ ହୋଇଗଲା । ପଣ୍ଡିତ ବର୍ଷଙ୍କ ଅନୁମତି ନେଇ କୌଶାମ୍ବୀ ଯାଇ ମୋ ମା'ଙ୍କୁ ଅଣାହେଲା । ଉପକୋଶା ସହିତ ମୋର ବାହାଘର ହୋଇଗଲା । ମା' ଓ ସ୍ତ୍ରୀକୁ ନେଇ ମୁଁ ପାଟଳୀପୁତ୍ରରେ ସୁଖରେ ରହିଲି ।



ଏ ପାଖରେ ପଣ୍ଡିତ ବର୍ଷଙ୍କର ପାଣ୍ଡିତ୍ୟର ଖ୍ୟାତି ସାରା ଦେଶରେ ବ୍ୟାପିଯାଇଥିଲା । ତାଙ୍କ ଶିଷ୍ୟଙ୍କ ସଂଖ୍ୟା କ୍ରମାଗତ ବଢ଼ି ଚାଲିଥିଲା । ତାଙ୍କ ଭିତରେ ପାଣିନୀ ନାମକ ଜଣେ ଶିଷ୍ୟ ଥିଲା । ସେ ଅତ୍ୟନ୍ତ ଜଡ଼ ପ୍ରକୃତିର ଥିଲା । ଗୁରୁଙ୍କ ସ୍ତ୍ରୀ ତାକୁ ହିମାଳୟ ଯାଇ ଶିବଙ୍କ ଆରାଧନା କରିବାକୁ କହିଲେ । ସେ ହିମାଳୟ ଚାଲିଗଲା ।

ହିମାଳୟରୁ ଫେରିଲା ବେଳକୁ ଶିବଙ୍କ ଦୟାରୁ ତାକୁ ନୂତନ ବ୍ୟାକରଣର ଜ୍ଞାନପ୍ରାପ୍ତ ହୋଇଥିଲା । ଦିନେ ସେ ମୋ'ତେ ଶାସ୍ତ୍ର ଚର୍ଚ୍ଚା କରିବାକୁ ଆହ୍ୱାନ ଦେଲା । ଆମ ଦୁହିଁଙ୍କ ଶାସ୍ତ୍ରଚର୍ଚ୍ଚା ଆରମ୍ଭ ହେଲା ଓ ଚର୍ଚ୍ଚା ସାତଦିନ କାଳ ଚାଲିଲା । ଅଷ୍ଟମ ଦିନ ମୁଁ ପାଣିନୀକୁ ହରାଇ ଦେଲି, କିନ୍ତୁ ଠିକ୍ ସେତିକିବେଳେ ଭଗବାନ ଶିବ ଆକାଶରୁ ଭୟଙ୍କର ହୁଙ୍କାର ଦେଲେ । ତାଙ୍କର ପ୍ରଭାବ ଦ୍ୱାରା ଆମେ ପଢ଼ିଥିବା ସବୁ ବ୍ୟାକରଣ ନଷ୍ଟ ହୋଇଗଲା । ଆମେ ସବୁ ପୁଣି ମୂର୍ଖ ହୋଇଗଲୁ ।

ପାଣିନୀଠୁଁ ହାରିଯିବା ଦ୍ୱାରା ମୋ ମନରେ ବୈରାଗ୍ୟ ଭାବ ଜନ୍ମିଲା । ମୁଁ ଘର ଖର୍ଚ୍ଚ ଚଳାଇବା ପାଇଁ ହିରଣ୍ୟ ଗୁପ୍ତ ନାମକ ଜଣେ ବେପାରୀକୁ କିଛି ଟଙ୍କା ଦେଲି ଯେମିତି ଦରକାର ବେଳେ ଉପକୋଶା ତା'ଠୁଁ ନେଇ ଖର୍ଚ୍ଚ କରିପାରିବ । ତା'ପରେ ମୁଁ ଶିବଙ୍କୁ ଆରାଧନା କରିବା ପାଇଁ ହିମାଳୟ ଚାଲିଗଲି ।

ଉପକୋଶା ମଧ୍ୟ ମୋର ସଫଳତା ପ୍ରାର୍ଥନା କରି ବ୍ରତ ଉପବାସ କରୁଥିଲା ଓ ପ୍ରତିଦିନ ଗଙ୍ଗା ସ୍ନାନ କରିବାକୁ ଯାଉଥିଲା । ସେ ମୋ ବିରହରେ ହଳଦିଆ ପଡ଼ିଯାଇଥିଲା । ବସନ୍ତ ଋତୁ ଥିଲା । ଉପକୋଶା ଗଙ୍ଗାସ୍ନାନ କରିବାକୁ ଗଲାବେଳେ ରାଜାଙ୍କ ପୁରୋହିତ, ନଗରପାଳ ଓ ଯୁବରାଜଙ୍କ ମନ୍ତ୍ରୀ– ଏଇ ତିନିଜଣ ସବୁଦିନ ଦେଖୁଥିଲେ । ସେମାନେ ତା'ର ରୂପ ଯୌବନରେ ମୋହିତ ହେଲେ ।

ଉପକୋଶା ସେଇ ତିନିଜଣଙ୍କୁ ଘୃଣା କରୁଥିଲା ଓ ପ୍ରାଣପଣେ ନିଜର ସତୀତ୍ୱ ପାଳନ କରୁଥିଲା । ଦିନେ ଗଙ୍ଗା ସ୍ନାନରୁ ଫେରିଲା ବେଳେ ଯୁବରାଜଙ୍କ ମନ୍ତ୍ରୀ କୁମାର ସଚୀବ ତାକୁ ଅଟକାଇ ଦେଲା । ଉପକୋଶା ତାକୁ ବୁଝାଇଲା । ହେଲେ ସେ ଯେତେବେଳେ ମୋଟେ ନ ବୁଝିଲା, ଉପକୋଶା ତାକୁ କହିଲା– ଏମିତି ଭାବରେ ମତେ ପାଇବାକୁ ଚେଷ୍ଟା କରିବା ତୁମ ପାଇଁ ଠିକ୍ ନୁହେଁ, ମୋ ପାଇଁ ବି । ତେଣୁ ବସନ୍ତ ଉତ୍ସବ ଦିନ ସବୁ ଲୋକ ଉତ୍ସବ ଧୂମ୍‌ଧାମ୍ ପାଳୁଥିବା ବେଳେ ରାତିର ପ୍ରଥମ ପ୍ରହରରେ ତମେ ମୋ ଘରକୁ ଆସିବ । କୁମାର ସଚୀବ ଉପକୋଶା କଥାରେ ରାଜିହୋଇ ଚାଲିଗଲା ।

ତାକୁ ବିଦାକରି ଉପକୋଶା ଆଗେଇଲା ବେଳେ ରାଜାଙ୍କ ପୁରୋହିତ ତାକୁ ଅଟକାଇ ଦେଲା । ଉପକୋଶା ଆଉ କୌଣସି ଉପାୟ ନ ପାଇ ପୂର୍ବଭଳି ବସନ୍ତ ଉତ୍ସବ ଦିନ ରାତିର ଦ୍ୱିତୀୟ ପ୍ରହରକୁ ତା'କୁ ଘରକୁ ଆସିବାକୁ କହିଲା । ପୁରୋହିତଠୁଁ ରକ୍ଷାପାଇ ସେ ଘାବରେଇ ଯାଇ କିଛି ବାଟ ଯାଇଛି କି ନାହିଁ ନଗରପାଳ ତାକୁ ଧରିପକାଇଲା । ଉପକୋଶା ତାକୁ ମଧ୍ୟ ସେଇ ଦିନ ରାତିର ତୃତୀୟ ପ୍ରହରକୁ ଆସିବାକୁ କହିଲା ।

ଭୟରେ ଥରି ଥରି ଉପକୋଶା ଘରକୁ ଆସିଲା । ଚାକରାଣୀମାନଙ୍କୁ ଡକାଇ ସେ ସେମାନଙ୍କ ସହିତ ପରାମର୍ଶ କଲା ଓ ଉପବାସକରି ସାରା ରାତି ମୋ'ତେ ମନେପକାଇ ବିତାଇ ଦେଲା । ତା'ପର ଦିନ ବ୍ରାହ୍ମଣ ସେବନ ଓ ଦାନ ଦେବାକୁ ଟଙ୍କାର ଦରକାର ହେଲା । ସେ ଚାକରାଣୀକୁ ହିରଣ୍ୟଗୁପ୍ତ ପାଖକୁ ମୁଁ ରଖିଥିବା ଟଙ୍କା ଆଣିବାକୁ ପଠାଇଲା ।

ହିରଣ୍ୟଗୁପ୍ତ ଓଳଟା ଉପକୋଶା ପାଖକୁ ଚାଲି ଆସିଲା ଓ ଏକାନ୍ତରେ ତାକୁ କହିଲା– ତମେ ମୋର ସେବା କର, ମୁଁ ତମକୁ ତମ ସ୍ୱାମୀର ଟଙ୍କା ଦେବି । ଉପକୋଶା ତାକୁ ବସନ୍ତୋତ୍ସବ ରାତିର ଚତୁର୍ଥ ପ୍ରହରକୁ ଆସିବାକୁ କହିଲା ।

ଏଥର ଉପକୋଶା ଚାକରାଣୀମାନଙ୍କୁ ଲଗାଇ ତେଲ ମିଶାଇ ବହୁତ ପୁଡ଼ାଏ କଳା ତିଆରି କଲା ଓ ସେଥିରେ କସ୍ତୁରୀ ଇତ୍ୟାଦି ସୁଗନ୍ଧିତ ଦ୍ରବ୍ୟ ମିଶାଇଲା । ପୁଣି ସେ ପୁଡ଼ାଏ କନାକୁ ସେଇ

କଳାରେ ଭଲ ଭାବରେ ଭିଜାଇଲା । ତା ପରେ ସେ ଗୋଟିଏ ବଡ ସିନ୍ଦୁକ ତିଆରି କଲା । ସିନ୍ଦୁକକୁ ବାହାରୁ ବନ୍ଦ କରିବାକୁ ଶିକୁଳି ଲାଗିଥିଲା ।

ବସନ୍ତ ଉତ୍ସବ ଦିନ ଆସିଲା । ରାତିର ପ୍ରଥମ ପ୍ରହରରେ କୁମାର ସଚୀବ ଉପକୋଶା ସହିତ ମିଳନ ପାଇଁ ଆସି ପହଞ୍ଚିଲା । ଉପକୋଶା କହିଲା— ଗାଧୋଇ ଆସି ନଥିଲେ ମୁଁ କୌଣସି ପୁରୁଷକୁ ଛୁଏଁ ନାହିଁ । ତେଣୁ ତମେ ପ୍ରଥମେ ଗାଧୋଇପଡ । ସେଇ ମୂର୍ଖ ଗାଧୋଇବାକୁ ପ୍ରସ୍ତୁତ ହୋଇଗଲା । ଚାକରାଣୀମାନେ ତାକୁ ଗୋଟାଏ ଅନ୍ଧାର ଘରକୁ ନେଇଗଲେ ଓ ତା' ମୁହଁରେ କଳାରେ ବୁଡା ହୋଇଥିବା କପଡାରୁ କେତେଖଣ୍ଡ ଭଲ ଭାବରେ ଛାପିଦେଲେ । ତା'ପରେ ତା' ଦେହସାରା କଳା ବୋଳିବାକୁ ଲାଗିଲେ । ସେ ଭାବିଲା ଯେ ତା' ଦେହରେ ସୁଗନ୍ଧିତ ତେଲ ମାଲିସ୍ କରୁଛନ୍ତି । ଏମିତି କରୁ କରୁ ରାତିର ଦ୍ୱିତୀୟ ପ୍ରହର ହୋଇଗଲା ଓ ପୁରୋହିତ ଆସି ପହଞ୍ଚିଗଲା । ଚାକରାଣୀମାନେ କୁମାର ସଚୀବକୁ କହିଲେ— ଆମ ମାଲିକ ବରରୁଚିଙ୍କ ବନ୍ଧୁ ପୁରୋହିତ ଆସିଗଲେ । ତୁମେ ଏଇଠି ଲୁଚିବସ । ଏଇୟା କହି ସେମାନେ ସିନ୍ଦୁକ ଖୋଲି ତାକୁ ସିନ୍ଦୁକରେ ପୁରାଇଦେଲେ ଓ ସିନ୍ଦୁକ ବନ୍ଦକରିଦେଲେ । ଏଇ ଅବସ୍ଥା ପୁରୋହିତ ଓ ନଗରପାଳର ମଧ୍ୟ ହେଲା— ତିନିଜଣ ଯାକ ସିନ୍ଦୁକ ଭିତରେ ବନ୍ଦହୋଇ ରହିଲେ । ସେମାନଙ୍କର ଦେହ ପରସ୍ପର ସହିତ ଘସି ହେଉଥିଲା କିନ୍ତୁ ସେମାନେ ଲାଜରେ ଚୁପ୍ ରହିଥିଲେ ।

ରାତିର ଚତୁର୍ଥ ପ୍ରହରରେ ବେପାରୀ ହିରଣ୍ୟଗୁପ୍ତ ଆସିଲା । ଦୀପ ଜଳାଇ ଗାଧୁଆ ଘର ପର୍ଯ୍ୟନ୍ତ ତାକୁ ନେଇଯାଇ ଉପକୋଶା କହିଲା— ଆଗେ ମୋ ସ୍ୱାମୀ ଦେଇଥିବା ଟଙ୍କା ମୋତେ ଫେରାଅ ।

ହିରଣ୍ୟଗୁପ୍ତ ଦେଖିଲା ଯେ ସେଠାରେ କେହି ନାହାନ୍ତି । ସେ କହିଲା— ମୁଁ ତ କହିଛି— ମୋ ସେବାକର, ମୁଁ ତୁମ ସ୍ୱାମୀ ଦେଇଥିବା ଟଙ୍କା ଫେରାଇ ଦେବି । ଆହୁରି ମଧ୍ୟ ମୁଁ ତୁମକୁ ସବୁବେଳେ ଟଙ୍କା ଦେଉଥିବି ।

ସେଠାରେ ରଖାଯାଇଥିବା ସିନ୍ଦୁକ ଆଡକୁ ମୁହଁକରି ଉପକୋଶା ଉଚ୍ଚ ସ୍ୱରରେ କହିଲା— ହେ ଦେବତାମାନେ ! ଶୁଣ । ଏଇ ବେପାରୀ ହିରଣ୍ୟଗୁପ୍ତର କଥା ଶୁଣ । ତା'ପରେ ସେ ଦୀପ ଲିଭାଇଦେଲା । ଓ ଚାକରାଣୀମାନଙ୍କୁ ହିରଣ୍ୟଗୁପ୍ତକୁ ଗାଧୋଇ ଦେବାକୁ କହିଲା । ଚାକରାଣୀମାନେ ତାକୁ ଆଗଭଳି କଳା ବୋଳା ହୋଇଥିବା କପଡା ପିନ୍ଧାଇଲେ ଓ ତା' ଦେହସାରା ଭଲଭାବରେ କଳା ବୋଳିଦେଲେ । ଏମିତି କରୁ କରୁ ରାତି ପାହିଗଲା । ଚାକରାଣୀମାନେ ତାକୁ କହିଲେ— ସକାଳ ହେଲାଣି । ଏଥର ତମେ ଯାଅ । ବେପାରୀ ଇତସ୍ତତଃ ହେବାରୁ ଚାକରାଣୀମାନେ ତାକୁ ଧକ୍କାମାରି ଘରୁ ବାହାର କରିଦେଲେ । କଳାବୋଳା ଚିରାଲୁଗା ପିନ୍ଧି ଓ ସାରା ଦେହରେ କଳାବୋଳା ହୋଇ ବେପାରୀ ହିରଣ୍ୟଗୁପ୍ତ ସକାଳେ ରାଜପଥରେ ବାହାରିଲା । କୁକୁର ଗୁଡାକ ଭୁକି ଭୁକି ତାକୁ କାମୁଡିବାକୁ ଗୋଡାଇଲେ । କୌଣସି ମତେ ସେ ଘରେ ପହଞ୍ଚିଲା ଓ ଚାକରମାନଙ୍କୁ ଲଗାଇ ନିଜ ଦେହ ସଫା କରାଇଲା । ଲାଜରେ ସେ ଚାକରମାନଙ୍କୁ ଆଖି ଟେକି ଚାହିଁପାରିଲାନି ।

ଏଣେ ଉପକୋଶା ସାଙ୍ଗରେ ଜଣେ ଚାକରାଣୀକୁ ନେଇ ନନ୍ଦରାଜାଙ୍କ ରାଜସଭାରେ ଗୁହାରୀ କରିବାକୁ ପହଞ୍ଚିଲା । ସେ ରାଜାଙ୍କୁ କହିଲା ଯେ, ବେପାରୀ ହିରଣ୍ୟଗୁପ୍ତ ତା' ସ୍ୱାମୀ ଦେଇଥିବା ଟଙ୍କାକୁ ହଡପ୍ କରିବାକୁ ଚାହୁଁଛି । ରାଜା ସଙ୍ଗେ ସଙ୍ଗେ ବେପାରୀକୁ ଡକାଇଲେ । ସେ ରାଜାଙ୍କୁ କହିଲା— ମହାରାଜ, ମୋ ପାଖରେ ବରରୁଚି କୌଣସି ଟଙ୍କା ପଇସା ରଖିଯାଇ ନାହାନ୍ତି ।



ଉପକୋଶା କହିଲା— ମହାରାଜ, ମୋ ଘରେ ଥିବା ସିନ୍ଦୁକରେ ମୋର ଗୃହଦେବ ଅଛନ୍ତି, ସେ ଏଇ କଥାର ସାକ୍ଷୀ । ଆପଣ ଚାକରମାନଙ୍କୁ ପଠାଇ ମୋ ଘରୁ ସିନ୍ଦୁକ ଆଣିବାର ବ୍ୟବସ୍ଥା କରନ୍ତୁ, ଗୃହଦେବ ସାକ୍ଷୀ ଦେବେ ।

ରାଜାଙ୍କର ବଡ କୌତୁହଳ ହେଲା । ସେ ସିନ୍ଦୁକ ଅଣାଇଲେ । ଉପକୋଶା ସିନ୍ଦୁକ ସାମ୍ନାରେ ଉଚ୍ଚ ସ୍ୱରରେ କହିଲା— ହେ ଦେବତାମାନେ, ଏଇ ବେପାରୀ ପାଖରେ ମୋ ସ୍ୱାମୀଙ୍କ ଟଙ୍କା ଅଛି କି ନାହିଁ କୁହ । ଯଦି ତୁମେମାନେ ନ କହିବ, ତା'ହେଲେ ମୁଁ ଏଇ ଭରା ରାଜସଭାରେ ସିନ୍ଦୁକ ଖୋଲି ତୁମମାନଙ୍କୁ ସମସ୍ତଙ୍କ ଦର୍ଶନ କରାଇବି । ସିନ୍ଦୁକରେ ବନ୍ଦ ହୋଇଥିବା ତିନିଜଣଯାକ ଏକ ସଙ୍ଗରେ କହିଲେ— ଉପକୋଶା ସତ କହୁଛି । ବେପାରୀ ହିରଣ୍ୟଗୁପ୍ତ ପାଖରେ ବରରୁଚି ଟଙ୍କା ରଖି ଯାଇଥିଲା ।

ସିନ୍ଦୁକ ଭିତରୁ ଆସୁଥିବା ସ୍ୱର ଶୁଣି ରାଜା ନନ୍ଦ ବଡ ବିସ୍ମିତ ହେଲେ । ସେ ଶିକୁଳି ଭାଙ୍ଗି ସିନ୍ଦୁକ ଖୋଲାଇଲେ । ବିରାଟ ବିରାଟ କଳାମୂର୍ତ୍ତି ଭଳି ତିନିଜଣ ମଣିଷ ସିନ୍ଦୁକ ଭିତରୁ ବାହାରି ଆସିଲେ । ବଡ କଷ୍ଟରେ ସେଇ ତିନିଜଣଙ୍କୁ ଚିହ୍ନଟ କରାଗଲା ଓ ସେମାନଙ୍କୁ ସମସ୍ତେ ତାଚ୍ଛଲ୍ୟ ଓ ଉପହାସ କଲେ ।

ରାଜ ପଚାରନ୍ତେ ଉପକୋଶା ସବୁକଥା କହିଲା । ରାଜା ତାକୁ ବହୁତ ପ୍ରଶଂସା କରି କହିଲେ— ଆଜିଠୁଁ ତୁମେ ମୋର ଭଉଣୀ ହେଲ । ତା'ପରେ ସେ କୁମାର ସଚୀବ, ନଗରପାଳ ଓ ପୁରୋହିତଙ୍କ ସମ୍ପତ୍ତି ବାଜ୍ୟାପ୍ତ କରି ସେଇ ତିନିଜଣଙ୍କୁ ଦେଶରୁ ବାହାର କରିଦେଲେ ।

ଏହାପରେ ଏଇ ସବୁ ଘଟଣା ମୋ ଗୁରୁ ବର୍ଷ ଓ ଶ୍ୱଶୁର ଉପବର୍ଷ ଜାଣିଲେ ଓ ଉପକୋଶାକୁ ବହୁତ ପ୍ରଶଂସାକଲେ । ନଗରସାରା ଉପକୋଶାର ଜୟ ଜୟକାର ହେଲା ।

# ଯୋଗାନନ୍ଦ କଥା

ନିଜ ସ୍ତ୍ରୀ ଉପକୋଶା କଥା କହିସାରି ବରରୁଚି କାଣଭୂତିଙ୍କୁ ନିଜ ଜୀବନର ଶେଷ କଥା ଶୁଣାଇଲେ :

ମୁଁ ହିମାଳୟରେ ରହି ଶିବଙ୍କର ଆରାଧନା କଲି । ସେ ପ୍ରସନ୍ନ ହେଲେ ଓ ମତେ ବ୍ୟାକରଣରେ ପାଣିନୀଠୁଁ ପାରଙ୍ଗମ ହେବାକୁ ବରଦେଲେ । ତା'ପରେ ମୁଁ ପାଣିନୀ-ବ୍ୟାକରଣର ବ୍ୟାଖ୍ୟା ରଚନା କଲି ।

ଘରକୁ ଫେରି ମୁଁ ମୋ ମା' ଓ ଅନ୍ୟମାନଙ୍କ ଠାରୁ ଉପକୋଶାର ସତୀତ୍ୱ ଓ ବୁଦ୍ଧିମତାର କଥା ଶୁଣିଲି । ମୋର ତା'ଉପରେ ସ୍ନେହ ଆହୁରି ବଢ଼ିଗଲା ।

ଏହା ଭିତରେ ଗୁରୁଙ୍କ ଠାରୁ ଆମ ତିନିଜଣ— ମୁଁ, ବ୍ୟାଡି ଓ ଇନ୍ଦ୍ରଦତ୍ତଙ୍କର ଶିକ୍ଷାଲାଭ ଶେଷ ହୋଇଯାଇଥିଲା । ତେଣୁ ଆମେ ପଣ୍ଡିତ ବର୍ଷଙ୍କୁ ଗୁରୁ ଦକ୍ଷିଣା ଦେବାକୁ ଚାହିଁଲୁ । ଗୁରୁ କହିଲେ— ମୋତେ ଏକ କୋଟି ସୁନା ମୋହର ଆଣି ଦିଅ ।

ଆମେ ଠିକ୍ କଲୁ ଯେ, କେବଳ ରାଜା ନନ୍ଦ ଏକ କୋଟି ସୁନା ମୋହର ଦେଇ ପାରିବେ । ସେ ଅନେଶୋତ କୋଟି ସୁନା ମୋହରର ମାଲିକ । ବ୍ୟାଡ଼ି ଓ ଇନ୍ଦ୍ରଦତ୍ତ କହିଲେ— କିଛି ଦିନ ତଳେ ରାଜା ତୁମ ସ୍ତ୍ରୀ ଉପକୋଶାକୁ ଧରମ ଭଉଣୀ କରିଛନ୍ତି । ତେଣୁ ଟଙ୍କା ଦେବାକୁ ସେ ଆପତ୍ତି କରିବେ ନାହିଁ ।

ସେତେବେଳେ ନନ୍ଦ ଅଯୋଧ୍ୟାରେ ଶିବିର ପକାଇଥିଲେ । ଆମେ ତିନିଜଣ ବନ୍ଧୁ ସେଠାରେ ପହଞ୍ଚିଲୁ । ସେଠାରେ ପହଞ୍ଚି ଜାଣିଲୁ ଅଳ୍ପ ସମୟ ଆଗରୁ ରାଜା ମରିଯାଇଛନ୍ତି । ମନ୍ତ୍ରୀ ଓ ପ୍ରଜାମାନେ ଦୁଃଖରେ ବୁଡ଼ି ରହିଥିଲେ ଓ ନନ୍ଦଙ୍କ ଶବକୁ ଘେରି ଅନେକେ କାନ୍ଦୁଥିଲେ ।

ଯୋଗ ସିଦ୍ଧିକରି ଇନ୍ଦ୍ରଦତ୍ତ ଅନ୍ୟ ଦେହରେ ପ୍ରବେଶ କରିବା ବିଧି ଜାଣିଥିଲେ । ସେ କହିଲେ– ମୁଁ ଏହି ମୃତ ରାଜାଙ୍କ ଦେହରେ ପ୍ରବେଶ କରୁଛି, ବରରୁଚି ମୋତେ ଟଙ୍କା ମାଗିବ ଓ ମୁଁ ତାକୁ କୋଟିଏ ସୁନା ମୋହର ଦେଇ ଦେବି । ସେତେବେଳେ ପର୍ଯ୍ୟନ୍ତ ବ୍ୟାଡ଼ି ଗୋପନ ଭାବରେ ମୋର ପ୍ରାଣ ନଥିବା ଦେହକୁ ଜଗିବ ।

ନଗରଠୁଁ ଦୂରରେ ଗୋଟିଏ ନିଛାଟିଆ ମନ୍ଦିରରେ ମୁଁ ବ୍ୟାଡ଼ିକୁ ଇନ୍ଦ୍ରଦତ୍ତଙ୍କ ଦେହକୁ ଜଗିବା ଦାୟିତ୍ୱ ଦେଇ ଶିବିରରେ ଆସି ପହଞ୍ଚିଲି । ସେତେବେଳେ ରାଜା ନନ୍ଦଙ୍କ ସହସା ଜୀଇଁ ଉଠିବା ଉତ୍ସବ ପାଳନ କରାଯାଉଥିଲା । ମୁଁ ରାଜାଙ୍କ ପ୍ରଶଂସା ଗାନ କରି ଆଶୀର୍ବାଦ କଲି ଓ ଗୁରୁ ଦକ୍ଷିଣା ଟଙ୍କା ଭିକ୍ଷା କଲି । ଯୋଗାନନ୍ଦ (ନନ୍ଦଙ୍କ ଦେହରେ ପ୍ରବେଶ କରିଥିବା ଇନ୍ଦ୍ରଦତ୍ତର ଜୀବନ) ଏଇ ମାଗଣାକୁ ଏକ କୋଟି ସୁନା ମୋହର ସଙ୍ଗେ ସଙ୍ଗେ ଦେଇଦେବାକୁ ମନ୍ତ୍ରୀ ଶକଟାରଙ୍କୁ ଆଦେଶ ଦେଲେ । ମୃତ ରାଜା ଜୀଇଁ ଉଠିବା ସଙ୍ଗେ ସଙ୍ଗେ ମାଗଣା ଆସିବା, ଏତେ ଟଙ୍କା ମାଗିବା ଓ ତାକୁ ସଙ୍ଗେ ସଙ୍ଗେ ଟଙ୍କା ଦେଇ ଦେବାକୁ ରାଜାଙ୍କ ଆଦେଶ ଦେବା– ଏଇ ସବୁ ଶକଟାରଙ୍କୁ ସନ୍ଦେହ ହେଲା । ସେ ମୋତେ ରହିବାକୁ କହିଲେ ଓ ତାଙ୍କ ସେବକଙ୍କୁ ଖୋଜି ଖୋଜି ଯେ କୌଣସି ଶବ ପାଇଲା ମାତ୍ରେ ପୋଡ଼ି ଦେବାକୁ ଆଦେଶ ଦେଲେ ।

କିଛି ସମୟ ପରେ ବ୍ୟାଡ଼ି ଶିବିରକୁ ଆସି ଯୋଗାନନ୍ଦଙ୍କୁ କାନ୍ଦି କାନ୍ଦି କହିଲେ– ମହାରାଜ, ବଡ଼ ଅନର୍ଥ ହେଲା । ଯୋଗ ସିଦ୍ଧିରେ ଥିବା ଜଣେ ବ୍ରାହ୍ମଣଙ୍କ ଶବକୁ ଆପଣଙ୍କ ସୈନ୍ୟମାନେ ଜବରଦସ୍ତ ମୋ ଠାରୁ ଛଡ଼େଇ ନେଇ ଜାଳି ଦେଇଛନ୍ତି । ଏକଥା ଶୁଣି ଯୋଗାନନ୍ଦ ଛାନିଆଁ ହୋଇଗଲେ । ଶକଟାର ବୁଝିଗଲେ ଯେ ବ୍ରାହ୍ମଣଙ୍କ ଜୀବନ ନନ୍ଦଙ୍କ ଦେହ ଛାଡ଼ି ଆଉ ଯାଇପାରିବ ନାହିଁ ।

ସେ ମତେ କୋଟିଏ ସୁନା ମୋହର ଦେଇଦେଲେ । ଏଣେ ଇନ୍ଦ୍ରଦତ୍ତ ବ୍ୟାଡ଼ିଙ୍କୁ ଏକୁଟିଆ ପାଇ କରୁଣ ସ୍ୱରରେ କହିଲେ– ଯେ କ'ଣ ହୋଇଗଲା ? ମୁଁ ବ୍ରାହ୍ମଣ ହୋଇ ବି ଶୂଦ୍ର ହୋଇଗଲି । ଏଇ ଅପାର ଧନ ସମ୍ପତ୍ତି ଓ ରାଜ ସମ୍ପଦ ନେଇ ମୁଁ କ'ଣ କରିବି ?

ବ୍ୟାଡ଼ି ତାଙ୍କୁ ସାନ୍ତ୍ୱନା ଦେଇ କହିଲେ– ଏଇକ୍ଷଣି ଆଉ ଦୁଃଖ କରନା । ଶକଟାର ମୃତ୍ୟୁ ରହସ୍ୟ ଜାଣେ । ନନ୍ଦଙ୍କ ପୁତ୍ର ଏବଶିଣ ଛୋଟ, ଆଉ ରାଜ୍ୟରେ ବହୁତ ଶତ୍ରୁ । ଏଣୁ ଶକଟାର ଚାହେଁ ଯେ ତୁମେ କିଛି ଦିନ ପାଇଁ ନନ୍ଦଙ୍କ ଶରୀରରେ ରୁହ । ସୁଯୋଗ ଆସିବା ମାତ୍ରେ ସେ ତୁମକୁ ଏଇ ଦେହରୁ ମୁକ୍ତକରି ଚନ୍ଦ୍ରଗୁପ୍ତକୁ ରାଜା କରିଦେବ । ତମେ ଏମିତି କର– ବରରୁଚିକୁ ତମର ମନ୍ତ୍ରୀ କରିନିଅ । ସେ ବୁଦ୍ଧିମାନ, ତୁମକୁ ସାହାଯ୍ୟ କରିବ ।

ଏଭଳିକି ମୁଁ ଯୋଗାନନ୍ଦଙ୍କ ମନ୍ତ୍ରୀ ହୋଇଗଲି । ମୋ ପରାମର୍ଶରେ ଯୋଗାନନ୍ଦ ଶକଟାରଙ୍କୁ ସପରିବାର ଗୋଟାଏ ଅନ୍ଧାକୂଅ ଘରେ ବନ୍ଦ କରିଦେଲେ । ଜଣେ ବ୍ରାହ୍ମଣକୁ ପୋଡ଼ିଦେବା ଅଭିଯୋଗରେ ତାଙ୍କୁ ଅପରାଧୀ ଘୋଷଣା କରାଗଲା । ଶକଟାରଙ୍କ ପାଖରେ କିଛି ଛତୁ ଓ ଲୋଟାଏ ପାଣି ରଖି ଦିଆଗଲା । ଶକଟାର ତାଙ୍କ ପୁଅମାନଙ୍କୁ କହିଲେ– ଏତିକି ଛତୁ ଓ ଲୋଟାଏ ପାଣିରେ ଜଣେ ଲୋକ କିଛି ଦିନ ଜୀଇଁ ରହିପାରିବ । ତେଣୁ ଆମ ଭିତରୁ ମୁଁ କେବଳ ସେଇ ଛତୁ ଖାଇବି ଓ ପାଣି ପିଇବି, ଯୋଗାନନ୍ଦଙ୍କଠୁଁ ପ୍ରତିଶୋଧ ନେବାକୁ ଶକ୍ତି ପାଇବି । ଶକଟାରଙ୍କ ଶହେ ପୁଅ ଏକ



ସ୍ୱରରେ କହିଲେ– ରାଜା ଯୋଗାନନ୍ଦ ଉପରେ ପ୍ରତିଶୋଧ ନେବାକୁ କେବଳ ଆପଣଙ୍କର ଶକ୍ତି ଅଛି, ତେଣୁ ଆପଣ ଏଇ ଛତୁ ଓ ପାଣିକୁ ଗ୍ରହଣ କରି ଜୀବନ ବଞ୍ଚାନ୍ତୁ ।

ଶକଟାରଙ୍କ ଆଖି ଆଗରେ ତାଙ୍କର ଶହେ ପୁଅ ଜଣ ଜଣ ହୋଇ ମଲେ । ପୁଅମାନଙ୍କ କଙ୍କାଳ ଘେରରେ ସେ ଏକାକୀ ବଞ୍ଚିରହିଲେ ।

ଦିନ ଗଡ଼ି ଚାଲିଲା । ଏଇସବୁ ଘଟଣା ଦେଖି ବ୍ୟାଡ଼ିଙ୍କ ମନରେ ବୈରାଗ୍ୟ ଜାତ ହେଲା ଓ ଇନ୍ଦ୍ରଦତ୍ତଙ୍କ ମନା କରିବା ସତ୍ତ୍ୱେ ସେ ତପସ୍ୟା କରିବାକୁ ଚାଲିଗଲେ । ଏଣେ ଯୋଗାନନ୍ଦଙ୍କ ଚରିତ୍ର ବହୁତ ବଦଳିଗଲା । ସେ ଉଚ୍ଛୃଙ୍ଖଳ ଓ ମଦୁଆଲା ହାତୀ ଭଳି ବେପରୱା ହୋଇଯାଇଥିଲେ । ଦୈବଯୋଗରେ ମିଳିଥିବା ଅପାର ଧନସମ୍ପତ୍ତି ନନ୍ଦଙ୍କ ଦେହରେ ରହିଥିବା ଇନ୍ଦ୍ରଦତ୍ତଙ୍କୁ ପାଗଳ ଭଳି କରିଦେଇଥିଲା । ସେ ମୋ କଥା ବି ଶୁଣୁ ନଥିଲେ । ରାଜ୍ୟର କୌଣସି ଅମଙ୍ଗଳ ନହେଉ– ଏଇଆ ଭାବି ମୁଁ ଶକଟାରଙ୍କୁ ଅନ୍ଧାର ଘରୁ ଉଦ୍ଧାର କରିବାକୁ ନିଷ୍ପତ୍ତି ନେଲି ।

ଶକଟାର ଅନ୍ଧାର ଘରୁ ବାହାରିଲେ ଓ ମନ୍ତ୍ରୀପଦ ସମ୍ଭାଳିଲେ । ସେ ମୋର ଓ ଯୋଗାନନ୍ଦଙ୍କ ସମ୍ପର୍କ ବିଷୟରେ ଜାଣି ଯାଇଥିଲେ । ସେ ମଧ୍ୟ ଜାଣିଯାଇଥିଲେ ଯେ, ମୁଁ ଥିବା ପର୍ଯ୍ୟନ୍ତ ସେ ଯୋଗାନନ୍ଦଙ୍କର ବା ମୋର କିଛି କ୍ଷତି କରିପାରିବେ ନାହିଁ ।

ବିଳାସୀ ଯୋଗାନନ୍ଦଙ୍କ ଅନ୍ତଃପୁରରେ ସୁନ୍ଦରୀମାନେ ଭର୍ତ୍ତି ହୋଇଥିଲେ । ଆଉ ସ୍ତ୍ରୀଲୋକଙ୍କ ବେଶରେ କାମୁକ ପୁରୁଷମାନେ ବି ତା ଭିତରେ ପଶିଯାଇଥିଲେ । ଏଇ କଥା ମୁଁ ରାଜାଙ୍କୁ ଜଣାଇ ଥିଲି । ସେଇ ଦିନଠୁଁ ସେ ମୋ ବିଷୟରେ ଶଙ୍କିତ ହୋଇ ରହିବାକୁ ଲାଗିଲେ ।

ଥରେ ଜଣେ ଚିତ୍ରକର ମହାରାଣୀଙ୍କର ଖୁବ୍ ସୁନ୍ଦର ଚିତ୍ରଟିଏ ଆଙ୍କିଲା । ରାଜା ଖୁସି ହୋଇ ସେଇ ଚିତ୍ରକୁ ତାଙ୍କ ଶୋଇବା ଘର କାନ୍ଥରେ ଟଙ୍ଗାଇ ଦେଲେ । ମୁଁ ରାଜାଙ୍କ ଶୋଇବା ଘର ପାଖଦେଇ ଚାଲି ଯାଉଥିବାବେଳେ ଝରକା ବାଟେ ସେଇ ଚିତ୍ର ଦେଖି ମୁଗ୍ଧ ହୋଇ ଘର ଭିତରକୁ ଆସି ପୁଣି ଥରେ ସେଇ ଚିତ୍ରକୁ ନିରୀକ୍ଷଣ କଲି । ମହାରାଣୀଙ୍କ ସମ୍ପୂର୍ଣ୍ଣ ଲକ୍ଷଣକୁ ବିଚାର କରି ସିଦ୍ଧାନ୍ତରେ ପହଁଚିଲି ଯେ ତାଙ୍କର ଅଣ୍ଟା ତଳକୁ ତିଳ ଚିହ୍ନଟିଏ ରହିବା କଥା । ମୁଁ ସେଇ ସ୍ଥାନରେ ତିଳ ଚିହ୍ନଟିଏ ଆଙ୍କି ଦେଲି ।

ରାଜା ଚିତ୍ର ଦେଖିଲେ ଓ ଦେହରକ୍ଷୀମାନଙ୍କୁ ତିଳଚିହ୍ନ କିଏ ଆଙ୍କିଛି ବୋଲି ପଚାରିଲେ । ମନ୍ତ୍ରୀ ବରରୁଚି ତିଳ ଚିହ୍ନ ଆଙ୍କି ଚାଲିଯାଇଥିବା କଥା ସେମାନେ କହିଲେ ।

ଏଥର ଯୋଗାନନ୍ଦଙ୍କ ମନରେ ମୋ ଉପରେ ମିଥ୍ୟା ଆଶଙ୍କା ବସା ବାନ୍ଧିଲା । ରାଣୀଙ୍କ ଗୁପ୍ତ ସ୍ଥାନରେ ତିଳ ଚିହ୍ନ ଥିବା କଥା ମୁଁ କେମିତି ଜାଣିଲି ବୋଲି ସେ ଭାବିବାକୁ ଲାଗିଲେ । ଅବଶ୍ୟ ମୋର ରାଣୀଙ୍କ ସହିତ କିଛି ଖରାପ ସମ୍ପର୍କ ନଥିଲା, ତଥାପି ଅନ୍ତଃପୁରରେ ସ୍ତ୍ରୀଲୋକ ବେଶରେ ପୁରୁଷମାନେ ରହୁଥିବା କଥା ମୋତେ ଜଣାଥିଲା ।

ରାଣୀଙ୍କ ସହିତ ମୋର ଖରାପ ସମ୍ପର୍କ ଥିବା ସନ୍ଦେହ କରି ଯୋଗାନନ୍ଦ ଶକଟାରଙ୍କୁ ଏକାନ୍ତରେ କହିଲେ– ଏଇ ମନ୍ତ୍ରୀ ବରରୁଚି ମୋର ଅନ୍ତଃପୁରରେ ବଡ଼ ଖରାପ କାମ କରିଛି, ତାକୁ ଶେଷ କରିଦିଅ ।

ଶକଟାର କହିଲେ– ଯେ ଆଜ୍ଞା, ମହାରାଜ !

କିନ୍ତୁ ଶକଟାର ଭାବିଲେ ଯେ ବରରୁଚି ବୁଦ୍ଧିମାନ ବ୍ରାହ୍ମଣ ! ତାକୁ ମାରିବା ଠିକ୍ ହେବନାହିଁ । ତେଣୁ ସେ ମୋତେ ରାଜାଙ୍କ ଆଦେଶ ଜଣାଇ ଦେଲେ ଓ କହିଲେ– ତମେ କିଛି ଦିନ ଲୁଚିକରି ରୁହ । ମୁଁ ରାଜାଙ୍କୁ ମିଛ କହିଦେବି ଯେ ବରରୁଚିକୁ ମାରି ଦିଆଯାଇଛି ।

ମୁଁ କହିଲି– ଶକଟାର, ତମେ ବହୁତ ବୁଦ୍ଧିମାନ । ଏମିତି ବି ତମେ ମୋତେ ମାରିପାରି ନଥାନ୍ତ । କାରଣ– ମୋର ଜଣେ ରାକ୍ଷସ ବନ୍ଧୁ, ମୋତେ ସବୁବେଳେ ବଞ୍ଚାଏ ।

ଶକଟାର ପଚାରିଲେ– ରାକ୍ଷସ ତମର ବନ୍ଧୁ କେମିତି ହେଲା ? ସେ ଯଦି ସତରେ ତମ ବନ୍ଧୁ, ତାହେଲେ ତାକୁ ମୋତେ ଦେଖାଅ ।

ମୁଁ ରାକ୍ଷସକୁ ସ୍ମରଣ କଲି ଓ ରାକ୍ଷସ ସେଠାରେ ଉପସ୍ଥିତ ହେଲା । ଏଥର ମୁଁ ତାକୁ କହିଲି– ନନ୍ଦଙ୍କ ଦେହରେ ଥିବା ଇନ୍ଦ୍ରଦତ୍ତ ବ୍ରାହ୍ମଣ । ସେ ମଧ୍ୟ ମୋ'ର ବନ୍ଧୁ ଆଉ ସହପାଠୀ । ତମେ ତାକୁ ମାରିବନି ନା ମୋତେ ବି ମାରିବନି ।

ତା'ପରେ ମୁଁ କହିବାରୁ ରାକ୍ଷସ ଅନ୍ତର୍ଦ୍ଧାନ ହୋଇଗଲା । ଶକଟାର ମୋତେ ପଚାରିଲା– ଏଇ ରାକ୍ଷସ କେବେ ଓ କେମିତି ତମର ବନ୍ଧୁ ହେଲା ?

ଶକଟାରଙ୍କ ଅନୁରୋଧରେ ମୁଁ ତାକୁ ରାକ୍ଷସ ସହିତ ମୋ'ର ବନ୍ଧୁତା ବିଷୟରେ ଶୁଣାଇଲି :

ପାଟଳୀପୁତ୍ର ନଗରରେ ଯିଏ ନଗର ରକ୍ଷକ ଥିଲା, ଦିନେ ରାତିରେ ତାକୁ ପହରା ଦେଉଥିଲା ବେଳେ କେହି ମାରିଦେଇଥିଲା । ତେଣୁ ଯୋଗାନନ୍ଦ ନଗରରକ୍ଷକ କାମ ମୋତେ ଦେଲା । ମୁଁ ଦିନେ ରାତିରେ ନିଛାଟିଆ ଜାଗାରେ ବୁଲୁ ବୁଲୁ ଗୋଟିଏ ରାକ୍ଷସ ମୋତେ ଧରିନେଲା ଓ ପଚାରିଲା : କହ, ଏଇ ନଗରରେ ସବୁଠୁ ସୁନ୍ଦରୀ ସ୍ତ୍ରୀ କିଏ ?

ମୁଁ ହସି ହସି କହିଲି– ଆରେ ମୂର୍ଖ, ଯିଏ ଯାହାକୁ ଭଲ ପାଇଲା, ତା ପାଇଁ ସେ ହିଁ ସବୁଠୁଁ ସୁନ୍ଦରୀ ସ୍ତ୍ରୀ ।

ଏଇ କଥା ଶୁଣି ରାକ୍ଷସ ଖୁସି ହୋଇଗଲା ଓ କହିଲା– ଆଉ ମୁଁ ତମକୁ ମାରିବିନି । ମୁଁ ତମ ଉପରେ ଖୁସି । ଆଜିଠୁଁ ଆମେ ଦୁହେଁ ବନ୍ଧୁ । ତମେ ମୋତେ ଯେତେବେଳେ ସ୍ମରଣ କରିବ ମୁଁ ଆସି ପହଞ୍ଚିବି ।

ବରରୁଚି କାଣଭୂତିଙ୍କୁ ତାଙ୍କ ଜୀବନରେ ଅବଶିଷ୍ଟ କଥା ଶୁଣାଇବାକୁ ଯାଇ କହିଲା : ଅନେକ ଦିନ ଧରି ଶକଟାର ମୋତେ ଲୁଚାଇ ରଖିଲେ । ଥରେ ରାଜା ଯୋଗାନନ୍ଦ ବିପତ୍ତିରେ ପଡ଼ିଲେ । ତାଙ୍କ ପୁଅ ଥିଲା ରାଜକୁମାର ହିରଣ୍ୟଗୁପ୍ତ । ସେ ପାଗଳ ହୋଇଗଲା । ଶକଟାର ଏତିକିବେଳେ ସୁଯୋଗ ଦେଖି ରାଜାଙ୍କୁ କହିଲେ– ବରରୁଚି ଥିଲେ ହିଁ ରାଜକୁମାରଙ୍କ ପାଗଳାମିର କାରଣ କହି ପାରିଥାନ୍ତେ ।

ସେତିକିବେଳେ ମୁଁ ବି ଯୋଗାନନ୍ଦଙ୍କ ଭାରି ମନେ ପଡ଼ିଲି । ସୁଯୋଗ ଦେଖି ଶକଟାର ମୋର ଜୀବନ ଥିବା କଥା ଜଣାଇଲା । ଯୋଗାନନ୍ଦ ମୋତେ ଦେଖା କରିବାକୁ ଚାହିଁଲା । ମୁଁ ତାଙ୍କ ସାମ୍ନାକୁ ଗଲି । ଯୋଗାନନ୍ଦ ରାଜକୁମାରର ପାଗଳ ହୋଇଯିବାର କାରଣ ପଚାରିଲା । ମୁଁ କହିଲି– ସେ ତା'ର ବନ୍ଧୁ ସହିତ ବିଶ୍ୱାସଘାତକତା କରିଛି । ବନ୍ଧୁର ଶାପରେ ସେ ପାଗଳ ହୋଇଯାଇଛି ।

ମୁଁ ଏଇ କଥା କହିବା ମାତ୍ରେ ରାଜକୁମାର ତା'ର ଦୋଷ ମାନିଗଲା ଓ ସଙ୍ଗେ ସଙ୍ଗେ ତା'ର ପାଗଳାମୀ ଦୂର ହୋଇଗଲା । ରାଜା ମତେ ପଚାରିଲେ– ତମେ ତା'ର ପାଗଳାମୀର ରହସ୍ୟ କେମିତି ଜାଣିଲ ?

ମୁଁ କହିଲି– ଯେମିତି ମୁଁ ରାଣୀଙ୍କ ଅଣ୍ଟା ତଳର ତିଳ ଚିହ୍ନ ଜାଣିଲି, ସେମିତି । ପ୍ରତିଭାବାନ ଲୋକ ନିଜର ଜ୍ଞାନ ଯୋଗୁ ଅତୀତ, ଭବିଷ୍ୟତ ଓ ଅଦୃଶ୍ୟକୁ ବି ଦେଖିପାରେ ।

ରାଜା ଏଇ କଥା ଶୁଣି ମୋତେ ବହୁତ ସମ୍ମାନ ଦେଲେ ଓ ପୁଣି ମନ୍ତ୍ରୀପଦରେ କାର୍ଯ୍ୟ କରିବାକୁ ଅନୁରୋଧ କଲେ । ମୁଁ ତାଙ୍କ ଦାନ ଓ ସମ୍ମାନକୁ ଉପେକ୍ଷା କରି ଚାଲିଆସିଲି ।



ମୁଁ ଘରେ ପହଞ୍ଚିଲି ତ ମୋତେ ଦେଖି ସମସ୍ତେ କାନ୍ଦିବାକୁ ଲାଗିଲେ । କାନ୍ଦି କାନ୍ଦି ମୋ ଶ୍ୱଶୁର ଉପବର୍ଷ କହିଲେ ଯେ, ରାଜା ମୋ ମୁଣ୍ଡ କାଟିଦେଇଥିବା ଖବର ଶୁଣି ଉପକୋଶା ସଙ୍ଗେ ସଙ୍ଗେ ଆତ୍ମହତ୍ୟା କରିଦେଲା । ପୁଣି ଶୋକରେ ମୋ ମା'ଙ୍କ ହୃଦୟ ମଧ୍ୟ ଫାଟିଗଲା ।

ମା ଓ ସ୍ତ୍ରୀଙ୍କ ଏପରି ଦାରୁଣ ମୃତ୍ୟୁ ଖବର ଶୁଣି ମୁଁ କଟା ଗଛପରି କଚାଡ଼ି ପଡ଼ି ମୂର୍ଚ୍ଛା ଚାଲିଗଲି । ଚେତା ଫେରିଲା ତ ମୁଁ ପାଗଳଙ୍କ ଭଳି ପ୍ରଳାପ କରିବାକୁ ଲାଗିଲି ।

ପଣ୍ଡିତ ବର୍ଷ ଏଇସବୁ ଶୁଣି ଆସିଲେ ଓ ସଙ୍ଗେ ସଙ୍ଗେ ମୋ'ର ଚିକିତ୍ସା ଆରମ୍ଭ କଲେ ।

ତା'ପରେ ମୋର ଜୀବନ ମଧ୍ୟ ବଦଳିଗଲା । ସାରା ସଂସାର ମୋତେ ଅସାର ଲାଗିଲା । ମୁଁ ସଂସାରର ସବୁ ବନ୍ଧନ ତୁଟାଇ ତପସ୍ୟା କରିବାକୁ ତପୋବନକୁ ଚାଲିଗଲି ।

ତପୋବନରେ ରହୁ ରହୁ ବହୁତ ଦିନ କଟିଗଲା । ଥରେ ଅଯୋଧ୍ୟାରୁ ଜଣେ ବ୍ରାହ୍ମଣ ତପୋବନକୁ ଆସିଲେ । ସେ କହିଲେ– ଶକଟାର ତ ଚାହୁଁଥିଲା ଯେ ତମେ ସେଇ ରାଜାର ମନ୍ତ୍ରୀପଦ ଗ୍ରହଣ କରନ୍ତ ଆଉ ତାକୁ ରାଜା ଉପରେ ପ୍ରତିଶୋଧ ନେବାକୁ ସୁଯୋଗ ମିଳେ । ତମେ ପାଟଳୀପୁତ୍ର ଛାଡ଼ି ଚାଲିଆସିବା ପରେ କିଛିଦିନ ତଳେ ଶକଟାରଙ୍କ ସହିତ ଚାଣକ୍ୟ ନାମକ ଜଣେ ବ୍ରାହ୍ମଣଙ୍କ ସହିତ ଭେଟ ହେଲା । ପ୍ରଥମେ ଯେତେବେଳେ ସେମାନଙ୍କର ଭେଟହେଲା, ସେତେବେଳେ ଚାଣକ୍ୟ କୁଶଦୁବା ତାଡୁଥିଲେ । ଶକଟାର ପଚାରିବାରୁ ସେ କହିଲେ କୁଶ ଅଗ ବାଜି ତାଙ୍କ ପାଦ ଖଣ୍ଡିଆ ହେବାରୁ ମୁଁ ତାକୁ ସମୂଳେ ତାଡୁଛି ।

ଶକଟାରଙ୍କ ତାଙ୍କସହ ପରିଚୟ ହେଲା ଓ ସେ ଚାଣକ୍ୟଙ୍କୁ ରାଜା ନନ୍ଦଙ୍କ ପ୍ରାସାଦକୁ ତ୍ରୟୋଦଶ ତିଥି ଶ୍ରାଦ୍ଧକୁ ଭୋଜନ ନିମନ୍ତେ ନିମନ୍ତ୍ରଣ କଲେ । ତାଙ୍କୁ ପ୍ରତିଶ୍ରୁତି ଦେଲେ ଯେ ଭୋଜନ ପରେ ତାଙ୍କୁ ଲକ୍ଷେ ସୁନାମୋହର ଦକ୍ଷିଣା ଦିଆଯିବ ।

ଶ୍ରାଦ୍ଧ ଦିନ ଆସିଲା । ଚାଣକ୍ୟ ଭୋଜନ କରିବାକୁ ଥିବା ବ୍ରାହ୍ମଣମାନଙ୍କ ମଧ୍ୟରେ ସବୁଠୁଁ ଉଚ୍ଚସ୍ଥାନରେ ବସିଗଲେ, କିନ୍ତୁ ସୁବନ୍ଧୁ ନାମକ ଜଣେ ବ୍ରାହ୍ମଣ ସେଇ ସ୍ଥାନରେ ବସିବାକୁ ଚାହୁଁଥିଲେ । ଫଳରେ ଦୁଇ ବ୍ରାହ୍ମଣ କଳି କରିବାକୁ ଲାଗିଲେ । ଦୁଇ ବ୍ରାହ୍ମଣଙ୍କ କଳି କଥା ଶକଟାର ଯାଇ ରାଜା ନନ୍ଦଙ୍କୁ ଜଣାଇଲେ । ନନ୍ଦ ସୁବନ୍ଧୁଙ୍କୁ ସର୍ବୋଚ୍ଚ ସ୍ଥାନରେ ବସାଇବାକୁ ଆଦେଶଦେଲେ । ଶକଟାର ଚାଣକ୍ୟଙ୍କ ପାଖକୁ ଆସି ଡରି ଡରି ତାଙ୍କୁ କହିଲେ– ମୋର କିଛି ଦୋଷ ନାହିଁ । ଏତିକି କହି ରାଜାଙ୍କ ଆଦେଶ କଥା ସେ ଚାଣକ୍ୟଙ୍କୁ ଜଣାଇଲେ ।

ଏଇକଥା ଶୁଣି ଚାଣକ୍ୟ କ୍ରୋଧରେ ଜଳିଯାଇ ନିଜ ଚୁଟିକୁ ଖୋଲି ପକାଇଲେ ଓ ସାତଦିନ ଭିତରେ ରାଜା ନନ୍ଦଙ୍କର ବିନାଶ କରିବେ ବୋଲି ପ୍ରତିଜ୍ଞା କଲେ ।

ପ୍ରତିଜ୍ଞା କରିସାରି ଚାଣକ୍ୟ ସେଠାରୁ ଚାଲିଆସିଲେ । ଶକଟାର ତାଙ୍କୁ ନିଜ ଘରେ ଛଦ୍ମବେଶରେ ଲୁଚାଇ ରଖିଲେ । ଶକଟାର ଦେଇଥିବା ଜିନିଷ ପତ୍ର ନେଇ ଚାଣକ୍ୟ କୃତ୍ୟା ସାଧନା କରିବାକୁ ଲାଗିଲେ । ସେଇ କୃତ୍ୟାର ପ୍ରଭାବରେ ରାଜା ନନ୍ଦ ଦାହ ଜ୍ୱରରେ ସପ୍ତମ ଦିନ ମରିଗଲେ । ତା'ପରେ ଶକଟାର ଯୋଗାନନ୍ଦଙ୍କ ପୁଅ ହିରଣ୍ୟଗର୍ଭଙ୍କୁ ମଧ୍ୟ ହତ୍ୟା କରାଇଲେ ଓ ପୂର୍ବ ନନ୍ଦଙ୍କ ପୁଅ ଚନ୍ଦ୍ରଗୁପ୍ତଙ୍କୁ ରାଜା କରିଦେଲେ । ତା'ପରେ ତାଙ୍କର ସ୍ୱର୍ଗତ ଶହେପୁଅଙ୍କ ସ୍ମୃତିରେ ଦଗ୍ଧ ହୃଦୟ ନେଇ ଶକଟାର ଚାଣକ୍ୟଙ୍କୁ ଚନ୍ଦ୍ରଗୁପ୍ତଙ୍କ ମନ୍ତ୍ରୀ କରି ବଣକୁ ଚାଲିଗଲେ ।

ସେଇ ବ୍ରାହ୍ମଣଙ୍କ ଠାରୁ ଶକଟାରଙ୍କ ବିଷୟରେ ସବୁକଥା ଶୁଣି ମୁଁ ମଧ୍ୟ ଖୁସି ହେଲି । ତା' ସହିତ ମୋ'ର ମଧ୍ୟ ପୂର୍ବ ଜନ୍ମର ସ୍ମୃତିକୁ ମନେ ପଡ଼ିଗଲା । ମୁଁ ଭାବିଲି ମୋତେ ମଧ୍ୟ ଶାପ ମୁକ୍ତ ହୋଇ ଶିବଙ୍କ ଆସ୍ଥାନରେ ଶିଘ୍ର ପହଞ୍ଚିବା ପାଇଁ ମସ୍ତ ରହିବାକୁ ହେବ । ଏଥିପାଇଁ ତମକୁ ଖୋଜି

ଖୋଜି ବିନ୍ଧ୍ୟ ବଣରେ ତମ ପାଖରେ ଆସି ପହଞ୍ଚିଛି ଓ ଶିବଙ୍କ ଠାରୁ ଲୁଚିଛପି ଶୁଣିଥିବା ବୃହତ୍‌କଥା ତମକୁ ଶୁଣାଇଲି । ଏବେ ମୋର ଶାପମୁକ୍ତି ହେଲା । ମୁଁ ପ୍ରକୃତରେ ଶିବଙ୍କ ସେବକ ପୁଷ୍ପଦନ୍ତ । କାଣଭୂତି, ତମେ ଏଇଠାରେ ରହି ଅପେକ୍ଷାକର । ମୋର ସାଙ୍ଗ ମାଲ୍ୟବାନ, ଯିଏ କି ଗୁଣାଢ଼୍ୟ ନାମରେ ପୃଥିବୀରେ ଜନ୍ମ ନେଇଛି, କିଛି ସମୟ ପରେ ତୁମ ପାଖରେ ଆସି ପହଞ୍ଚିବ । ତାକୁ ଏଇ ବୃହତ୍ କଥା ଶୁଣାଇ ତମେ ମଧ ଶାପମୁକ୍ତ ହେବ ।

ଏହା କହିସାରି ଦେହତ୍ୟାଗ କରିବାକୁ ଓ ମୋକ୍ଷ ପାଇବାକୁ ବରରୁଚି ବଦ୍ରିକାଶ୍ରମ ଅଭିମୁଖେ ଚାଲିଲେ ।

# ଗୁଣାଢ଼୍ୟ କଥା

ଗୁଣାଢ଼୍ୟ ରାଜା ସାତବାହନଙ୍କ ମନ୍ତ୍ରୀ ଥିଲେ । ଭାଗ୍ୟର ଏମିତି ଖେଳ ଯେ, ସେ ସଂସ୍କୃତ, ପ୍ରାକୃତ ଓ ଅପଭ୍ରଂଶ– ତିନୋଟି ଭାଷାକୁ ବ୍ୟବହାର ନ କରିବାକୁ ପ୍ରତିଜ୍ଞା କରିଥିଲେ ଓ ବିରକ୍ତ ହୋଇ ସେ ବିନ୍ଧ୍ୟବାସିନୀଙ୍କ ଦର୍ଶନ ପାଇଁ ବିନ୍ଧ୍ୟ ବଣକୁ ଗମନ କଲେ ।

ବିନ୍ଧ୍ୟବାସିନୀ ତାଙ୍କୁ କାଣଭୂତିଙ୍କୁ ଦେଖା କରିବାକୁ ଆଦେଶ ଦେଲେ । ଏହା ସହିତ ଗୁଣାଢ଼୍ୟଙ୍କର ପୂର୍ବ ଜନ୍ମ କଥା ମନେପଡ଼ିଗଲା ଓ ସେ କାଣଭୂତିଙ୍କ ପାଖକୁ ଯାଇ କହିଲେ– ପୁଷ୍ପଦନ୍ତ ତମକୁ ଯେଉଁ ବୃହତ୍ କଥା ଶୁଣାଇଛନ୍ତି, ତାକୁ ମତେ ମଧ ଶୁଣାଅ । ତାକୁ ଶୁଣିଲେ ମୁଁ ଏଇ ଶାପରୁ ମୁକ୍ତ ହେବି । ତମେ ମଧ ଶାପମୁକ୍ତ ହେବ ।

ଗୁଣାଢ଼୍ୟଙ୍କ କଥା ଶୁଣି କାଣଭୂତି ଖୁସିହୋଇ କହିଲେ– ମୁଁ ତମକୁ ବୃହତ୍ କଥା ଅବଶ୍ୟ ଶୁଣାଇବି, କିନ୍ତୁ ତା' ଆଗରୁ ତମର ଏଇ ଜନ୍ମର କଥା ମୁଁ ଶୁଣିବାକୁ ଚାହେଁ । କାଣଭୂତିଙ୍କ ଅନୁରୋଧରେ ଗୁଣାଢ଼୍ୟ ତାଙ୍କୁ ତାଙ୍କର ନିଜ କଥା ଶୁଣାଇଲେ :

ପ୍ରତିଷ୍ଠାନ ପ୍ରଦେଶରେ ସୁପ୍ରତିଷ୍ଠିତ ନାମକ ନଗର ଅଛି । ସେଠାରେ ଏକଦା ସୋମଶର୍ମା ନାମକ ଜଣେ ଶ୍ରେଷ୍ଠ ବ୍ରାହ୍ମଣ ରହୁଥିଲେ । ତାଙ୍କର ବତ୍ସ ଓ ଗୁପ୍ତ ନାମରେ ଦୁଇ ପୁଅ ଓ ଶ୍ରୁତାର୍ଥା ନାମରେ ଝିଅଟିଏ ଥିଲେ । ସମୟକ୍ରମେ ସୋମଶର୍ମା ଓ ତାଙ୍କ ସ୍ତ୍ରୀ ମରିଗଲେ । ବତ୍ସ ଓ ଗୁପ୍ତ ସେମାନଙ୍କର ଛୋଟ ଭଉଣୀର ଲାଳନପାଳନ କରିବାକୁ ଲାଗିଲେ ।

ଦିନେ ସେମାନେ ଜାଣିପାରିଲେ ଯେ ସେମାନଙ୍କ ଭଉଣୀ ଗର୍ଭବତୀ । ପଚାରିବାରୁ ଶ୍ରୁତାର୍ଥା କହିଲା ଯେ, ଦିନେ ସେ ଗାଧୋଇ ଗଲାବେଳେ ନାଗରାଜ ବାସୁକୀଙ୍କ ଭାଇ କିର୍ତ୍ତିସେନ ତାକୁ ଦେଖି ତା' ରୂପରେ ମୁଗ୍ଧ ହୋଇଥିଲା ଓ ପରେ ସେମାନେ ଗାନ୍ଧର୍ବ ବିବାହ କଲେ ।

ଦୁଇଭାଇ ପଚାରିଲେ– ତା'ର ପ୍ରମାଣ କ'ଣ ?

ଶ୍ରୁତାର୍ଥା ନାଗକୁମାରକୁ ସ୍ମରଣ କଲା । ସଙ୍ଗେ ସଙ୍ଗେ ନାଗକୁମାର ସେଠାରେ ପହଞ୍ଚିଗଲା । ସେ ଦୁଇଭାଇଙ୍କୁ କହିଲା– ତମର ଏଇ ଭଉଣୀ ଶାପଗ୍ରସ୍ତା ଅପସରା ଅଛି ମୁଁ ତାକୁ ବିବାହ କରିଛି । ଯେବେ ତା'ର ପୁଅଟିଏ ହେବ, ସେତେବେଳେ ସେ ଓ ତମେ ଦୁଇଭାଇ ଶାପମୁକ୍ତ ହେବ ।

ସମୟକ୍ରମେ ଶ୍ରୁତାର୍ଥାର ପୁଅଟିଏ ହେଲା । ମୁଁ ଗୁଣାଢ଼୍ୟ ହେଉଛି ସେଇ ପୁଅ ।

ମୋ ଜନ୍ମ ହେବାର କିଛି ଦିନପରେ ମୋ ମା' ଓ ଦୁଇ ମାମୁଁ ଶାପମୁକ୍ତ ହୋଇ ସ୍ୱର୍ଗକୁ ଚାଲିଗଲେ । ମୁଁ ସେତେବେଳେ ପିଲା ଥିଲି । ତଥାପି କୌଣସି ମତେ ମୁଁ ଶୋକ ସମ୍ଭାଳି ପାଠ ପଢ଼ିବାକୁ ଦକ୍ଷିଣ ଆଡ଼କୁ ଚାଲିଲି । ଦକ୍ଷିଣ ଦେଶରେ ମୁଁ ସବୁ ପାଠ ଶିଖିଲି । ବହୁତ ଦିନ ପରେ ମୁଁ



ମୋ ଶିଷ୍ୟମାନଙ୍କ ସହିତ ସେଇ ସୁପ୍ରତିଷ୍ଠିତ ନଗରକୁ ଫେରିଲି । ମୋର ଗୁଣ ଯୋଗୁଁ ସେଠାରେ ମୋର ବହୁତ ଖ୍ୟାତିହେଲା । ରାଜା ସାତବାହନ ମୋତେ ସଭାକୁ ନିମନ୍ତ୍ରଣ କଲେ । ମୁଁ ଶିଷ୍ୟମାନଙ୍କ ସହ ସେଠାକୁ ଗଲି । ସେଠାରେ ବି ମୋତେ ବହୁ ଆଦର ସମ୍ମାନ ଦିଆଗଲା । ରାଜା ତାଙ୍କ ମନ୍ତ୍ରୀମାନଙ୍କ ଠାରୁ ମୋ'ର ପ୍ରଶଂସା ଶୁଣି ବହୁତ ଖୁସି ହୋଇ ମୋତେ ବି ଜଣେ ମନ୍ତ୍ରୀ କରିଦେଲେ ।

ସେତେବେଳେ ବସନ୍ତ ଋତୁ ଥିଲା । ରାଜା ସାତବାହନ ତାଙ୍କର ସୁନ୍ଦରୀ ରାଣୀମାନଙ୍କ ସହ ରାଜମହଲର ପୁଷ୍କରିଣୀରେ ଜଳକ୍ରୀଡ଼ା କରୁଥିଲେ । ଜଳରେ ପଶିଥିବା ଶ୍ରେଷ୍ଠ ଓ ମଦୁଆଲା ହାତୀ ଉପରେ ତା'ର ପ୍ରେୟସୀ ମାଈହାତୀମାନେ ଯେପରି ଶୁଣ୍ଢରେ ଜଳବର୍ଷା କରନ୍ତି, ସେହିପରି ସାତବାହନଙ୍କ ରାଣୀମାନେ ତାଙ୍କ ଉପରେ ପାଣି ଫିଙ୍ଗୁଥିଲେ । ରାଜା ମଧ ସେମାନଙ୍କ ଉପରକୁ ପାଣି ମାଡ଼ କରୁଥିଲେ । ବାରମ୍ବାର ରାଜାଙ୍କଠୁଁ ପାଣି ମାଡ଼ଖାଇ ଜଣେ ରାଣୀ ଅବଶ ହୋଇ ରାଜାଙ୍କୁ କହିଲେ– ମୋଦକେୟା ହମ୍ । ରାଜା ସେଇ ସଂସ୍କୃତ ବାକ୍ୟଟିର ଅର୍ଥ– ମୋତେ ମୋଦକ (ଲଡୁ)ରେ ମାର ବୋଲି ବୁଝିଲେ ଓ ସେ ସଙ୍ଗେ ସଙ୍ଗେ ନିଜର ସେବକମାନଙ୍କୁ ଢେର ଲଡୁ ଆଣିବାକୁ ଆଦେଶ ଦେଲେ । ଏହା ଦେଖି ରାଣୀ ହସି ଉଠି କହିଲେ– ପ୍ରିୟ, ଏଇ ଜଳକ୍ରୀଡ଼ା ସମୟରେ ଲଡୁ କ'ଣ ହେବ ? ମୁଁ ତ କହିଲି ଯେ ମୋତେ ଜଳରେ ମାରନା । ଆପଣଙ୍କୁ ତ ସଂସ୍କୃତ ବ୍ୟାକରଣରେ ସନ୍ଧିର ନିୟମ ଜଣାନାହିଁ ! ଆପଣ କୌଣସି ବାକ୍ୟ ଗଠନର ଅର୍ଥ ବି କଳନା କରିପାରନ୍ତି ନାହିଁ !

ସେଇ ରାଣୀ ବ୍ୟାକରଣରେ ପଣ୍ଡିତା ଥିଲେ । ସେ ରାଜାଙ୍କୁ ଏହିପରି ଶୁଣାଇବାରୁ ଅନ୍ୟମାନେ ମୁହଁ ଲୁଚାଇ ହସିବାକୁ ଲାଗିଲେ । ରାଜା ଲାଜରେ ସଙ୍କୁଚିତ ହୋଇଗଲେ । ସେ ପାଣିରୁ ଚୁପଚାପ୍ ବାହାରି ଆସିଲେ । ସେଦିନ ସେ କାହାକୁ କିଛି କହିଲେ ନାହିଁ କି କାହା ସହିତ ହସିଲେ ନାହିଁ । ସେ ପ୍ରତିଜ୍ଞା ନେଲେ ଯେ, ସଂସ୍କୃତ ପଣ୍ଡିତ ହେବେ, ନହେଲେ ମରିବେ । ସେଦିନ ସେ କାହାକୁ ଦେଖା କଲେନାହିଁ, ଖାଇଲେ ନାହିଁ କି ଶୋଇଲେ ନାହିଁ ।

ମନ୍ତ୍ରୀ ସର୍ବବର୍ମା ମୋତେ କହିଲେ– ମହାରାଜଙ୍କ ରାଣୀମାନଙ୍କ ଭିତରୁ ବିଷ୍ଣୁଶକ୍ତିଙ୍କ ଝିଅ ବେଶି ପାଣ୍ଡିତ୍ୟ ଦେଖାଉଛନ୍ତି । ସେ ଆମ ମହାରାଜାଙ୍କୁ ଅପମାନ କରିଛନ୍ତି । ଯଦିବ ରାଜାଙ୍କର ବ୍ୟାକରଣ ପଢ଼ିବାକୁ ଓ ପଣ୍ଡିତ ହେବାକୁ ବହୁ ଦିନରୁ ଇଚ୍ଛା ଥିଲା, ରାଣୀଙ୍କ କଥା ତାଙ୍କୁ ବହୁତ ଆଘାତ ଦେଇଛି ।

ତା'ପର ଦିନ ମୁଁ ଓ ସର୍ବବର୍ମା ରାଜାଙ୍କୁ ଭେଟିବାକୁ ଗଲୁ । ରାଜାଙ୍କ ସମ୍ମୁଖରେ ଆମେ କିଛି ସମୟ ବସିରହିଲୁ । ମୁଁ ପଚାରିଲି– ମହାରାଜ, କଥା କ'ଣ ? ଅକାରଣରେ ଆପଣ କାହିଁକି ଉଦାସ ଦିଶୁଛନ୍ତି ? ତଥାପି ରାଜା କିଛି ଉତ୍ତର ଦେଲେନାହିଁ ।

ତା'ପରେ ସର୍ବବର୍ମା ରାଜାଙ୍କୁ ଗପଟିଏ ଶୁଣାଇ କହିଲେ– ମହାରାଜ, ମୁଁ ଆଜି ସକାଳେ ପଦ୍ମ କଢ଼ଟିଏ ଆକାଶରୁ ଖସିବାର ସ୍ୱପ୍ନରେ ଦେଖିଲି, ତା'ସହିତ କୌଣସି ଦେବକୁମାରଙ୍କ ଆବିର୍ଭାବ ହେଲା । ସେଇ ଦେବ କୁମାର ପଦ୍ମ କଢ଼ଟିକୁ ଫୁଲ କରିଦେଲେ, କଢ଼ିଟେ ଖୋଲି ଫୁଲ ହୋଇଯିବାରୁ ସେଇ ଫୁଲରୁ ଧଳା ଶାଢ଼ୀ ପିନ୍ଧିଥିବା ଦେବୀଟିଏ ବାହାରିଲେ ଓ ସିଧା ସେ ଆପଣଙ୍କ ମୁହଁ ଭିତରକୁ ଚାଲିଗଲେ । ଏତିକିବେଳେ ମୋ ସ୍ୱପ୍ନ ଭାଙ୍ଗିଗଲା । ମହାରାଜ, ମୁଁ ଏଇକ୍ଷଣି ବୁଝିଗଲି । ସେଇ ଦେବୀ ପ୍ରକୃତରେ ସରସ୍ୱତୀ ଏବଂ ସେ ଆପଣଙ୍କ ମୁହଁ ଭିତରେ ରହୁଛନ୍ତି, ଏଥିରେ ଟିକେ ହେଲେ ସନ୍ଦେହ ନାହିଁ ।

ସର୍ବବର୍ମାଙ୍କ କଥା ଶୁଣି ରାଜା ଅଳ୍ପ ହସି କହିଲେ– ମୁଁ ତ ମୂର୍ଖ । ପାଠ ନଥିବାରୁ ଏଇ ଧନସମ୍ପତ୍ତି ମୋତେ ମୋଟେ ମାନୁନାହିଁ । ତମେମାନେ କୁହ ଜଣେ ଲୋକ ପରିଶ୍ରମ କଲେ କେତେ ଦିନରେ ବ୍ୟାକରଣ ଶିଖିପାରିବ ?

ମୁଁ କହିଲି— ମହାରାଜ, ବ୍ୟାକରଣ ସବୁ ବିଦ୍ୟାର ଦର୍ପଣ । ନିୟମ ଅଛି ବାରବର୍ଷ ପର୍ଯ୍ୟନ୍ତ ଯଦି ଜଣେ ବ୍ୟାକରଣ ନିୟମିତ ପଢ଼ିବ; ତେବେ ଯାଇ ସେ ବ୍ୟାକରଣରେ ପଣ୍ଡିତ ହେବ । କିନ୍ତୁ ମୁଁ ଆପଣଙ୍କୁ ଛଅ ବର୍ଷରେ ବ୍ୟାକରଣ ପଣ୍ଡିତ କରିଦେବି ।

ଏଇ କଥା ଶୁଣି ସର୍ବବର୍ମା ଉତ୍ସାହ ସହକାରେ କହିଲେ— ମହାରାଜ, ମୁଁ ଆପଣଙ୍କୁ ଛଅ ମାସରେ ବ୍ୟାକରଣରେ ପଣ୍ଡିତ କରିଦେବି ।

ମୁଁ କହିଲି— ମହାରାଜ, ଏ କଥା ଅସମ୍ଭବ । ଯଦି ସର୍ବବର୍ମା ଆପଣଙ୍କୁ ଛଅମାସରେ ବ୍ୟାକରଣରେ ପଣ୍ଡିତ କରିଦିଅନ୍ତି, ମୁଁ ସଂସ୍କୃତ, ପ୍ରାକୃତ ଓ ଦେଶୀୟ ଭାଷା ତିନୋଟି ଯାକ ଛାଡ଼ିଦେବି ।

ସର୍ବବର୍ମା କହିଲେ— ମୁଁ ଯଦି ସେଇୟା କରି ନପାରିବି, ବାର ବର୍ଷକାଳ ତୁମ କଠଉକୁ ମୁଣ୍ଡରେ ମୁଣ୍ଡାଇବି ।

ସ୍ୱାମୀ କୁମାରଙ୍କ ଦୟାରୁ ପ୍ରାପ୍ତ କାତନ୍ତ୍ର ବ୍ୟାକରଣ ସାହାଯ୍ୟରେ ସର୍ବବର୍ମା ରାଜାଙ୍କୁ ଛଅ ମାସରେ ପଣ୍ଡିତ କରିଦେଲେ । ସାରା ରାଜ୍ୟରେ ଉତ୍ସବ ପାଳନ କରାଗଲା । ପ୍ରତ୍ୟେକ ଘର ଉପରେ ପତାକାମାନ ଉଡ଼ିଲା । ରାଜା ସର୍ବବର୍ମାଙ୍କୁ ବହୁତ ଧନ ସଂପତ୍ତି ଦେଇ ମୃଗକଚ୍ଛ ଦେଶର ରାଜା କରିଦେଲେ । ରାଜା ବିଷ୍ଣୁଶକ୍ତିଙ୍କ ଯେଉଁ ଝିଅଙ୍କ ଉକ୍ତିକା ଯୋଗୁଁ ରାଜା ବ୍ୟାକରଣ ଶିଖିବାରେ ଆଗ୍ରହୀ ହୋଇଥିଲେ, ତାଙ୍କୁ ସେ ପାଟରାଣୀ କରିଦେଲେ ।

ମୁଁ ମଧ୍ୟ ତିନୋଟି ଭାଷାକୁ ତ୍ୟାଗକରି ମୌନବ୍ରତ ଧାରଣକରି ଓ ପୁଣି ବିନ୍ଧ୍ୟବାସିନୀଙ୍କ ଦର୍ଶନ କରିବାକୁ ବାହାରି ପଡ଼ିଲି । ଦେବୀ ବିନ୍ଧ୍ୟବାସିନୀଙ୍କ ଆଦେଶରେ ମୁଁ ତମକୁ ଭେଟିବାକୁ ଆସିଛି । ବିନ୍ଧ୍ୟର ବଣରେ ରହି ସେଠିକାର ଆଦିବାସୀଙ୍କ ଠାରୁ ମୁଁ ଏହି ପିଶାଚ ଭାଷା ଶିଖିଛି, ଯେଉଁ ଭାଷାରେ ତୁମ ସହିତ କଥା ହେଉଛି । ଏଥର ତମେ ମୋତେ ବୃହତ୍ କଥା ଶୁଣାଅ । ମୁଁ ତାକୁ ପିଶାଚ ଭାଷାରେ ଲେଖିବି । ତା'ପରେ ଯାଇ ମୁଁ ଶାପମୁକ୍ତ ହେବି ।

ଗୁଣାଢ୍ୟ ଏହିପରି ନିଜ କଥା ଶୁଣାଇବା ପରେ କାଣଭୂତି ବି ତାଙ୍କୁ ବରରୁଚିଙ୍କଠୁଁ ଶୁଣିଥିବା ବୃହତ୍ କଥା ଶୁଣାଇଲେ । ଗୁଣାଢ୍ୟ ସାତ ବର୍ଷକାଳ ସାତ ଲକ୍ଷ ଛନ୍ଦରେ ପିଶାଚୀ ଭାଷାରେ ନିଜ ରକ୍ତରେ ଏହି ବିଖ୍ୟାତ କଥା ଲେଖିଲେ । ଏହିଭଳି ଗୁଣାଢ୍ୟଙ୍କ କଥା ପୂରା ଲେଖାଗଲା ଓ ସେଇ ମହାକଥାକୁ କାଣଭୂତି ଶୁଣିଲେ ଓ ଗୁଣାଢ୍ୟଙ୍କ ରଚିତ ବୃହତ୍ କଥାକୁ ଦେଖିଲେ ଓ ସେ ଶାପମୁକ୍ତ ହୋଇଗଲେ । ତାଙ୍କ ସହିତ ରହୁଥିବା ପିଶାଚମାନେ ମଧ୍ୟ ଏହିକଥା ଶୁଣି ଦେବଲୋକରେ ପହଞ୍ଚିଗଲେ ।

ବର୍ତ୍ତମାନ ଗୁଣାଢ୍ୟ ଭାବିଲେ— ଦେବୀ ପାର୍ବତୀ ମୋର ଶାପମୁକ୍ତିର ଉପାୟ ବତାଇ କହିଥିଲେ କି ମୋତେ ଏହି କଥାକୁ ପ୍ରଚାର କରିବାକୁ ହେବ । ତା' ହେଲେ ମୁଁ ଏହାର ପ୍ରଚାର ପାଇଁ କ'ଣ କରିବି ? କାହାକୁ ମୁଁ ଏହାକୁ ଦେବି ?

ଗୁଣଦେବ ଓ ନାନ୍ଦୀଦେବ ନାମରେ ଦୁଇ ଜଣ ଶିଷ୍ୟ ଗୁଣାଢ୍ୟଙ୍କ ସାଙ୍ଗରେ ଥିଲେ । ସେମାନେ ତାଙ୍କୁ କହିଲେ— ଏଇ ମହାନ୍ କଥାକୁ ଅର୍ପଣ କରିବାକୁ ରାଜା ସାତବାହନଙ୍କ ଠୁଁ ଆଉ ଯୋଗ୍ୟ ଲୋକ କିଏ ଅଛି ? ଯେମିତି ପବନ ଗୋଟିଏ ଝଲକରେ ଫୁଲର ସୁଗନ୍ଧକୁ ଦୂର ଦୂରାନ୍ତକୁ ନେଇ ନିଏ, ସେମିତି ସାତବାହନ ଏଇ ବୃହତ୍ କଥାର ପ୍ରସାର କରିବେ ।

ଗୁଣାଢ୍ୟଙ୍କୁ ବି ଏଇ ପ୍ରସ୍ତାବ ପସନ୍ଦ ଆସିଲା । ସେ ନିଜ ଶିଷ୍ୟମାନଙ୍କୁ ନେଇ ପ୍ରତିଷ୍ଠାନପୁରକୁ ମୁହାଁଇଲେ । ନଗରରେ ପହଞ୍ଚି ଗୁଣାଢ୍ୟ ଗୋଟିଏ ବଗିଚାରେ ରହି ନିଜର ଶିଷ୍ୟ ଦୁଇଜଣଙ୍କୁ ରାଜାଙ୍କ ପାଖକୁ ପଠାଇଲେ ।



ରାଜା ସେଇ ପୁସ୍ତକର ବୃତ୍ତାନ୍ତ ଶୁଣି କହିଲେ— ଏବେତ ସାତଲକ୍ଷ ଶ୍ଳୋକରେ ଏତେ ଲମ୍ବା ଚଉଡ଼ା କଥା, ତା'ପରେ ପୁଣି ନୀରସ ପିଶାଚ ଭାଷାରେ ଥାଇ ମଣିଷ ରକ୍ତରେ ଲେଖାଯାଇଛି । ଏମିତି କଥାକୁ ଧିକ୍କାର ।

ଶିଷ୍ୟ ଦୁଇଜଣ ବହିଟିକୁ ଚୁପଚାପ୍ ଉଠାଇ ନେଇ ଗୁଣାଢ୍ୟଙ୍କ ପାଖକୁ ଫେରି ଆସିଲେ ଓ ଗୁରୁଙ୍କୁ ରାଜାଙ୍କ ବ୍ୟବହାର ଅବିକଳ କହିଲେ । ଏଇସବୁ ଶୁଣି ଗୁଣାଢ୍ୟ ବହୁତ ଦୁଃଖିତ ହେଲେ । ସେ ସେଇ ବଗିଚା ପାଖରେ ଗୋଟିଏ ଉଚ୍ଚ ପଟାଣ ଉପରେ ବସିଗଲେ ଓ ପଟାଣ ତଳକୁ ଗୋଟିଏ ନିଆଁକୁଣ୍ଡ ଜଳାଇଲେ । ନିଆଁ କୁଣ୍ଡରେ ଯେତେବେଳେ ନିଆଁ ହୁତୁ ହୁତୁ ଜଳିଲା, ଗୁଣାଢ୍ୟ ପାଖାପାଖି ରହୁଥିବା ମୃଗ ଓ ପଶୁପକ୍ଷୀମାନଙ୍କୁ କଥା ଶୁଣାଇ ଶୁଣାଇ ବହିର ଗୋଟିଏ ଗୋଟିଏ ପୃଷ୍ଠା ଚିରି ନିଆଁରେ ପକାଇ ଚାଲିଲେ । ବଣର ପଶୁ ପକ୍ଷୀମାନେ ଖାଇବା ଛାଡ଼ିଦେଲେ । ସେମାନେ ମଧ୍ୟ କାନ୍ଦି କାନ୍ଦି ବୃହତ୍ କଥା ଶୁଣି ଚାଲିଲେ ।

ଏଇ ସମୟରେ ରାଜା ସାତବାହନ ଅସୁସ୍ଥ ହୋଇ ପଡ଼ିଲେ । ବୈଦ୍ୟମାନେ ପରୀକ୍ଷାକରି କହିଲେ— ଶୁଖିଲା ମାଂସ ଖାଇବା ଦ୍ୱାରା ରାଜାଙ୍କୁ ରୋଗ ହୋଇଛି ।

ରୋଷେଇ ଶାଳର ରୋଷେୟାମାନଙ୍କୁ ଡାକି ଗାଳି ଦେବାରୁ ସେମାନେ କହିଲେ— ଏଥିରେ ଆମର କ'ଣ ଦୋଷ ? ମାଂସ ଦେଲାବାଲା ଯୋଉ ମାଂସ ଦଉଛି ଆମେ ସେଇ ମାଂସ ରାନ୍ଧୁଛୁ ।

ମାଂସ ବିକାଳୀଙ୍କୁ ଡାକି ପଚରା ଯିବାରୁ ସେ କହିଲା— ନଗର ପାଖରେ ଥିବା ପାହାଡ଼ ଉପରେ ଜଣେ ବ୍ରାହ୍ମଣ ବସିଛନ୍ତି । ସେ ପୋଥିରୁ ଗୋଟିଏ ଗୋଟିଏ ପୃଷ୍ଠା ଚିରି ନିଆଁକୁ ପକାଉଛନ୍ତି । ବଣର ସବୁ ପଶୁପକ୍ଷୀ ଏକାଠି ହୋଇ ନଖାଇ ନପିଇ ତାଙ୍କ କଥା ଶୁଣୁଛନ୍ତି । ତେଣୁ ସେମାନଙ୍କ ମାଂସ ଏମିତି ହେଉଛି ।

ରାଜା ସେଇକଥା ଜାଣିଲେ ଓ ତାଙ୍କର ବହୁତ କୌତୂହଳ ହେଲା । ସେ ଗୁଣାଢ୍ୟ କଥା ଶୁଣାଉଥିବା ସ୍ଥାନରେ ପହଞ୍ଚିଲେ । ଏତେଦିନ ଧରି ବଣରେ ରହୁ ଥିବାରୁ ଗୁଣାଢ୍ୟଙ୍କ ମୁଣ୍ଡର କେଶ ବଢ଼ି ଜଟା ହୋଇଯାଇଥିଲା । ଆଖିରୁ ଲୁହ ବୁହାଇ ଶାନ୍ତ ଭାବରେ ପଶୁ-ପକ୍ଷୀଙ୍କ ଗହଣରେ ବସି ସେ କଥା ପଢ଼ି ଚାଲିଥିଲେ । ରାଜା ତାଙ୍କୁ ଚିହ୍ନି ପ୍ରଣାମ କଲେ ଓ ସବୁକଥା ପଚାରିଲେ ।

ଗୁଣାଢ୍ୟ ଶିବଙ୍କ ସେବକ ମାଲ୍ୟବାନଙ୍କ ଅବତାର ଜାଣିପାରି ରାଜା ତାଙ୍କ ପାଦତଳେ ପଡ଼ିଗଲେ ଓ ଶିବଙ୍କ ମୁହଁରୁ ବାହାରିଥିବା ସେଇ ଦିବ୍ୟ କଥାକୁ ମାଗିଲେ ।

ଗୁଣାଢ୍ୟ କହିଲେ— ରାଜା, ଲକ୍ଷେ ଲେଖାଏଁ ଶ୍ଳୋକଥିବା ସାତ ଖଣ୍ଡ ପୋଥିରୁ ମୁଁ ଛଅଖଣ୍ଡ ଜଳାଇ ସାରିଲିଣି । ଲକ୍ଷେ ଶ୍ଳୋକର ଏଇ ଖଣ୍ଡିକ ପୋଥି ବାକି ଅଛି ଯେଉଁଥିରେ ରାଜା ନରବାହନ ଦତ୍ତଙ୍କ କଥା ଅଛି । ଏଇଟାକୁ ନେଇଯାଅ ।

ଏତିକି କହି ବୃହତ୍ କଥାର ଶେଷ ଖଣ୍ଡ ରାଜା ସାତବାହନଙ୍କୁ ଦେଇ ସେ ତାଙ୍କଠାରୁ ଓ ନିଜ ଶିଷ୍ୟମାନଙ୍କ ଠାରୁ ବିଦାୟ ନେଇ ଯୋଗ ବଳରେ ନିଜର ଦେହତ୍ୟାଗ କରି ଶାପମୁକ୍ତ ହେଲେ ଓ ନିଜର ପୂର୍ବପଦ ଫେରିପାଇଲେ ।

ରାଜା ସାତବାହନ ବଞ୍ଚି ଯାଇଥିବା ବୃହତ୍‌କଥାର ଶେଷଖଣ୍ଡ ପୋଥିକୁ ବକ୍ଷରେ ଧରି ନଗରକୁ ଆସିଲେ । ସେ ଗୁଣାଢ୍ୟଙ୍କ ଶିଷ୍ୟ ଗୁଣଦେବ ଓ ନାନ୍ଦୀଦେବଙ୍କୁ ସମ୍ମାନକରି ସେମାନଙ୍କ ସାହାଯ୍ୟରେ ବୃହତ୍ କଥାକୁ ନିଜ ଭାଷାରେ ଅନୁବାଦ କରାଇଲେ ଓ ପ୍ରସାର କରାଇଲେ । ତା'ପରେ ଏଇ କଥା ପ୍ରତିଷ୍ଠାନପୁରରୁ ସାରା ପୃଥିବୀରେ ପ୍ରସାର ହୋଇ ଆସୁଅଛି ।

# ଉଦୟନ କଥା

ଭାରତ ଭୂମିରେ ବତ୍ସ ନାମକ ଦେଶଟିଏ ଅଛି । ସେ ଦେଶ ଏତେ ମନୋରମ ଯେ, ମନେହୁଏ ସ୍ୱର୍ଗର ଅଭିମାନ ଭାଙ୍ଗିବାକୁ ବିଧାତା ତାକୁ ତିଆରି କରିଛନ୍ତି । ଧନଧାନ୍ୟରେ ପୂର୍ଣ୍ଣ କୌଶାମ୍ବୀ ନଗରୀ ଏଇ ରାଜ୍ୟରେ ଅବସ୍ଥିତ ଓ କୌଶାମ୍ବୀ ସେଇ ରାଜ୍ୟର ରାଜଧାନୀ । ସେଇ ନଗରୀରେ ଶତାନୀକ ନାମରେ ଜଣେ ରାଜା ରାଜତ୍ୱ କରୁଥିଲେ । ଶତାନୀକ ପାଣ୍ଡବଙ୍କ ବଂଶରେ ଜନ୍ମ ହୋଇଥିଲେ । ସେ ରାଜା ଜନ୍ମେଜୟଙ୍କ ପୁଅ, ପରୀକ୍ଷିତଙ୍କ ନାତି ତଥା ଅଭିମନ୍ୟୁଙ୍କ ଅଣନାତି ଥିଲେ । ତାଙ୍କ ରାଣୀଙ୍କ ନାମ ବିଷ୍ଣୁମତୀ ଥିଲା ।

ଶତାନୀକଙ୍କ ପୁଅ ସହସ୍ରାନୀକ । ସହସ୍ରାନୀକ ଯୁବକ ହୁଅନ୍ତେ ଶତାନୀକ ତାଙ୍କୁ ଯୁବରାଜ ପଦରେ ବସାଇ ବନବାସ ନେବାକୁ ବିଚାର କରୁଥିଲାବେଳେ ଅସୁରମାନଙ୍କ ବିପକ୍ଷରେ ଯୁଦ୍ଧରେ ସାହାଯ୍ୟ କରିବା ପାଇଁ ଇନ୍ଦ୍ର ତାଙ୍କୁ ଡକାଇଲେ । ଶତାନୀକ ରାଜ୍ୟର ଦାୟିତ୍ୱ ମନ୍ତ୍ରୀ ଯୁଗନ୍ଧର ଓ ସେନାପତି ସୁପ୍ରତିକଙ୍କୁ ଦେଲେ ଓ ନିଜ ପୁଅ ସହସ୍ରାନୀକଙ୍କୁ ଯୁବରାଜ ପଦ ଦେଇ ଯୁଦ୍ଧ ପାଇଁ ବାହାରିଲେ । ଦେବତା ଓ ଅସୁରମାନଙ୍କ ଯୁଦ୍ଧରେ ସେ ଅନେକ ଅସୁରଙ୍କୁ ମାରି ବୀରଭାବରେ ଲଢୁ ଲଢୁ ଯୁଦ୍ଧ ଭୂମିରେ ଢଳିପଡିଲେ । ସାରଥି ତାଙ୍କର ଶବକୁ ନେଇ କୌଶାମ୍ବୀରେ ପହଞ୍ଚିଲେ । ରାଣୀ ବିଷ୍ଣୁମତୀ ସ୍ୱାମୀଙ୍କ ସହ ସତୀ ହୋଇଗଲେ ।

ତା'ପରେ ସହସ୍ରାନୀକ କୌଶାମ୍ବୀର ରାଜାହୋଇ ଶାସନ କଲେ । ସେଣେ ଦେବତା ଓ ଅସୁରଙ୍କ ଯୁଦ୍ଧରେ ଦେବତାମାନେ ବିଜୟୀ ହେଲେ । ଇନ୍ଦ୍ର ମାତଳୀ ଦ୍ୱାରା ସହସ୍ରାନୀକଙ୍କୁ ବିଜୟ ଉତ୍ସବରେ ଯୋଗଦେବାକୁ ଡକାଇଲେ ।

ଦିନେ ସ୍ୱର୍ଗରେ ଇନ୍ଦ୍ରଙ୍କ ସହିତ ସହସ୍ରାନୀକ ଖୁସିଗପ କରୁଥିଲା ବେଳେ ଇନ୍ଦ୍ର କହିଲେ– ସହସ୍ରାନୀକ, ଏବେ ତୁମର ବିବାହ ବୟସ ହୋଇଯାଇଛି । ଯେଉଁ ରାଜକୁମାରୀକୁ ତମେ ବାହାହେବ, ତାକୁ ମୁଁ ଜାଣେ । ସେ ଅଳୁଷା ନାମକ ଅପ୍ସରା । ତାକୁ ବ୍ରହ୍ମା ଶାପ ଦେଇଛନ୍ତି । ପୂର୍ବ ଜନ୍ମରେ ତୁମେ ବସୁ ଥିଲ ଓ ସେ ତୁମକୁ ପ୍ରେମ କରୁଥିଲା ।

ସହସ୍ରାନୀକ ଉତ୍ସୁକ ହୋଇ ପଚାରିଲେ– ଦେବରାଜ, ମୋତେ ଅଳୁଷା କେଉଁଠି ମିଳିବ ?

ଇନ୍ଦ୍ର କହିଲେ– ସେ ଅଯୋଧ୍ୟାର ରାଜା କୃତବର୍ମାର ଝିଅ ମୃଗାବତୀ ନାମରେ ଜନ୍ମ ହୋଇଛି ।

ଏତିକି ଶୁଣି ସହସ୍ରାନୀକ ମୃଗାବତୀକୁ ପାଇବାକୁ ବ୍ୟାକୁଳ ହୋଇ ଇନ୍ଦ୍ରଙ୍କ ଠାରୁ ବିଦାୟ ନେଇ ପୃଥିବୀ ଅଭିମୁଖେ ବାହାରିଲେ । ସେ ମାତଳୀ ସହିତ ଯେତେବେଳେ ବାହାରିଲେ, ଅପ୍ସରା ତିଲୋତ୍ତମା ତାଙ୍କୁ ଡାକିଲେ । କିନ୍ତୁ ସହସ୍ରାନୀକ ମୃଗାବତୀର ସ୍ମୃତିରେ ଏମିତି ହଜି ଯାଇଥିଲେ ଯେ, ତାଙ୍କୁ ତିଲୋତ୍ତମାର ଡାକରା ଶୁଭିଲା ନାହିଁ । ତିଲୋତ୍ତମା ରାଗିଯାଇ ତାଙ୍କୁ ଅଭିଶାପ ଦେଲା– ଆରେ ରାଜା, ଯୋଉ ରାଜକୁମାରୀ ପାଇଁ ମୋ କଥା ତୋତେ ଶୁଭୁନାହିଁ, ତୋତେ ତା'ଠାରୁ ଚଉଦ ବର୍ଷ ଅଲଗା ରହିବାକୁ ପଡ଼ିବ । ତିଲୋତ୍ତମାର ଏଇ ଅଭିଶାପ ମାତଳୀ ଶୁଣିପାରିଲା କିନ୍ତୁ ରାଜା ଶୁଣିପାରିଲେ ନାହିଁ ।

ପୃଥିବୀକୁ ଆସି ସହସ୍ରାନୀକ ମୃଗାବତୀଙ୍କୁ ବିବାହ କଲେ । ସମୟ ଗଡି ଚାଲିଲା । ରାଜାଙ୍କ ମନ୍ତ୍ରୀମାନଙ୍କର ପୁଅମାନେ ଜନ୍ମ ହେଲେ । ଯୁଗନ୍ଧର ମନ୍ତ୍ରୀଙ୍କ ପୁଅର ନାମ ଯୌଗନ୍ଧରାୟଣ ରଖାଗଲା । ସେନାପତି ସୁପ୍ରତୀକଙ୍କ ପୁଅ ରୁମଣ୍ୱାନ ଓ ରାଜାଙ୍କ ବିଦୂଷକଙ୍କ ପୁଅ ବସନ୍ତକ ହେଲା । ଏହି ସମୟରେ



ରାଣୀ ମୃଗାବତୀ ଗର୍ଭବତୀ ହେଲେ । ରାଜା ତାଙ୍କୁ ଆଖିରୁ ଅନ୍ତର କଲେ ନାହିଁ ଓ ବାରମ୍ବାର ତାଙ୍କୁ ପଚାରିଲେ– ତମର କିଛି ଇଚ୍ଛା ଅଛି ତ କୁହ । ରାଣୀ ଲାଲ ରଙ୍ଗରେ ପୂର୍ଣ୍ଣ ହୋଇଥିବା ପାଣି କୁଣ୍ଡରେ ଗାଧୋଇବାକୁ ଚାହିଁଲେ । ରାଜା ତାଙ୍କ ମନ ରଖିବାକୁ ଲାକ୍ଷା ଆଦି ବିଭିନ୍ନ ରସରେ ଭରାହୋଇଥିବା ପାଣିକୁଣ୍ଡଟିଏ ତିଆରି କଲେ । ଯେମିତି ରାଣୀ ସେଇ କୁଣ୍ଡରେ ବୁଡ଼ ମାରି ଉଠିଛନ୍ତି, ଗରୁଡ଼ ପକ୍ଷୀଟିଏ ତାଙ୍କୁ ମାଂସ ପିଣ୍ଡୁଳା ଭାବି ଝାମ୍ପିନେଇ ଉଡ଼ିଗଲା । ରାଜା ଜାଣିପାରି ରାଣୀଙ୍କୁ ବଞ୍ଚାଇବା ପାଇଁ ଦୌଡିଲେ, କିନ୍ତୁ ସେତେବେଳକୁ ରାଣୀ ବହୁତ ଦୂରକୁ ଚାଲିଯାଇଥିଲେ ।

ରାଣୀ ଆଉ ମିଳିବେ ନାହିଁ– ଏଇୟା ଭାବି କାନ୍ଦି କାନ୍ଦି ରାଜା ମୂର୍ଚ୍ଛା ହୋଇଗଲେ । ଚେତାପାଇ ସେ ପୁଣି କାନ୍ଦିବାକୁ ଲାଗିଲେ । ମନ୍ତ୍ରୀମାନେ ତାଙ୍କୁ ବୁଝାଇ ସୁଝାଇ ବୋଧ ଦେବାକୁ ଲାଗିଲେ । ଏଇ ସମୟରେ ସ୍ୱର୍ଗରୁ ମାତଳୀଙ୍କ ରଥ ଓହ୍ଲାଇଲା ଓ ମାତଳୀ ରାଜାଙ୍କ ପାଖରେ ପହଞ୍ଚି ତାଙ୍କୁ ତିଲୋତ୍ତମାର ଅଭିଶାପ କଥା ଜଣାଇଲେ । ମାତଳୀ ଓ ମନ୍ତ୍ରୀମାନଙ୍କ ପ୍ରବୋଧନାରେ ରାଜା ବିରହରେ କୌଣସି ମତେ ବଞ୍ଚିବାକୁ ଲାଗିଲେ ।

ଏଣେ ସେଇ ଗରୁଡ଼ ପକ୍ଷୀ ଦେଖିଲା ଯେ, ଯାହାକୁ ସେ ମାଂସ ପିଣ୍ଡୁଳା ଭାବିଥିଲା, ସେ କେହି ଜୀବିତ ମଣିଷ । ସେ ରାଣୀଙ୍କୁ ଉଦୟଗିରୀ ପାହାଡ଼ ଚୂଡ଼ାରେ ଛାଡିଦେଲା । ଶୋକ ଭୟରେ କେଉଁଠି ଅଛନ୍ତି ରାଣୀ ଜାଣିବା ପୂର୍ବରୁ ଗୋଟିଏ ଅଜଗର ତାଙ୍କୁ ଗିଳିବା ପାଇଁ ତାଙ୍କ ଉପରକୁ ଡେଇଁଲା । ସେଇକ୍ଷଣି କୌଣସି ଦିବ୍ୟ ପୁରୁଷ ଅଜଗରକୁ ମାରି ତାଙ୍କୁ ବଞ୍ଚାଇଲେ । ବ୍ୟାକୁଳ ହୋଇ ରାଣୀ ସେଇ ଗହନ ବନରେ ବୁଲିବାକୁ ଲାଗିଲେ । ହତାଶ ହୋଇ ସେ ଜୀବନ ହାରିବାକୁ ଚେଷ୍ଟାକରି ଗୋଟିଏ ବଣୁଆ ହାତୀ ସାମ୍ନାକୁ ଦଉଡ଼ିଗଲେ । ହାତୀଟି କିନ୍ତୁ ତାଙ୍କୁ ଦଳି ନଦେଇ ଶୁଣ୍ଢରେ ଉଠାଇ ନେଇ ଗୋଟିଏ ଝରଣା କୂଳରେ ବସାଇ ଦେଲା ।

ରାଣୀ ହତାଶ ହୋଇ ସେଇ ଝରଣା କୂଳରେ ବସିଥିବା ବେଳେ ଜଣେ ମୁନିକୁମାର ଆସି ତାଙ୍କୁ କହିଲା– ଏଇ ନିକଟରେ ଜମଦଗ୍ନି ଋଷିଙ୍କ ଆଶ୍ରମ । ଆପଣ ସେଇଠିକୁ ଚାଲନ୍ତୁ ।

ରାଣୀ ତା' ସହିତ ଜମଦଗ୍ନିଙ୍କ ଆଶ୍ରମକୁ ଚାଲିଗଲେ ।

ଆଶ୍ରମରେ ରାଣୀଙ୍କର ପୁଅଟିଏ ହେଲା ଓ ତା'ର ନାମ ରଖାଗଲା ଉଦୟନ ।

ସମୟ କ୍ରମେ ରାଣୀ ଉଦୟନଙ୍କର କ୍ଷତ୍ରିୟ ବିଧିରେ ସଂସ୍କାର କରାଇଲେ ଓ କ୍ରମେ କ୍ରମେ ଉଦୟନ କିଶୋର ଅବସ୍ଥାରେ ପହଞ୍ଚିଲା । ଦିନେ ରାଣୀ ନିଜ ହାତରୁ ସହସ୍ରାନୀକଙ୍କ ନାମ ଅଙ୍କିତ କଙ୍କଣ ଓହ୍ଲାଇ ଉଦୟନଙ୍କୁ ପିନ୍ଧାଇ ଦେଲେ ।

ଦିନେ କିଶୋର ଉଦୟନ ଶିକାର କରିବାକୁ ବଣକୁ ଯାଇଥିଲେ । ବଣରେ ସେ ଜଣେ ଶବରକୁ ସାପଟିଏ ଧରି ନେଉଥିବାର ଦେଖିଲେ । ତାଙ୍କର ସେଇ ସାପ ଉପରେ ଦୟା ହେଲା ଓ ଶବରକୁ ସାପଟିକୁ ଛାଡି ଦେବାକୁ କହିଲେ ।

ଶବର କହିଲା– ମୁଁ ଗରୀବ । ସାପ ଖେଳ ଦେଖେଇ ପେଟ ପୋଷେ । ମୁଁ ଯାକୁ କଦାପି ଛାଡ଼ିବିନି ।

ତା'ପରେ ଉଦୟନ ତାକୁ ତାଙ୍କ ମା' ଦେଇଥିବା କଙ୍କଣ ଶବରକୁ ଦେଇ କହିଲେ– ଯାକୁ ରଖ ଆଉ ସାପକୁ ଛାଡିଦିଅ ।

ଶବର ସାପଟିକୁ ଛାଡିଦେଲା ଓ କଙ୍କଣକୁ ବଜାରରେ ବିକିବାକୁ ଚାଲିଗଲା ।

ଶବର ଚାଲିଗଲା ପରେ ସାପଟି ଉଦୟନ ସାମ୍ନାରେ ମଣିଷ ରୂପରେ ଠିଆ ହୋଇ କହିଲା– ମୁଁ ନାଗରାଜ ବାସୁକୀର ବଡ଼ ଭାଇ ବସୁନେମି । ତମେ ମୋତେ ରକ୍ଷା କରିଛ, ତେଣୁ ମୁଁ ତମକୁ

ମଧୁରସ୍ୱର ଦେଇ ପାରୁଥିବା ଏଇ ବୀଣା ଦେଉଛି । ଏହା ସହିତ କେବେ ମଉଳୁ ନଥିବା ଏଇମାଳା ଓ କେବେ ଶୁଖୁ ନଥିବା ଏଇ ପାଣି ଲୋଟା ଦେଉଛି । ତମେ ମୋର ଏଇ ଉପହାରକୁ ଗ୍ରହଣକର ।

ଉଦୟନ ବସୁନେମୀଙ୍କ ଉପହାର ଗ୍ରହଣ କରି ଆଶ୍ରମକୁ ଗଲେ ।

ଏଣେ ନଗରରେ ରାଜାଙ୍କ ନାମ ଲିଖିତ କଙ୍କଣକୁ ବିକିବାକୁ ଯାଇ ଶବର ରାଜାଙ୍କ ସୈନ୍ୟମାନଙ୍କ ହାତରେ ଧରା ପଡିଲା ଓ ତାକୁ ରାଜାଙ୍କ ଉଆସକୁ ନିଆଗଲା ।

କଙ୍କଣକୁ ଦେଖି ରାଜା ସହସ୍ରାନିକ ପୁଣି ଶୋକରେ ଭାଙ୍ଗିପଡିଲେ । ଶବରକୁ ପଚାରିବାରୁ ସେ କଙ୍କଣ ପାଇବାର ସବୁକଥା କହିଲା ।

ତା'ପର ଦିନ ସକାଳ ହେବା ମାତ୍ରେ ରାଜା ଶବରକୁ ସାଙ୍ଗରେ ନେଇ ନିଜର ପ୍ରିୟା ପାଖକୁ ଜମଦଗ୍ନିଙ୍କ ଅଶ୍ରମକୁ ଗଲେ ।

ଯାଉ ଯାଉ ସନ୍ଧ୍ୟା ହୋଇଗଲା । ରାଜା ଗୋଟିଏ ପୋଖରୀ କୂଳରେ ରାତି କଟାଇବା ପାଇଁ ଶିବିର ବସାଇଲେ । ରାଣୀଙ୍କ ସ୍ମୃତି ତାଙ୍କୁ ବିଚଳିତ କରୁଥିଲା ଓ ରାଣୀଙ୍କ ମୁହଁ ତାଙ୍କ ଆଖି ଆଗରେ ଭାସି ଯାଉଥିଲା । ସମୟ କଟାଇବାକୁ ସେ ସାଙ୍ଗରେ ଯାଉଥିବା ସଙ୍ଗୀତକ ନାମକ ଜଣକକୁ କହିଲେ– ମନ ଭଲ ଲାଗୁନାହିଁ । କିଛି ବଢ଼ିଆ କଥା ଶୁଣାଅ ।

ସଙ୍ଗୀତକ କହିଲେ– ମହାରାଜ, ମିଳନ ଓ ବିଚ୍ଛେଦ ତ ସଂସାରରେ ଲାଗିରହିଛି । ଆପଣ ରାଣୀଙ୍କ ପାଇଁ ମନ ଦୁଃଖ କରନ୍ତୁ ନାହିଁ । ଶିଘ୍ର ଆପଣଙ୍କ ସହିତ ତାଙ୍କର ମିଳନ ହେବ ! ଶ୍ରୀଦତ୍ତଙ୍କ ଜୀବନ ମଧ୍ୟ ଏଇଭଳି କଟିଥିଲା । ମୁଁ ଆପଣଙ୍କୁ ତାଙ୍କ କଥା ଶୁଣାଉଛି ।

# ଶ୍ରୀଦତ୍ତ କଥା

ମାଳବରେ ବ୍ରାହ୍ମଣ ଯଜ୍ଞସେନଙ୍କର ଦୁଇ ପୁଅ ଥିଲେ– କାଳନେମୀ ଓ ବିଗତଭୟ । କାଳନେମୀ ସବୁବେଳେ ତା'ର ପଡୋଶୀମାନଙ୍କ ସହିତ କଳି କରୁଥିଲା । ସେ ଲକ୍ଷ୍ମୀଙ୍କୁ ଆରାଧନା କଲା ଏଥିପାଇଁ । ଲକ୍ଷ୍ମୀ ପ୍ରସନ୍ନ ହେଲେ ତାକୁ ଏତେ ଧନ ସମ୍ପତ୍ତି ଦେବେ ଯେ, ପଡୋଶୀମାନଙ୍କ ଦେହରେ ଯେମିତି ନିଆଁ ଲାଗିଯିବ । ସତକୁ ସତ ଲକ୍ଷ୍ମୀ ପ୍ରସନ୍ନହୋଇ ତା' ସମ୍ମୁଖରେ ଉଭାହୋଇ କହିଲେ– ତମକୁ ଅପାର ଧନ ସମ୍ପତ୍ତି ଆଉ ପୃଥିବୀପତି ପୁଅ ମିଳିବ କିନ୍ତୁ ପଡୋଶୀଙ୍କ ପ୍ରତି ଈର୍ଷାପରାୟଣ ହୋଇ ମୋର ଆରାଧନା କରୁଛ, ତେଣୁ ଶେଷରେ ତମେ ଚୋରଙ୍କ ପରି ମରିବ ।

କାଳନେମୀ ବହୁତ ଧନୀ ହୋଇଗଲା ଓ ତା'ର ଶ୍ରୀଦତ୍ତ ନାମରେ ପୁଅଟିଏ ହେଲା । ବଡ଼ ହୁଅନ୍ତେ ଶ୍ରୀଦତ୍ତର ରାଜକୁମାର ବିକ୍ରମଶକ୍ତି ସହିତ ବନ୍ଧୁତା ହୋଇଗଲା । ବାହୁଶାଳୀ ଓ ବଜ୍ରମୁଷ୍ଟି ନାମକ ଦୁଇ ମଲ୍ଲଯୋଦ୍ଧାଙ୍କ ସହିତ ମଧ୍ୟ ଭଲ ବନ୍ଧୁତା ହୋଇଗଲା । ପ୍ରକୃତରେ ଶ୍ରୀଦତ୍ତ ନିଜେ ଏତେ ପରାକ୍ରମୀ ଓ ଗୁଣବାନ ଥିଲା ଯେ ଲୋକେ ତା ଆଡ଼କୁ ଆକର୍ଷିତ ହୋଇ ଚାଲି ଆସୁଥିଲେ ।

ଥରେ ଖେଳୁ ଖେଳୁ ଶ୍ରୀଦତ୍ତ ରାଜକୁମାରଙ୍କୁ ମଲ୍ଲଯୁଦ୍ଧରେ ଚିତ୍ କରିଦେଲା । ରାଜକୁମାର କ୍ରୁଦ୍ଧହୋଇ ତାକୁ ମାରିବା ପାଇଁ ଝପଟି ଆସିଲେ । କଥା ଯେପରି ଆଉ ନ ବଢ଼େ, ସେଥିପାଇଁ ବୁଦ୍ଧିମାନ ଶ୍ରୀଦତ୍ତ ତା'ର ବିଶ୍ୱାସୀ ଛଅଜଣ ବନ୍ଧୁଙ୍କ ସହିତ ସେଠାରୁ ଚୁପ୍‌ଚାପ୍ ଚାଲିଆସିଲେ । ସେମାନେ ଗଙ୍ଗା କୂଳରେ ପହଂଚିଲେ ଓ ଗଙ୍ଗାରେ ଭାସି ଯାଉଥିବା ସ୍ତ୍ରୀଲୋକଟିକୁ ଦେଖିଲେ । ଶ୍ରୀଦତ୍ତ ତା'ର ବନ୍ଧୁମାନଙ୍କୁ ସେଠାରେ ଅପେକ୍ଷା କରିବାକୁ କହି ସେଇ ସ୍ତ୍ରୀଲୋକକୁ ବଞ୍ଚାଇବା ପାଇଁ ନଈର ମଝିକୁ ଡେଇଁ ପଡ଼ିଲା । ଯେତେବେଳେ ସେ ବୁଡି ଯାଉଥିବା ସ୍ତ୍ରୀଲୋକଟି ପାଖରେ ପହଞ୍ଚିଲା, ତା



ହାତରେ କେବଳ ସ୍ତ୍ରୀଲୋକଟିର କେଶ ମୁଠାଏ ପଡିଲା । ସେ ସେଇ କେଶକୁ ଧରି ସ୍ତ୍ରୀଲୋକଟିକୁ ମଝି ଧାରରୁ ବାହାର କରିବାକୁ ଚାହିଁଲା ଓ ସେ ନିଜେ ତା'ସହିତ ପାଣି ତଳକୁ ବୁଡ଼ିଗଲା । ତଳକୁ ତଳକୁ ବୁଡି ଯାଉ ଯାଉ ତା'ର ଗୋଡ ମାଟିରେ ଲାଗିଗଲା ଓ ସେ ଦେଖିଲା ଯେ, ସେଠାରେ ପାଣି ନାହିଁ କି ସେଇ ସ୍ତ୍ରୀଲୋକଟି ମଧ୍ୟ ନାହିଁ । ତା ସମ୍ମୁଖରେ ଭଗବାନ ଶିବଙ୍କର ମନ୍ଦିର ଥିଲା । ମନ୍ଦିର ଆଗରେ ଗଛ ଆଉ ବଗିଚା ଥିଲା । ଶ୍ରୀଧର ଏଇ ଚମତ୍କାରିତାରେ ବଡ଼ ଆଚମ୍ବିତ ହେଲା । ସେ ଭକ୍ତିଭାବରେ ମନ୍ଦିରରେ ପ୍ରବେଶ କରି ଭଗବାନଙ୍କୁ ପ୍ରଣାମ କଲା ଓ ସେଇ ରାତିଟି ବଗିଚାରେ କଟାଇଲା ।

ସକାଳ ହେବାରୁ ସେ ନିଦରୁ ଉଠି ସେଇ ସ୍ତ୍ରୀଲୋକଟିକୁ ମନ୍ଦିରକୁ ପୂଜା କରିବାକୁ ତା' ସଖୀମାନଙ୍କ ସହ ଆସୁଥିବା ଦେଖିଲା । ସେ ସାକ୍ଷାତ ଲକ୍ଷ୍ମୀଙ୍କ ପରି ସୁନ୍ଦରୀ ଥିଲା । ସେ ଶିବଙ୍କ ପୂଜା ସାରି ତା' ଘର ଅଭିମୁଖେ ବାହାରିଗଲା । ଶ୍ରୀଦତ୍ତ ତା ପଛେ ପଛେ ଚାଲିଲା । ସେଇ ସ୍ତ୍ରୀଲୋକ ଶ୍ରୀଦତ୍ତକୁ ପଦୁଟିଏ ବି କିଛି କହିଲା ନାହିଁ ଓ ସଖୀ ଘେରିହୋଇଥିବା ପଲଙ୍କ ଉପରେ ଯାଇ ବସି ପଡିଲା । ଶ୍ରୀଦତ୍ତ ଆସି ତା ପାଖରେ ବସିଲା । ହଠାତ୍ ସ୍ତ୍ରୀଲୋକଟି କାନ୍ଦିବାକୁ ଲାଗିଲା ।

ଶ୍ରୀଦତ୍ତର ଛାତି ଧଡ଼ ଧଡ଼ ହେଲା । ସେ ତାକୁ ପଚାରିଲା– କୁହ, ତମର କ'ଣ ହେଇଚି ? ମୁଁ ତମର ଦୁଃଖ ଦୂର କରିବି ।

ସେଇ ସ୍ତ୍ରୀଲୋକଟି କମ୍ପିତ ସ୍ୱରରେ କହିଲା ଦୈତ୍ୟରାଜ ବଳିଙ୍କର ଆମେ ଏକହଜାର ଝିଅ । ସେମାନଙ୍କ ଭିତରେ ମୁଁ ସମସ୍ତଙ୍କଠୁଁ ବଡ଼ । ମୋ ନାଁ ବିଧୁତମା । ବିଷ୍ଣୁ ଆମ ବାପାଙ୍କୁ ବାନ୍ଧି ପାତାଳକୁ ପିଙ୍ଗି ମାରିଦେଲେ । ଆମେ ନିଜ ନଗରରୁ ନିର୍ବାସିତ ହୋଇଗଲୁ । ଆମକୁ ନଗରରେ ପ୍ରବେଶ କରିବାକୁ ରୋକିବା ପାଇଁ ବିଷ୍ଣୁ ନଗରର ପ୍ରବେଶ ପଥରେ ଗୋଟିଏ ସିଂହକୁ ଜଗାଇଛନ୍ତି । ସେ ସିଂହ ପ୍ରକୃତରେ ଜଣେ ଶାପଗ୍ରସ୍ତ ଯକ୍ଷ । ମଣିଷ ତାକୁ ମାରିଦେଲେ ସେ ମୁକ୍ତି ପାଇବ । ତମେ ତାକୁ ଶାପମୁକ୍ତ କରିପାରିବ, ସେଥିପାଇଁ ମୁଁ ତମକୁ ନେଇ ଆସିଛି ।

ଶ୍ରୀଦତ୍ତ ବଳିରାଜାଙ୍କ ଏକହଜାର ଝିଅମାନଙ୍କ ସହିତ ଦୈତ୍ୟଙ୍କ ନଗରରେ ପହଞ୍ଚି ପ୍ରବେଶ ପଥରେ ଜଗିଥିବା ସିଂହକୁ ମାରିଦେଲା । ସାଙ୍ଗେ ସାଙ୍ଗେ ସେ ଯକ୍ଷ ରୂପରେ ଉଭାହେଲା ଓ ଶ୍ରୀଦତ୍ତ ଉପରେ ସନ୍ତୁଷ୍ଟହୋଇ ତାକୁ ଗୋଟିଏ ସୁନ୍ଦର ଖଣ୍ଡାଦେଲା ।

ଦୈତ୍ୟ କନ୍ୟା ବିଧୁତମା ଓ ତା' ଛୋଟ ଭଉଣୀକୁ ସାଙ୍ଗରେ ନେଇ ଶ୍ରୀଦତ୍ତ ଅସୁର ନଗରୀରୁ ଚାଲିଆସିଲା । ବିଧୁତମା ଖୁସିହୋଇ ବିଷହରଣ ମୁଦି ତାକୁ ଦେଲା । ଧୀରେ ଧୀରେ ତା'ମନ ବିଧୁତମା ପ୍ରତି ଆକର୍ଷିତ ହେଲା ଓ ବିଧୁତମା ମଧ୍ୟ ତା'ପ୍ରତି ଅନୁରାଗିଣୀ ହେଲା ।

ଦିନେ ବିଧୁତମା ତାକୁ କହିଲା– ତମେ ସେଇ ଯକ୍ଷ ଦେଇଥିବା ଖଣ୍ଡାନେଇ ଆମ ନଗରର ସେଇ ପୋଖରୀରେ ବୁଡ଼ମାର । ସେ ପୋଖରୀରେ ଗୋଟିଏ ଅସୁର ଅଛି, ଯିଏ ବେଳେବେଳେ ବାହାରି ଆସି ନଗରର ଲୋକମାନଙ୍କ ଉପରେ ଆକ୍ରମଣ କରୁଛି । ତମେ ତାକୁ ମାରି ପାରିବ ।

ଶ୍ରୀଦତ୍ତ ବିଧୁତମା କଥାରେ ବିଶ୍ୱାସ କରି ଖଣ୍ଡା ନେଇ ସେଇ ପୋଖରୀ ଭିତରକୁ ଡେଇଁପଡିଲା । ବୁଡ଼ମାରି ସେ ଉପରକୁ ଉଠି ଦେଖେତ ସେ ଯେଉଁଠି ଡେଇଁ ପଡ଼ିଥିଲା ସେଇ ଗଙ୍ଗା କୂଳରେ ପହଞ୍ଚି ଯାଇଛି ।

ସେ କ୍ଷୁର୍ଣ୍ଣହୋଇ ଭାବିଲା– ବିଧୁତମା ଏମିତି କାହିଁକି କଲା ? ସେ ମୋ ସହିତ ଛଳନା କରିଛି ।

ତା'ପରେ ସେ ନିଜର ବନ୍ଧୁମାନଙ୍କୁ ଖୋଜିବାକୁ ବାହାରିଲା । କିଛି ଦୂର ଯିବାପରେ ତା'ର ଛଅ ବନ୍ଧୁଙ୍କ ମଧ୍ୟରୁ ନିଷ୍ଠୁରକ ନାମକ ଜଣେ ବନ୍ଧୁସହ ଭେଟହେଲା । ନିଷ୍ଠୁରକ କହିଲା ତାକୁ ଗଙ୍ଗାରେ ବୁଡ଼ିଯିବା ଦେଖି ସବୁ ବନ୍ଧୁମାନେ ଗଙ୍ଗାକୁ ଡେଇଁ ମରିବା ପାଇଁ ପ୍ରସ୍ତୁତ ହୋଇଗଲେ ଆଉ ଠିକ୍ ସେତିକି ବେଳେ ଆକାଶବାଣୀ ସେମାନଙ୍କୁ ଆତ୍ମହତ୍ୟା କରିବାରୁ ନିବୃତ୍ତ କଲା । ସେମାନେ ଶ୍ରୀଦତ୍ତର ବାପାଙ୍କୁ ତା'ର ଗଙ୍ଗାରେ ବୁଡ଼ିଯିବା ଖବର ଜଣାଇବା ପାଇଁ ନଗର ଆଡ଼କୁ ମୁହାଁଇଲେ । କିନ୍ତୁ ନଗର ଭିତରେ ପ୍ରବେଶ କରିବା ପୂର୍ବରୁ ସେମାନେ ଜାଣିଲେ ଯେ, ରାଜା ବଲ୍ଲଭଶକ୍ତି ମରିଯିବା ପରେ ବିକ୍ରମଶକ୍ତି ରାଜା ହେଲା ଓ ଶ୍ରୀଦତ୍ତକୁ ସେ ନିଜର ଶତ୍ରୁଭାବି ତାକୁ ଖୋଜିବା ଆରମ୍ଭ କରିଦେଇଥିଲା । ଶ୍ରୀଦତ୍ତର ବାପା କାଳନେମୀ ତାକୁ ଶ୍ରୀଦତ୍ତ କେଉଁଠି ଅଛି ସେ ଜାଣନ୍ତି ନାହିଁ କହିବାରୁ ବିକ୍ରମଶକ୍ତି ରାଗିଯାଇ ତାଙ୍କୁ ଫାଶି ଦେଇଦେଲା । ନିଷ୍ଠୁରକକୁ ଲୁଚି ରହିବାକୁ କହି ଅନ୍ୟ ପାଞ୍ଚ ବନ୍ଧୁ ଉଜ୍ଜୟିନୀ ଚାଲିଗଲେ । ଏଣେ ସ୍ୱାମୀଙ୍କ ଫାଶି ପାଇବା ଦୁଃଖରେ ଶ୍ରୀଦତ୍ତର ମା ମଧ୍ୟ ମରିଗଲେ ।

ଏଇଭଳି ନୂଆ ରାଜା ବିକ୍ରମଶକ୍ତିର ଅତ୍ୟାଚାର ଓ ବାପ-ମା'ଙ୍କ ଅକାଳ ମୃତ୍ୟୁ ଖବର ଶୁଣି ଶ୍ରୀଦତ୍ତକୁ ବହୁତ ଦୁଃଖ ଲାଗିଲା । ସେ ନିଷ୍ପତ୍ତି ନେଲା ଯେ ସୁଯୋଗ ପାଇଲା ମାତ୍ରେ ସେ ଦୁଷ୍ଟ ବିକ୍ରମଶକ୍ତି ଉପରେ ପ୍ରତିଶୋଧ ନେବ । ତା'ପରେ ସେ ନିଷ୍ଠୁରକକୁ ସାଙ୍ଗରେ ନେଇ ତା'ର ପାଞ୍ଚ ବନ୍ଧୁଙ୍କୁ ଖୋଜିବାକୁ ଉଜ୍ଜୟିନୀକୁ ଚାଲିଗଲା ।

ବାଟରେ ତା'ର ଜଣେ ସ୍ତ୍ରୀଲୋକ ସହିତ ଭେଟହେଲା । ସ୍ତ୍ରୀଲୋକଟି କହିଲା ଯେ, ସେ ଅସହାୟା ଓ ମାଳବ ଦେଶକୁ ଯାଉଛି । ଶ୍ରୀଦତ୍ତ ଦୟାକରି ତାକୁ ତା' ସାଙ୍ଗରେ ନେଲା ।

ଦିନେ ବଡ଼ି ସକାଳୁ ଶ୍ରୀଦତ୍ତ ନିଦରୁ ଉଠି ଦେଖିଲା ଯେ, ସେଇ ସ୍ତ୍ରୀଲୋକଟି ନିଷ୍ଠୁରକକୁ ମାରି ତା' ମାଂସ ଖାଉଛି । ଶ୍ରୀଦତ୍ତ ଚୁପ୍‌ଚାପ୍ ଉଠିପଡ଼ି ନିଜର ଖଣ୍ଡା ବାହାରକରି ସେଇ ସ୍ତ୍ରୀଲୋକଟି ଉପରକୁ କୁଦିପଡ଼ିଲା । ସେ ତା'ର ବେକ କାଟିବାକୁ କେଶକୁ ଧରିବା ମାତ୍ରେ ସ୍ତ୍ରୀଲୋକଟି ଜଣେ ଅତ୍ୟନ୍ତ ସୁନ୍ଦରୀ ରୂପରେ ତା ସମ୍ମୁଖରେ ଉଭାହୋଇ କହିଲା— ମହାଭାଗ, ମୋତେ ମାରନାହିଁ । ମୁଁ ରାକ୍ଷସୀ ନୁହେଁ, ଅପ୍ସରା । କୌଶିକ ମୁନି କୁବେର ପଦପାଇଁ ତପସ୍ୟା କରୁଥିଲାବେଳେ ମୋତେ କୁବେର ତାଙ୍କ ତପସ୍ୟା ଭଙ୍ଗକରିବା ପାଇଁ ପଠାଇଥିଲେ । ମୋର ସୌନ୍ଦର୍ଯ୍ୟରେ ତାଙ୍କୁ ମୋହ କରି ନ ପାରିବାରୁ ତାଙ୍କୁ ଡରାଇବାକୁ ବିକଟାଳ ରୂପ ଧାରଣକଲି । କୌଶିକ ମୁନୀ ମୋତେ ଶାପଦେଲେ— ଯା, ତୁ ରାକ୍ଷସୀ ହୋଇ ଯା ଆଉ ମଣିଷକୁ ଖା । ମୁଁ ବହୁତ ଦିନ ହେଲା ନଗରର ଲୋକମାନଙ୍କୁ ଖାଇ ବଞ୍ଚୁଛି । ସେଇ ଋଷି ତମେ ମୋ କେଶ ଧରିଲେ ମୁଁ ମୁକ୍ତି ପାଇବି ବୋଲି କହିଥିଲେ । ଏବେ ମୁଁ ମୁକ୍ତି ପାଇଲି । ମୁଁ ତମ ଉପରେ ସନ୍ତୁଷ୍ଟ । ତମେ ବର ମାଗ ।

ଶ୍ରୀଦତ୍ତ କହିଲା— ଆଉ କି ବର ମାଗିବି ! ମୋର ଏଇ ବନ୍ଧୁ, ଯାହାକୁ ତୁମେ ଖାଇ ଦେଇଛ, ସେ ବଞ୍ଚିଉଠୁ ଏତିକି କରିଦିଅ ।

ସେଇ ଅପ୍ସରା 'ତଥାସ୍ତୁ' କହି ଅନ୍ତର୍ଦ୍ଧାନ ହୋଇଗଲେ ଓ ନିଷ୍ଠୁରକ ଜୀବନ ପାଇ ଉଠିବସିଲା ।

ଉଜ୍ଜୟିନୀରେ ପହଞ୍ଚି ଶ୍ରୀଦତ୍ତ ତା'ର ପାଞ୍ଚ ବନ୍ଧୁଙ୍କୁ ଭେଟି ବଡ଼ ଖୁସିହେଲା । ସେ ତା'ବନ୍ଧୁ ବାହୁଶାଳୀ ଘରେ ରହୁଥିଲା । ଦିନେ ବସନ୍ତ ଉତ୍ସବବେଳେ ସେ ନିଜ ବନ୍ଧୁମାନଙ୍କ ସହିତ ମେଳା ଦେଖିବାକୁ ନଗରର ଉଦ୍ୟାନକୁ ଗଲା । ସେଠାରେ ବିମ୍ବକୀ ନାମକ ରାଜାଙ୍କ ଝିଅକୁ ଦେଖିଲା । ଝିଅଟି ଅତ୍ୟନ୍ତ ସୁନ୍ଦରୀ, ସାକ୍ଷାତ ରତିଙ୍କ ସମାନ ଥିଲା । ଶ୍ରୀଦତ୍ତ ତା'ପାଇଁ ବଡ଼ ବ୍ୟାକୁଳ ହେଲା ।



ବାହୁଶାଳୀ ତା'ର ମନର ଅବସ୍ଥାକୁ ଜାଣିପାରି କହିଲା— ଆସ, ଯେଉଁଠି ରାଜକୁମାରୀ ଯାଇଛି, ସେଇଠିକି ଯିବା । ତମକୁ ତା' ସହିତ ଭେଟ କରେଇ ଦେବି ।

ସେମାନେ ରାଜକୁମାରୀ ପାଖକୁ ଯାଉଥିଲାବେଳେ କୋଳାହଳ ଶୁଣାଗଲା : ବଞ୍ଚାଅ । ରାଜକୁମାରୀଙ୍କୁ ସାପ କାମୁଡ଼ିଛି ।

ବାହୁଶାଳୀ ରାଜକୁମାରୀର ଦାସୀକୁ କହିଲା— ମୋର ଏଇ ବନ୍ଧୁ ପାଖରେ ସାପ ବିଷ ଦୂର କରିପାରିବା ମୁଦି ଅଛି, ଆଉ ମୋର ବନ୍ଧୁ ବିଷ ଦୂରକରିବା ମନ୍ତ୍ର ବି ଜାଣେ ।

ଏ କଥା ଶୁଣି ଦାସୀ ଶ୍ରୀଦତ୍ତର ପାଦତଳେ ପଡ଼ିଗଲା ଓ ଆଦର ସହକାରେ ତାକୁ ରାଜକୁମାରୀ ପାଖକୁ ନେଇଗଲା ।

ଶ୍ରୀଦତ୍ତ ଚିକିତ୍ସାରେ ରାଜକୁମାରୀ ଜୀବନ ପାଇ ଉଠିବସିଲା । ଏଇ ସମୟରେ ରାଜା ବିମ୍ବକୀ ମଧ୍ୟ ଆସି ପହଞ୍ଚିଯାଇଥିଲେ । ଏହା ଭିତରେ ଶ୍ରୀଦତ୍ତ ତା'ର ସୁନ୍ଦର ମୁଦିଟି ରାଜକୁମାରୀର ଆଙ୍ଗୁଠିରେ ପିନ୍ଧାଇଦେଇ ଚାଲି ଆସିଥିଲା ।

କିଛିଦିନ ବିତିଗଲା । ରାଜକୁମାରୀକୁ ନପାଇ ଶ୍ରୀଦତ୍ତର ଅବସ୍ଥା ଖରାପ ହୋଇଗଲା । ଦିନେ ମୁଦି ଫେରାଇବା ବାହାନାରେ ରାଜକୁମାରୀର ପ୍ରିୟ ସଖୀ ଭାବନିକା ତାକୁ ଭେଟିବାକୁ ଆସିଲା । ଭାବନିକା ସାଙ୍ଗରେ ମିଶି ଶ୍ରୀଦତ୍ତ ଓ ତା'ର ବନ୍ଧୁ ରାଜକୁମାରୀକୁ ନେଇ ଆସିବାର ଯୋଜନା କଲେ । ତା'ପରଦିନ ତିନିଜଣ ବନ୍ଧୁଙ୍କ ସହିତ ବ୍ୟବସାୟ କରିବାକୁ ମଥୁରା ଯିବା ବାହାନାକରି ବାହୁଶାଳୀ ଚାଲିଗଲା ଓ ବାଟରେ ରାଜକୁମାରୀ ପାଇଁ ଗୋଟିଏ ସବାରୀ ବନ୍ଦୋବସ୍ତ କଲା । ଏଣେ ଶ୍ରୀଦତ୍ତ ଗୋଟିଏ ପାଗଳୀକୁ ରାଜକୁମାରୀ ମହଲରେ ଢୁକେଇ ଦେଲା, ଆଉ ଭାବନିକା ଦୀପ ଜଳାଇବା ସମୟରେ ଜାଣି ଜାଣି ମହଲରେ ନିଆଁ ଲଗେଇ ଦେଲା ।

ପାଗଳୀ ପୋଡ଼ିଯିବାରୁ ଲୋକମାନେ ରାଜକୁମାରୀ ଓ ତା'ର ସଖୀ ଭାବନିକା ଜଳିଗଲେ ବୋଲି ଧରିନେଲେ । ରାଜକୁମାରୀ ଭାବନିକା ସହିତ ପଳାଇଯାଇ ବାହୁଶାଳୀର ଶିବିରରେ ପହଞ୍ଚିଗଲେ । ଦ୍ୱିତୀୟ ଦିନ ରାତିରେ ଶ୍ରୀଦତ୍ତ ତା'ର ଖଣ୍ଡାଧରି ସେମାନଙ୍କୁ ଭେଟିବାକୁ ଗଲା । ସକାଳେ ସେ ବିନ୍ଧ୍ୟାଞ୍ଚଳର ଘୋର ଜଙ୍ଗଲରେ ପହଞ୍ଚିଲା । ସେଠାରେ ସେ ଆହତ ଓ ବିବ୍ରତ ଅବସ୍ଥାରେ ଥିବା ତା'ର ବନ୍ଧୁ ଓ ଅସୁସ୍ଥା ଭାବନିକାକୁ ଭେଟିଲା । ସେମାନେ କହିଲେ ଯେ, ଡାକୁମାନେ ସେମାନଙ୍କୁ ଆକ୍ରମଣ କରି ଲୁଣ୍ଠନ କଲେ ଓ ରାଜକୁମାରୀକୁ ସେମାନଙ୍କ ସହିତ ଉଠାଇ ନେଲେ ।

ଶ୍ରୀଦତ୍ତ ସଙ୍ଗେ ସଙ୍ଗେ ଘୋଡ଼ା ଚଢ଼ି ଡାକୁମାନଙ୍କ ପିଛାକଲା । କିଛି ଦୂର ଗଲାପରେ ସେ ଘୋଡ଼ାସବାର ଡାକୁମାନଙ୍କ ପାଖରେ ପହଞ୍ଚିଗଲା । ଡାକୁ ସର୍ଦ୍ଦାର ଘୋଡ଼ା ଉପରେ ରାଜକୁମାରୀକୁ ବସେଇ ନେଉଥିଲା । ଶ୍ରୀଦତ୍ତ ରାଜକୁମାରୀକୁ ସାବଧାନରେ ବସିରହିବାକୁ କହି ଡାକୁ ସର୍ଦ୍ଦାର ଗୋଡ଼ଧରି ଜୋରରେ ଝିଙ୍କିଦେଲା ଓ ମାଟି ଉପରକୁ ଡାକୁ ସର୍ଦ୍ଦାର ଗଡ଼ିପଡ଼ିଲା ମାତ୍ରେ ସେ ତାକୁ ଉଠାଇନେଇ ପଥରରେ କଚାଡ଼ି କଚାଡ଼ି ମାରିଦେଲା । ସର୍ଦ୍ଦାରର ଏଇ ଅବସ୍ଥା ଓ ଶ୍ରୀଦତ୍ତର ସାହସ ଦେଖି ଅନ୍ୟ ଡାକୁମାନେ ଭୟରେ ଯେ ଯୁଆଡ଼େ ପାରିଲେ ପଳାଇଲେ ।

ଶ୍ରୀଦତ୍ତ ମୃଗାବତୀକୁ ସାଙ୍ଗରେ ନେଇ ଫେରିଲା । ସଞ୍ଜ ହୋଇଯାଇଥିଲା । ଦୁହେଁ କ୍ଳାନ୍ତ ଶ୍ରାନ୍ତ ହୋଇଯାଇଥିଲେ ଓ ଦୁହିଁଙ୍କୁ ଭାରି ଶୋଷ ଲାଗୁଥିଲା । ପାଣି ଖୋଜିବା ପାଇଁ ଶ୍ରୀଦତ୍ତ ତା ଖଣ୍ଡାକୁ ଗୋଟିଏ ଗଛରେ ଡେରାଦେଇ ଗଛ ଉପରକୁ ଚଢ଼ିଗଲା । ଏଥର ପାଣିଥିବା ଜାଗା ତାକୁ ଦେଖାଗଲା । ମୃଗାବତୀକୁ ସେଇଠି ରହିବାକୁ କହି ସେ ପାଣି ଆଣିବାକୁ ଚାଲିଗଲା । ହେଲେ ଫେରି ଆସି ସେ ମୃଗାବତୀକୁ କେଉଁଠାରେ ଦେଖିବାକୁ ପାଇଲା ନାହିଁ । ରାତିସାରା ଶ୍ରୀଦତ୍ତ ତା' ନାଁଧରି

ଜୋରରେ ଡାକିବାକୁ ଲାଗିଲା । ସକାଳ ହେବା ମାତ୍ରେ ସେ ମୃଗାବତୀକୁ ଖୋଜିବା ପାଇଁ ଗୋଟିଏ ଗଛ ମୂଳେ ତା'ର ଖଣ୍ଡାକୁ ରଖି ଗଛ ଉପରକୁ ଚଢ଼ିଗଲା । ଏତିକି ବେଳେ ଜଣେ ଶବର ରାଜା ସେଠାରେ ପହଞ୍ଚିଲା । ତାକୁ ଦେଖି ଶ୍ରୀଦତ୍ତ ଓହ୍ଲାଇ ବ୍ୟାକୁଳହୋଇ ରାଜକୁମାରୀର ଠିକଣା ପଚାରିଲା ।

ଶବର ରାଜା ତା' ଗାଁ ଆଡ଼କୁ ହାତ ଦେଖାଇ ରାଜକୁମାରୀ ସେଇ ଗାଁ ଆଡ଼କୁ ଯାଇଛନ୍ତି ବୋଲି କହିଲା । ସେ ଶ୍ରୀଦତ୍ତକୁ 'ତମେ ଗାଆଁକୁ ଚାଲ, ମୁଁ ତମ ଖଣ୍ଡା ନେଇ ତମ ପଛେ ପଛେ ଯାଉଛି ।' କହି ଗଛ ମୂଳରୁ ଖଣ୍ଡାଟି ଉଠାଇ ନେଲା ।

ଗାଁରେ ପହଞ୍ଚିଲା ମାତ୍ରେ ଶବର ରାଜାର ସେବକମାନେ ତାକୁ ସ୍ୱାଗତ କଲେ ଓ କହିଲେ— ରାଜକୁମାରୀ ଏଇଠି କୋଉଠି ଥିବେ । ତମେ ହାଲିଆ ହୋଇଯାଇଛ ବିଶ୍ରାମ କର ।

ଶ୍ରୀଦତ୍ତ ସେମାନଙ୍କ କଥା ମାନି ଶୋଇବାକୁ ଗଲା ଓ କିଛି ସମୟ ପରେ ନିଘୋଡ଼ ନିଦରେ ଶୋଇ ପଡ଼ିଲା । ନିଦରୁ ଉଠି ସେ ତା'ର ଗୋଡ଼ ହାତ ଜଞ୍ଜିରରେ ବନ୍ଧା ହୋଇଥିବା ଦେଖିଲା ।

କିଛି ଦିନ ବିତିଗଲା । ଶ୍ରୀଦତ୍ତକୁ ଭଲ ଖାଇବାକୁ ମିଳୁଥିଲା କିନ୍ତୁ ତା'ର ହାତ ପାଦ ବନ୍ଧାହୋଇ ରହୁଥିଲା । ଦିନେ ରାଜାର ଚାକରାଣୀ ତାକୁ ଏକୁଟିଆ ପାଇ କହିଲା— ତମେ ଆମ ରାଜାର ଜାଲରେ କେମିତି ପଡ଼ିଗଲ ? ସେ ତମକୁ ଦେବୀଙ୍କ ପାଖରେ ବଳୀ ଚଢ଼େଇବ । କିନ୍ତୁ ମୁଁ ତମକୁ ଖଲାସ ହେବାର ଗୋଟାଏ ବାଟ ବତେଇବି । ମୋର ମାଲିକାଣୀ ଶବର ରାଜକୁମାରୀ ତମ ପ୍ରେମରେ ପଡ଼ିଯାଇଛନ୍ତି । ତା ନାଁ ସୁନ୍ଦରୀ । ମୁଁ ରାତିରେ ତାକୁ ତମ ପାଖକୁ ନେଇ ଆସିବି । ତମେ ତାକୁ ସ୍ତ୍ରୀ ଭାବରେ ଗ୍ରହଣ କରିବ ।

ସେଇ ସମୟରେ ଶବର ରାଜା କୌଣସି କାମରେ ବାହାରକୁ ଚାଲିଗଲା ଓ ସୁନ୍ଦରୀ ସେଇ ରାତିଠୁଁ ପ୍ରତିଦିନ ଶ୍ରୀଦତ୍ତକୁ ଭେଟିବାକୁ ଆସିଲା । କିଛିଦିନ ପରେ ସେ ଗର୍ଭବତୀ ହୋଇଗଲା । ତା' ମା' ପାଖରେ ଶ୍ରୀଦତ୍ତ ଓ ତା' ପ୍ରେମକଥା ଲୁଚି ରହିଲା ନାହିଁ । ସେ ଶ୍ରୀଦତ୍ତକୁ ନିଜ ଜ୍ୱାଇଁଭଳି ଦେଖିବାକୁ ଲାଗିଲା ଓ ଦିନେ ସ୍ନେହରେ କହିଲା— ପୁଅ, ଏଇ ଝିଅର ବାପାଙ୍କ ନାମ ଶ୍ରୀଚଣ୍ଡ ଓ ତାଙ୍କ ସ୍ୱଭାବ ବି ସେମିତି । ତେଣୁ ତମେ ଏଠୁଁ ପଳେଇଯାଅ । କିନ୍ତୁ ମୋ ଝିଅକୁ ଭୁଲିଯିବନି ଯେମିତି ।

ଶ୍ରୀଦତ୍ତ ସେଇ ଶବର ଗାଁରୁ ଖସି ପଳାଇଲା । ବାଟରେ ସେ ଜଣେ ବାଟୋଇକୁ ଭେଟିଲା ଓ ସେ ରାଜକୁମାରୀକୁ ଦେଖିଛି କି ବୋଲି ପଚାରିଲା । ବାଟୋଇ କହିଲା— ହଁ, ତମ ସ୍ତ୍ରୀକୁ ମୁଁ କାନ୍ଦି କାନ୍ଦି ଯିବା ଅବସ୍ଥାରେ ଭେଟିଥିଲି । ଆମେ ତାକୁ ଆମ ଗାଁକୁ ନେଇଥିଲୁ । କିନ୍ତୁ ଗାଁର ଗୋଟିଏ ବଦ୍‌ମାସ ଲୋକ ଡରରେ ଆମେ ମଥୁରା ପାଖ ନାଗସ୍ଥଳ ଗାଁରେ ତାକୁ ପହଞ୍ଚାଇ ଦେଲୁ । ସେ ସେଠାରେ ବିଶ୍ୱଦତ୍ତ ନାମକ ଜଣେ ବୃଦ୍ଧ ବ୍ରାହ୍ମଣ ଘରେ ପରିଚାରିକା ଭାବରେ ଅଛି ।

ବାଟୋଇ କଥା ଶୁଣି ଶ୍ରୀଦତ୍ତ ସଙ୍ଗେ ସଙ୍ଗେ ନାଗସ୍ଥଳ ଯାଇ ବିଶ୍ୱଦତ୍ତ ଘରେ ପହଞ୍ଚିଲା । ବିଶ୍ୱଦତ୍ତ କହିଲା ଯେ, ସେ ମୃଗାବତୀକୁ ସୁରସେନ ରାଜାଙ୍କ ପାଖକୁ ପଠାଇ ଦେଇଛି ।

ରାତିଟି ବିଶ୍ୱଦତ୍ତ ଘରେ କଟାଇ ସକାଳୁ ସକାଳୁ ଶ୍ରୀଦତ୍ତ ପୁଣି ବାହାରିପଡ଼ିଲା । ତା' ଲୁଗାପଟା ବହୁତ ମଇଳା ହୋଇଯାଇଥିଲା ଓ ସେ ଏତେଦିନ ଧରି ଚାଲି ଚାଲି ଥକି ଯାଇଥିଲା । ମଥୁରାରେ ପହଞ୍ଚିବା ପୂର୍ବରୁ ସେ ଗୋଟିଏ ପୋଖରୀ ଦେଖିଲା ଓ ପୋଖରୀରେ ଗାଧୋଇଲା । ଗାଧୋଇସାରି ସେ ପୋଖରୀ କୂଳର ଗୋଟେ ଗଛ ଖୋଲରେ ଲୁଚା ହୋଇଥିବା ଲୁଗା ଗଣ୍ଠିଲିଟିଏ ଦେଖିଲା । ଲୁଗା ଗଣ୍ଠିଲି ଭିତରେ ବହୁମୂଲ୍ୟ ହାର ଲୁଚା ହୋଇଥିଲା । ଶ୍ରୀଦତ୍ତ ହାରକୁ ଦେଖି ନଥିଲା । ସେ ଲୁଗା ଗଣ୍ଠିଲିଟି ଉଠାଇ ନେଇ ଚାଲିଲା ।



ମଥୁରାରେ ପହଞ୍ଚିବା ମାତ୍ରେ ରାଜାଙ୍କ ସୈନ୍ୟମାନେ ତାକୁ ଲୁଗାଗଣ୍ଠିଲି ସହିତ ଧରିନେଲେ ଓ ନଗରପାଳଙ୍କ ସମ୍ମୁଖରେ ହାଜର କରାଇଲେ । ନଗରପାଳ ଶ୍ରୀଦତ୍ତକୁ ଫାଶି ଦେବାକୁ ହୁକୁମ ଦେଲେ ।

ଶ୍ରୀଦତ୍ତ ଫାଶି ଘୋଷଣା ଢେଙ୍କୁରା ବାଲା ଢେଙ୍କୁରା ବଜାଇ ଚାଲିଥିଲା ଓ ତା' ସହିତ ଶ୍ରୀଦତ୍ତ ମଧ ଥିଲା । ମନ୍ତ୍ରୀଙ୍କ ଝରକାରୁ ମୃଗାବତୀ ସେଇ ଦୃଶ୍ୟ ଦେଖିଲା ଓ ଚିତ୍କାର କରି କହିଲା— ମୋ ସ୍ୱାମୀଙ୍କୁ ବଞ୍ଚାଅ ।

ମନ୍ତ୍ରୀ ଘାତକମାନଙ୍କୁ ଅଟକାଇଲେ ଓ ରାଜାଙ୍କ ଆଦେଶ ନେଇ ଶ୍ରୀଦତ୍ତକୁ ଖଲାସକରି ତାଙ୍କ ଘରକୁ ନେଇ ଆସିଲେ ।

ଶ୍ରୀଦତ୍ତ ମନ୍ତ୍ରୀଙ୍କୁ ଚିହ୍ନିପାରିଲା, ସେ ଥିଲା ତା'ର କକା ବିଗତଭୟ । ସେ କେତେ ବର୍ଷ ତଳେ ମାଳବ ଦେଶ ଛାଡି ବିଦେଶ ଚାଲିଯାଇଥିଲେ । ଶ୍ରୀଦତ୍ତ ତାଙ୍କୁ ନିଜ କଥାସବୁ କହିଲା ।

ଏଥର ଶ୍ରୀଦତ୍ତ ତା' କକାଙ୍କ ଘରେ ସୁଖରେ ରହିଲା ଓ ମୃଗାବତୀକୁ ବିବାହ କଲା । କିନ୍ତୁ ତା'ର ବନ୍ଧୁମାନଙ୍କ ସ୍ମୃତି ଓ ତାକୁ ଅପମାନ ଦେଇଥିବା ବିକ୍ରମଶକ୍ତି ଉପରେ ପ୍ରତିଶୋଧ ନେବାର ଇଚ୍ଛା ତାକୁ ସବୁବେଳେ ବିଚଳିତ କରୁଥିଲା । ସେ ଉଜ୍ଜୟିନୀକୁ ଆକ୍ରମଣ କରିବା ଠିକ୍‌କରି ତା' କକାଙ୍କ ସହିତ ମଥୁରାର ସୈନ୍ୟଙ୍କୁ ନେଇ ବାହାରିଲା ।

ବାଟରେ ପୁଣି ସେମାନେ ଡାକୁମାନଙ୍କ ହାବୁଡ଼ରେ ପଡ଼ିଲେ । ଡାକୁମାନେ ଶ୍ରୀଦତ୍ତ ସହିତ ଥିବା ସୈନ୍ୟମାନଙ୍କୁ ତଡ଼ିଦେଇ ଶ୍ରୀଦତ୍ତକୁ ବାନ୍ଧି ନେଇଗଲେ ।

ଶବରମାନଙ୍କ ଗାଁରେ ପହଞ୍ଚି ସେମାନେ ତାକୁ ଚଣ୍ଡୀ ମନ୍ଦିରକୁ ନେଇଗଲେ ଓ ତାକୁ ବଳିଦେବାକୁ ପ୍ରସ୍ତୁତ କଲେ । ଶବର ରାଜାର ଝିଅ ସୁନ୍ଦରୀ ତା'ର ଦୁଧଖିଆ ପୁଅଟିକୁ ସାଙ୍ଗରେ ଧରି ବଳି ଦେଖିବାକୁ ଆସି ପହଞ୍ଚିଲା । ତା' ବାପା ମରିଯିବାପରେ ସେ ଗାଁର ମାଲିକାଣୀ ହୋଇଯାଇଥିଲା । ସେ ଶ୍ରୀଦତ୍ତକୁ ଦେଖିବା ମାତ୍ରେ ଚିହ୍ନିପାରିଲା ଓ ତାକୁ ଛାଡ଼ିଦେବାକୁ ଆଦେଶ ଦେଲା । ଶ୍ରୀଦତ୍ତକୁ ସେ ସାଙ୍ଗରେ ନେଇ ତା ଘରକୁ ଗଲା ।

ଏଥର ଶ୍ରୀଦତ୍ତକୁ ସୁନ୍ଦରୀ ପାଖରେ ରଖାହୋଇଥିବା ତା' ସୁନ୍ଦର ଖଣ୍ଡା ମିଳିଗଲା ଓ ତାକୁ ଶବର ଗାଁରେ ରାଜା କରିଦିଆଗଲା । ସେ ଶବର ସୈନ୍ୟମାନଙ୍କୁ ସାଙ୍ଗରେ ନେଲା ଓ ରାଜା ବିମ୍ବକୀଙ୍କୁ ଖବର ଦେଇ ତାଙ୍କ ସେନାଙ୍କୁ ବି ଅଣାଇଲା । ଏଇ ସେନାଙ୍କୁ ନେଇ ସେ ନିଜ ବାପାଙ୍କ ହତ୍ୟାକାରୀ ବିକ୍ରମଶକ୍ତି ଉପରେ ଆକ୍ରମଣ କଲା ଓ ତାକୁ ମାରି ସାରା ପୃଥିବୀରେ ନିଷ୍କଣ୍ଟକ ରାଜ୍ୟ ଶାସନ କଲା ।

ଶ୍ରୀଦତ୍ତର ଏଇ କଥା ଶୁଣାଇ ସୁସଂଗତ ମହାରାଜ ସହସ୍ରାନିକଙ୍କୁ କହିଲା— ହେ ରାଜା, ଧୈର୍ଯ୍ୟଧରି ପୌରୁଷମତେ କାର୍ଯ୍ୟ କରିବା ଲୋକ ଏହିଭଳି ଶେଷରେ ନିଜ ଇଚ୍ଛା ପୂରଣ କରିଥାଏ ।

ସୁସଙ୍ଗତ ସହସ୍ରାନିକଙ୍କୁ କଥା ଶୁଣାଉ ଶୁଣାଉ ରାତି ପାହିଯାଇଥିଲା ଓ ସହସ୍ରାନିକ ରାଣୀଙ୍କୁ ଭେଟିବାକୁ ପୁଣି ବାହାରି ପଡ଼ିଲେ ।

ଜମଦଗ୍ନିଙ୍କ ଆଶ୍ରମରେ ପହଞ୍ଚି ସହସ୍ରାନିକ ନିଜ ପୁଅ ଉଦୟନଙ୍କୁ ଦେଖିଲେ । ଉଦୟନ କୈଶୋର ଅତିକ୍ରମକରି ଯୌବନରେ ପାଦ ଦେବାକୁ ଯାଉଥିଲେ । କେତେ ବର୍ଷ ପରେ ସହସ୍ରାନିକ ତାଙ୍କ ରାଣୀଙ୍କୁ ପାଇଲେ ଓ ତାଙ୍କୁ ନେଇ ରାଜଧାନୀ ଫେରିଆସିଲେ । ତା'ପରେ ସେ ଉଦୟନଙ୍କୁ ଯୁବରାଜ କଲେ ଓ ତାଙ୍କ ମନ୍ତ୍ରୀଙ୍କ ପୁଅ ଯୌଗନ୍ଧରାୟଣ ଓ ରୁମଣ୍ୱାନଙ୍କୁ ଉଦୟନଙ୍କ ମନ୍ତ୍ରୀଭାବେ ନିଯୁକ୍ତି ଦେଲେ ।

କିଛି ବର୍ଷ ପରେ ବୈରାଗ୍ୟ ଅନୁଭବ କରି ମହାରାଜ ସହସ୍ରାନିକ ଉଦୟନଙ୍କୁ ରାଜ୍ୟଭାର ଦେଇ ନିଜ ରାଣୀ ଓ ମନ୍ତ୍ରୀମାନଙ୍କ ସହିତ ତପସ୍ୟା କରିବାକୁ ହିମାଳୟ ଅଭିମୁଖେ ଚାଲିଲେ ।

ରାଜା ଉଦୟନଙ୍କର ତାଙ୍କ ମନ୍ତ୍ରୀ ମୌଗଧରାୟଣ ଓ ରୁମଣ୍ୱାନଙ୍କ ଉପରେ ପୂରା ଭରସା ଥିଲା । ତେଣୁ ସେ ରାଜକାର୍ଯ୍ୟ ସେମାନଙ୍କ ଉପରେ ଛାଡ଼ିଦେଇ ବୀଣା ବଜାଇବାରେ ବ୍ୟସ୍ତ ରହୁଥିଲେ । ବୀଣାରେ ସେ ଗୋଟିଏ ରାଗ ଏପରି ବଜାଉଥିଲେ, ଯେଉଁଥିରେ ମୁଗ୍ଧହୋଇ ଜଙ୍ଗଲରୁ ହାତୀମାନେ ଚାଲିଆସୁଥିଲେ । ଜଙ୍ଗଲକୁ ଯାଇ ବୀଣାର ସ୍ୱରରେ ହାତୀମାନଙ୍କୁ ଆକର୍ଷିତ କରି ଟାଣିଆଣି ପୂର୍ବରୁ ଖୋଳା ଯାଇଥିବା ଖନ୍ଦାରେ ପକାଇ ସେମାନଙ୍କୁ ଧରିବା ତାଙ୍କର ପ୍ରିୟ ମନୋରଞ୍ଜନ ଥିଲା ।

ତାଙ୍କର ବିବାହ ହୋଇ ନଥିଲା । ସେ ଠିକ୍ କରିଥିଲେ ଯେ, ସେ ବାହା ହେବେତ ଉଜ୍ଜୟିନୀର ରାଜକୁମାରୀ ବାସବଦତ୍ତାଙ୍କୁ ହିଁ ହେବେ । ବାସବଦତ୍ତାଙ୍କ ରୂପ ଓ ଗୁଣ ଭାଟମାନଙ୍କ ମୁହଁରୁ ଶୁଣି ସେ ବାସବଦତ୍ତାଙ୍କ ପ୍ରତି ମୁଗ୍ଧ ହୋଇଥିଲେ । ଉଜ୍ଜୟିନୀ ରାଜା ମହାସେନ ଭାବୁଥିଲେ ଯେ, ରୂପ ଓ ଗୁଣରେ ଅତୁଳନୀୟା ମୋର ଝିଅ ପାଇଁ ଉଦୟନଙ୍କୁ ଛାଡ଼ିଦେଲେ ଅନ୍ୟ କେହି ଯୋଗ୍ୟ ପାତ୍ର ନାହିଁ । କିନ୍ତୁ ବତ୍ସ ଦେଶ ଓ ଅବନ୍ତୀ ଦେଶ ମଧ୍ୟରେ ବଂଶାନୁକ୍ରମେ ଶତ୍ରୁତା ଥିଲା, ଏଥିପାଇଁ ମହାସେନ ଉଦୟନଙ୍କ ପାଖକୁ ତାଙ୍କ ଝିଅର ବିବାହ ପାଇଁ ପ୍ରସ୍ତାବ ପଠାଇ ପାରୁ ନଥିଲେ କି ଉଦୟନ ଏହି ବିଷୟରେ କ'ଣ କରିବେ କିଛି ଭାବିପାରୁ ନଥିଲେ ।

ଉଦୟନଙ୍କ ସହିତ ସମ୍ପର୍କ ସ୍ଥାପନ କରିବାକୁ ମହାସେନ ଉପାୟଟିଏ ପାଞ୍ଚିଲେ । ବାସବଦତ୍ତାଙ୍କର ସଙ୍ଗୀତ ପ୍ରତି ବଡ଼ ରୁଚିଥିଲା, ଆଉ ଉଦୟନ ବୀଣା ବଜାଇବାରେ ମହାନ କଳାକାର ଥିଲେ । ତେଣୁ ମହାସେନ ଉଦୟନଙ୍କ ପାଖକୁ ଦୂତ ପଠାଇଲେ– ମୋ ଝିଅ ତମଠୁଁ ବୀଣା ବଜାଇବା ଶିଖିବାକୁ ଚାହୁଁଛି, ତେଣୁ ତମେ ଏଠାକୁ ଆସି ତାକୁ ଶିଖାଅ ।

ମହାସେନଙ୍କ ଦୂତଠାରୁ ସନ୍ଦେଶ ଶୁଣି ଉଦୟନ ତାଙ୍କର ମନ୍ତ୍ରୀ ମୌଗନ୍ଧରାୟଣଙ୍କ ସହ ପରାମର୍ଶ କଲେ । ମୌଗନ୍ଧରାୟଣ କହିଲେ– ରାଜା, ଆପଣ ଯେମିତି ସଙ୍ଗୀତର ଯାଦୁ ମନ୍ତ୍ରରେ ଜଙ୍ଗଲର ହାତୀମାନଙ୍କୁ ଖନ୍ଦାରେ ପକାଇ ଧରୁଛନ୍ତି, ସେହିପରି ମହାସେନ ଆପଣଙ୍କୁ ଫସେଇବାକୁ ଚାହୁଁଛି । ଆପଣ ହାତୀମାନଙ୍କୁ ଧରିବାର ଏଇ ସଉକ୍ ଛାଡ଼ି ଦିଅନ୍ତୁ ଆଉ ମହାସେନର ପ୍ରସ୍ତାବକୁ ପଛ କରିଦିଅନ୍ତୁ ।

ମୌଗନ୍ଧରାୟଣଙ୍କ ପରାମର୍ଶ ଶୁଣି ଉଦୟନ ମଧ୍ୟ ମହାସେନଙ୍କ ଦୂତ ହାତରେ ତାଙ୍କୁ ଖବର ଦେଲେ– ଯଦି ତମ ଝିଅକୁ ସଙ୍ଗୀତ ଶିଖାଇବା ତମର ଇଚ୍ଛା ତା'ହେଲେ ତାକୁ ଏଇଠିକୁ ପଠେଇଦିଅ ।

ମହାସେନଙ୍କ ଦୂତ ଚାଲିଗଲା ପରେ ମୌଗନ୍ଧରାୟଣ ଉଦୟନଙ୍କୁ କହିଲେ– ମହାରାଜ, ବାସବଦତ୍ତା ମହାସେନର ରାଜପ୍ରାସାଦରେ ଏମିତି ଭାବରେ ରହୁଛନ୍ତି ଯେମିତି ସମୁଦ୍ର ଭିତରେ ଲକ୍ଷ୍ମୀ ରହୁଥିଲେ । ଉଜ୍ଜୟିନୀର ସେଇ ରାଜା ଚଣ୍ଡ ମହାସେନ ମହାପ୍ରତାପୀ, ଆଉ ସେ ତା'ର ଅଭେଦ୍ୟ ଦୁର୍ଗରେ ସବୁବେଳେ ସୁରକ୍ଷିତ ତଥା ଅଜେୟ । କିନ୍ତୁ ଏକଥା ମଧ୍ୟ ସତ୍ୟ ଯେ ସେ ନିଜ ଝିଅକୁ ଆପଣଙ୍କୁ ଦେବାକୁ ଚାହେଁ । ସ୍ୱାଭିମାନ ହେତୁ ନିଜ ଆଡୁ ସେ ପ୍ରସ୍ତାବ ଦେଉନାହିଁ । ତେଣୁ ସୁଯୋଗ ପାଇଲା ମାତ୍ରେ ବାସବଦତ୍ତାଙ୍କୁ ଆପଣ ବିବାହ କରିବା ଉଚିତ ।

ମୌଗନ୍ଧରାୟଣଙ୍କ କଥାଶୁଣି ଉଦୟନ ବାସବଦତ୍ତାଙ୍କ ପ୍ରତି ଆହୁରି ଅଧିକ ଆକର୍ଷିତ ହେଲେ, କିନ୍ତୁ କିଛି ଉପାୟ ନପାଇ ନୀରବ ରହିଲେ ।

ଅନ୍ୟ ପକ୍ଷରେ ରାଜାଙ୍କ ପ୍ରେରିତ ଦୂତ ଉଜ୍ଜୟିନୀ ଫେରିଆସି ମହାସେନଙ୍କୁ ଉଦୟନଙ୍କ ଉତ୍ତର ଜଣାଇଲା । ମହାସେନ ନିର୍ଣ୍ଣୟକଲେ ଯେ ଯଦି ଅଭିମାନ ହେତୁ ଉଦୟନ ଉଜ୍ଜୟିନୀକୁ ଆସିବାକୁ



ଚାହୁଁ ନାହାନ୍ତି ତା'ହେଲେ ସେ ତାଙ୍କୁ ଛଳରେ ବନ୍ଦୀକରି ନେଇ ଆସିବେ । ହେଲେ ରାଜକୁମାରୀଙ୍କୁ ସେ ତାଙ୍କ ପାଖକୁ ବୀଣା ଶିଖିବାକୁ ପଠାଇବେ ନାହିଁ ।

ତା'ପରେ ମହାସେନ ନିଜ ମନ୍ତ୍ରୀମାନଙ୍କ ସହ ପରାମର୍ଶକରି ଗୋଟିଏ ବଡ଼ ଯାନ୍ତ୍ରିକ ହାତୀ ତିଆରିକଲେ ଓ ତା ପେଟରେ ବଡ଼ ବଡ଼ ଯୋଦ୍ଧାମାନଙ୍କୁ ଲୁଚାଇ ରଖାଇଲେ ଓ ଯାନ୍ତ୍ରିକ ହାତୀକୁ ବିନ୍ଧ୍ୟ ଜଙ୍ଗଲରେ ଛାଡ଼ିଦେଲେ ।

ସେଇ ବଣକୁ ରାଜା ଉଦୟନ ଶିକାର କରିବାକୁ ନିୟମିତ ଆସୁଥିଲେ । ଦିନେ ତାଙ୍କ ସେବକମାନେ ସେଇ ବଣରେ ପଶି ସେଇ ବିରାଟ ଯାନ୍ତ୍ରିକ ହାତୀକୁ ଦେଖିଲେ ଓ ସଙ୍ଗେ ସଙ୍ଗେ ଦୌଡ଼ି ଦୌଡ଼ି ରାଜା ଉଦୟନଙ୍କ ପାଖକୁ ଯାଇ କହିଲେ– ମହାରାଜ, ଆମେ ଏମିତି ଗୋଟିଏ ବିରାଟ ହାତୀ ଦେଖିଲୁ, ସେମିତି ହାତୀ ଆଉ ପୃଥିବୀରେ ନଥିବ ।

ସେମାନଙ୍କ କଥା ଶୁଣି ଉଦୟନ ବଡ଼ ଆନନ୍ଦିତ ହେଲେ । ସେ ଭାବିଲେ ସେଇ ହାତୀ ରାଜା ମହାସେନଙ୍କ ନଡ଼ାଗିରୀ ହାତୀଭଳି ବଳବାନ ହୋଇଥିବ । ଯଦି ମୁଁ ସେଇ ହାତୀକୁ ବଶ କରିପାରିବି, ମହାସେନ ମଧ୍ୟ ମୋ ବଶକୁ ଆସିଯିବେ ଆଉ ବାସବଦତ୍ତାଙ୍କ ବିବାହ ମୋ ସହିତ ତାଙ୍କୁ କରିବାକୁ ପଡ଼ିବ ।

ମନ୍ତ୍ରୀମାନଙ୍କ ବାରଣ ସତ୍ତ୍ୱେ ହାତୀ ଲୋଭରେ ଉଦୟନ ସେବକମାନଙ୍କ ଆଗେ ଆଗେ ବଣକୁ ଚାଲିଗଲେ । ଜ୍ୟୋତିଷମାନେ ଶକୁନ ଦେଖି କହିଲେ ରାଜାଙ୍କର ଏଇ ଶିକାରରେ କନ୍ୟା ଲାଭ ଯୋଗ ଅଛି, କିନ୍ତୁ ତା ପୂର୍ବରୁ ତାଙ୍କୁ ବନ୍ଦୀହୋଇ ରହିବାକୁ ହେବ । ରାଜା ସେମାନଙ୍କ କଥାକୁ କାନଦେଲେ ନାହିଁ ।

ବିନ୍ଧ୍ୟ ବଣରେ ପହଞ୍ଚି ରାଜା ତାଙ୍କ ସେନାକୁ ଦୂରରେ ଅଟକାଇ ଦେଲେ ଯେପରି ହାତୀ ଡରିଯାଇଁ ପଳାଇ ନଯାଏ ଓ ଯେଉଁ ଗୁପ୍ତଚର ସେବକମାନେ ହାତୀକୁ ଦେଖିଥିଲେ, ସେମାନଙ୍କୁ ସାଙ୍ଗରେ ନେଇ ନିଜର ଘୋଷବତୀ ବୀଣାକୁ ବଜାଇ ବଜାଇ ଜଙ୍ଗଲ ମଧ୍ୟକୁ ପ୍ରବେଶ କଲେ ।

ସେବକମାନେ ଦୂରରୁ ହାତୀକୁ ଦେଖାଇଦେଲେ । ଉଦୟନ ବୀଣା ବଜାଇ ବଜାଇ ତା ପାଖକୁ ଆସିଗଲେ । ସନ୍ଧ୍ୟା ହେବାକୁ ଯାଉଥିଲା ଓ ଅନ୍ଧାର ଘେରି ରହିଥିଲା । ତେଣୁ ରାଜା ଜାଣିପାରିଲେ ନାହିଁ ଯେ ହାତୀଟା କୃତ୍ରିମ ।

ସେଇ ହାତୀ ବି ବୀଣାର ତାନରେ ମସ୍ତହେଲାଭଳି କାନକୁ ହଲାଇ ହଲାଇ ରାଜାଙ୍କ ପାଖକୁ ଆସୁଥିଲା ଓ ପୁଣି ଦୂରକୁ ଚାଲିଯାଉଥିଲା ଓ ଏହିପରି ତାଙ୍କୁ ଆକର୍ଷିତ କରି ବହୁ ଦୂରକୁ ନେଇଗଲା । ତା'ପରେ ହଠାତ୍ ହାତୀର ପେଟ ଖୋଲିଗଲା ଓ ସେଇ ପେଟ ଭିତରୁ ମହାସେନଙ୍କ ସୈନ୍ୟମାନେ ବାହାରକୁ କୁଦିପଡ଼ି ବତ୍ସରାଜ ଉଦୟନଙ୍କୁ ଘେରିଗଲେ । ବତ୍ସରାଜ କ୍ରୋଧିତହୋଇ ତାଙ୍କ ଖଣ୍ଡା ବାହାର କରି ସେମାନଙ୍କ ସହିତ ଲଢ଼ିଲେ । କିନ୍ତୁ ସେତେବେଳେ ଜଙ୍ଗଲ ଭିତରେ ଲୁଚିଥିବା ମହାସେନଙ୍କ ଅନ୍ୟ ସୈନ୍ୟମାନେ ଆସିଗଲେ ଓ ସେମାନେ ଉଦୟନଙ୍କ ଉପରେ ପଛଆଡୁ ଆକ୍ରମଣ କଲେ । ତା'ପରେ ସେ ଉଦୟନଙ୍କୁ ବନ୍ଦୀକରି ମହାସେନଙ୍କ ସମ୍ମୁଖକୁ ନେଇଗଲେ ।

ମହାସେନ ରାଜା ଉଦୟନଙ୍କୁ ଦେଖି ଭାରି ଖୁସି ହେଲେ ଓ ଉଦୟନଙ୍କୁ ବୁଝାସୁଝା କରି ନିଜ ପ୍ରାସାଦରେ ବନ୍ଦୀ ଭାବରେ ରଖିଲେ । ତା'ପରେ ସେ ତାଙ୍କ ଝିଅ ବାସବଦତ୍ତାଙ୍କୁ ବୀଣା ଶିଖାଇବା ପାଇଁ ତାଙ୍କୁ ଅନୁରୋଧ କଲେ । ରାଜା ଉଦୟନ ବାସବଦତ୍ତାଙ୍କୁ ଦେଖି ଏତେ ଆନନ୍ଦିତ ହେଲେ ଯେ, ସେ ମହାସେନଙ୍କ ଛଳନା ଓ ନିଜେ ବନ୍ଦୀ ହେବାର ଦୁଃଖକୁ ଭୁଲିଗଲେ ।

ବାସବଦତ୍ତା ମଧ୍ୟ ଉଦୟନଙ୍କୁ ଦେଖି ଦେଖି ତାଙ୍କୁ ଭଲପାଇ ବସିଲେ । ଉଦୟନ ମହାସେନଙ୍କ ସଙ୍ଗୀତ ଶାଳାରେ ବାସବଦତ୍ତାଙ୍କୁ ସଙ୍ଗୀତ ଶିଖାଇ ଦିନ କାଟିଲେ ।

ଏହା ଭିତରେ ରାଜା ଉଦୟନଙ୍କ ଯାଇଥିବା ସୈନ୍ୟ ଓ ଗୁପ୍ତଚରମାନେ କୌଶାମ୍ବୀକୁ ଫେରି ତାଙ୍କୁ ଧରି ନେଇଯାଇଥିବା ଖବରଦେଲେ । କୌଶାମ୍ବୀର ଲୋକମାନେ କ୍ରୋଧିତ ହୋଇ ଉଜ୍ଜୟିନୀ ଉପରେ ଆକ୍ରମଣ କରିବାକୁ ପ୍ରସ୍ତୁତି ଚଳାଇଲେ । ଜନସାଧାରଣଙ୍କୁ କ୍ଷୁବ୍ଧ ଦେଖି ମନ୍ତ୍ରୀ ରୁମଣ୍ୱାନ ସେମାନଙ୍କୁ ବୁଝାଇଲେ— ରାଜା ମହାସେନଙ୍କୁ ଯୁଦ୍ଧରେ କାବୁ କରିହେବ ନାହିଁ । ସେ ବହୁତ ବଳବାନ । ପୁଣି ଆମେ ଉଜ୍ଜୟିନୀ ଆକ୍ରମଣ କଲେ ସେ ଆମ ମହାରାଜାଙ୍କର କିଛି କ୍ଷତି କରିପାରେ ।

ରୁମଣ୍ୱାନ ବୁଝାଇବାରେ ଲୋକମାନେ ଶାନ୍ତ ହେଲେ ।

ଏଥର ଯୌଗନ୍ଧରାୟଣ ଓ ରୁମଣ୍ୱାନ ପ୍ରଭୃତି ପରସ୍ପର ମଧ୍ୟରେ ମନ୍ତ୍ରଣା କଲେ ସେ କ'ଣ କରାଯିବ । ଯୌଗନ୍ଧରାୟଣ କହିଲେ— ଆପଣମାନେ ଧୈର୍ଯ୍ୟ ଧରନ୍ତୁ ଓ ପ୍ରସ୍ତୁତ ରହନ୍ତୁ । ଆମେ ଆମ ଦେଶ ପ୍ରତି ଧ୍ୟାନ ଦେବା ଉଚିତ ଆଉ ବେଳ ପଡିଲେ ପରାକ୍ରମ ମଧ୍ୟ ଦେଖାଇବା ଉଚିତ୍ । ମୁଁ କେବଳ ବସନ୍ତକଙ୍କୁ ସାଙ୍ଗରେ ନେଇ ଯିବି ଓ ନିଜ ବୁଦ୍ଧିରେ ମହାରାଜ ଉଦୟନଙ୍କୁ ମୁକ୍ତକରି ସାଙ୍ଗରେ ନେଇ ଆସିବି ।

ଏତକ କହି ଯୌଗନ୍ଧରାୟଣ ବସନ୍ତକଙ୍କୁ ସାଙ୍ଗରେ ନେଇ ବାହାରିଗଲେ । ପ୍ରଥମେ ସେମାନେ ବିନ୍ଧ୍ୟର ଘନ ଜଙ୍ଗଲରେ ପହଞ୍ଚିଲେ । ସେଠାରେ ସେମାନେ ଉଦୟନଙ୍କ ବନ୍ଧୁ ରାଜା ପୁଳିନ୍ଦକଙ୍କୁ ନିଜ ସେନା ସହିତ ପ୍ରସ୍ତୁତ ରହିବାକୁ କହିଲେ । ତା'ପରେ ସେମାନେ ସେଠାରୁ ଯାଇ ଉଜ୍ଜୟିନୀରେ ପହଞ୍ଚି ମହାକାଳଙ୍କ ଶ୍ମଶାନକୁ ଗଲେ ଓ ସେମାନଙ୍କ ବିଦ୍ୟା ଓ ବଳ ଯାଞ୍ଚି ଯୋଗେଶ୍ୱର ନାମକ ବ୍ରହ୍ମରାକ୍ଷସ ସେମାନଙ୍କ ଉପରେ ଖୁସିହୋଇ ସେମାନଙ୍କ ବନ୍ଧୁ ହୋଇଗଲା । ଯୋଗେଶ୍ୱର ସେମାନଙ୍କୁ ବତାଇବା ମୁତାବକ ଯୌଗନ୍ଧରାୟଣ ତାଙ୍କ ନିଜ ରୂପ ବଦଳାଇ ବିକୃତ ଆକାରର ବେଶ ରୂପ ଧାରଣ କଲେ । ବସନ୍ତକ ମଧ୍ୟ ଯୌଗନ୍ଧରାୟଣଙ୍କ ଭଳି ରୂପ ବଦଳାଇ ଦେଲେ ।

ନଗରକୁ ଆସି ପ୍ରଥମେ ଯୌଗନ୍ଧରାୟଣ ବସନ୍ତକଙ୍କୁ ରାଜ ପ୍ରାସାଦର ଦ୍ୱାରକୁ ପଠାଇଦେଲେ । ତା'ପରେ ସେ ରାଜ ରାସ୍ତାରେ ତାମସା ଦେଖାଇ ଦେଖାଇ ଗୀତଗାଇ ରାଜନଅର ସାମନାରେ ପହଞ୍ଚିଲେ । ବାସବଦତ୍ତା ତାଙ୍କୁ ଦେଖି ମନୋରଞ୍ଜନ ପାଇଁ ସଙ୍ଗୀତଶାଳାକୁ ଡକାଇ ପଠାଇଲା ।

ନିଜ ରାଜାଙ୍କୁ ବନ୍ଦୀ ଅବସ୍ଥାରେ ଦେଖି ଯୌଗନ୍ଧରାୟଣଙ୍କ ଆଖିରେ ଲୁହ ଆସିଗଲା । କିନ୍ତୁ ସେ ନିଜକୁ ସମ୍ଭାଳି ନେଇ ରାଜକୁମାରୀ, ତାଙ୍କ ସଖି ଓ ଦାସୀମାନଙ୍କୁ କିଛି ସମୟ ଖେଳ ଦେଖାଇଲେ । ସୁଯୋଗ ପାଇ ସେ ନିଜେ ଯୌଗନ୍ଧରାୟଣ ବୋଲି ବସ ରାଜାଙ୍କୁ ସଙ୍କେତ କରିଆରେ ଜଣାଇଦେଲେ । ରାଜା ଉଦୟନ ସଙ୍ଗେ ସଙ୍ଗେ ବାସବଦତ୍ତାଙ୍କୁ କହିଲେ— ତମେ ତମ ସବୁ ସଖୀମାନଙ୍କ ସାଙ୍ଗରେ ସରସ୍ୱତୀଙ୍କ ପୂଜା ପାଇଁ ଥାଳି ସଜାଇ ଆଣ । ବାସବଦତ୍ତା ତାଙ୍କ ସଖୀମାନଙ୍କ ସହିତ ସଙ୍ଗୀତଶାଳାରୁ ଚାଲିଗଲେ ।

ଏକୁଟିଆ ପାଇ ଯୌଗନ୍ଧରାୟଣ ରାଜାଙ୍କୁ କହିଲେ— ରାଜନଅରର ଦ୍ୱାରରେ ବସନ୍ତକ ଠିଆ ହୋଇଛି । ତାଙ୍କୁ ଭିତରକୁ ଡାକି ଆଣନ୍ତୁ ଓ ଆପଣଙ୍କ ସାଙ୍ଗରେ ରଖନ୍ତୁ । ଏଇକ୍ଷଣି ଆପଣ ବାସବଦତ୍ତାଙ୍କୁ କିଛି ଜଣାନ୍ତୁ ନାହିଁ । ଯେତେବେଳେ ତାଙ୍କର ବିଶ୍ୱାସ ହେବ, ସେତେବେଳେ ମୁଁ ଯେମିତି ବତାଇବି, ଆପଣ ସେମିତି କରିବେ ।



ଏତକ କହି ଯୌଗନ୍ଧରାୟଣ ସେଠାରୁ ଚାଲିଗଲେ । ସରସ୍ୱତୀଙ୍କ ପୂଜା ପାଇଁ ଥାଳି ସଜାଇ ବାସବଦତ୍ତା ସଖୀମାନଙ୍କ ସହିତ ଫେରିଆସିଲେ, କିନ୍ତୁ ତାଙ୍କୁ ଜଣା ପଡିଲା ନାହିଁ ଯେ, ଯୌଗନ୍ଧରାୟଣ କେଉଁଠୁ ଆସିଥିଲେ ଓ କେଉଁଆଡେ ଅନ୍ତର୍ଦ୍ଧାନ ହୋଇଗଲେ । ବାସବଦତ୍ତା ଆସିବା ମାତ୍ରେ ଉଦୟନ ତାଙ୍କୁ କହିଲେ— ଦେଖ, ଦ୍ୱାର ମୁହଁରେ ଜଣେ ବ୍ରାହ୍ମଣ ଠିଆ ହୋଇଛନ୍ତି । ପୂଜା ପରେ ଦକ୍ଷିଣା ଦେବାକୁ ହୁଏ, ତେଣୁ ତାଙ୍କୁ ଭିତରକୁ ଡାକିଆଣ ।

ଯୌଗନ୍ଧରାୟଣ ବସନ୍ତକଙ୍କୁ ଏମିତି ବିରୂପ କରିଦେଇଥିଲେ, ତାଙ୍କୁ ଦେଖିଲେ ହସ ମାଡୁଥିଲା ଓ ତାଙ୍କୁ ଲୋକଙ୍କୁ ହସେଇବାକୁ ଚେଷ୍ଟା କରିବାକୁ ଯୌଗନ୍ଧରାୟଣ କହିଥିଲେ । କିନ୍ତୁ ବସନ୍ତକ ତା ରାଜାଙ୍କର ଏପରି ଅବସ୍ଥା ଦେଖି ଭେଁକା ଛାଡି ପକାଇଲେ । ଧରା ପଡିଯିବା ଭୟରେ ଉଦୟନ କଥା ସମ୍ଭାଳିବାକୁ ଯାଇ କହିଲେ— ବ୍ରାହ୍ମଣ, କାନ୍ଦ ନାହିଁ । ରୋଗ ଯୋଗୁ ତମେ ଯେଉଁ କୁତ୍ସିତ ଦେଖାଯାଉଛ, ତାକୁ ମୁଁ ଦୂର କରିଦେବି । ଠିକ୍ ଅଛି, ତମେ ମୋ ପାଖରେ ରୁହ ।

ରାଜାଙ୍କ କଥା ଶୁଣି ବସନ୍ତକ ହସିବାକୁ ଲାଗିଲେ । ତା'ର ଅଦ୍ଭୁତ ହସ ଦେଖି ବାସବଦତ୍ତା ଓ ତାଙ୍କ ସଖୀମାନେ ମଧ୍ୟ ହସିବାକୁ ଲାଗିଲେ । ତଥାପି ବସନ୍ତକ ସେମାନଙ୍କ ମନ ଭୁଲାଇବାକୁ ଯେମିତି କଣ୍ଢେଇ ଭଳି ହୋଇଗଲେ ।

ବାସବଦତ୍ତା ତାଙ୍କୁ ପଚାରିଲେ— ଖାଲି ଏଇ କୌତୁକିଆ କଥା ଛଡା ତମେ ଆଉ କିଛି ଜାଣ କି ?

ବସନ୍ତକ କହିଲେ ହଁ, ମୋତେ ବହୁତ ବଢ଼ିଆ ବଢ଼ିଆ ଗପସବୁ ଜଣା ।

ଗପ କଥା ଶୁଣି ବାସବଦତ୍ତା ଓ ତାଙ୍କ ସଖୀମାନେ ବସନ୍ତକଙ୍କ ଚାରିପାଖରେ ଘେରିଗଲେ ଓ ସେମାନଙ୍କୁ ଗପ ଶୁଣାଇବାକୁ କହିଲେ ।

ବସନ୍ତକ ସେମାନଙ୍କୁ ସୁନ୍ଦର ଗପଟିଏ ଶୁଣାଇଲେ । ଗପ ଶୁଣି ସାରିବା ପରେ ବାସବଦତ୍ତା ଓ ତାଙ୍କର ସଖୀମାନେ ଖୁସିହୋଇ ଚାଲିଗଲେ ।

ବାସବଦତ୍ତା ପ୍ରତିଦିନ ଉଦୟନଙ୍କ ପାଖରେ ଘଣ୍ଟା ଘଣ୍ଟା ଧରି ବସି ରହୁଥିଲେ, ଦୁହିଁଙ୍କ ଭିତରେ ପ୍ରେମ ଗଭୀର ହେଉଥିଲା । ମଝିରେ ମଝିରେ ଯୌଗନ୍ଧରାୟଣ ଲୁଚି ଛପି ଉଦୟନଙ୍କୁ ଭେଟୁଥିଲେ ଓ ତାଙ୍କୁ ବୁଝାଉଥିଲେ । ଥରେ ସେ ବସନ୍ତକଙ୍କ ସାମନାରେ ରାଜାଙ୍କୁ କହିଲେ— ମହାରାଜ, ଆପଣଙ୍କ ବିବାହ ତା'ଝିଅ ସହ କରିବାକୁ ରାଜା ମହାସେନର ବହୁତ ଇଚ୍ଛା । ବିବାହ କରାଇ ସେ ଆପଣଙ୍କୁ ବହୁତ ସମ୍ମାନ ଦେବ ଓ ଏଇ କାରାଗାରରୁ ମୁକ୍ତ କରିଦେବ । ତେଣୁ ଏପରି ହେବା ପୂର୍ବରୁ ତା ଝିଅକୁ ଅପହରଣ କରି ଆପଣ ଏଠାରୁ ପଳାଇବା ଉଚିତ ହେବ । ଏଇଭଳି ସେଇ ଅଭିମାନୀର ମାନ ବି ଭାଙ୍ଗିବ ଆଉ ଆମ ଦୁର୍ବଳତାର କଳଙ୍କ ବି ପୋଛି ହୋଇଯିବ । ଏଇ ରାଜା ମହାସେନ ରାଜକୁମାରୀଙ୍କୁ ଭଦ୍ରବତୀ ନାମରେ ଗୋଟିଏ ମାଈହାତୀ ଦେଇଛି । ସେଇ ମାଈହାତୀ ଏତେ ଜୋରରେ ଦଉଡେ ସେ ନଡ଼ାଗିରି ନାମକ ହାତୀ ଛଡା ଆଉ କୌଣସି ହାତୀ ତା'ର ସରିହେବ ନାହିଁ । ନଡ଼ାଗିରି ବି ସେଇ ମାଈହାତୀ ପ୍ରେମରେ ଏମିତି ପଡିଛି ଯେ, ସେ ଯୁଦ୍ଧଭୂମିକୁ ମଧ୍ୟ ଯାଏ ନାହିଁ । ନଡ଼ାଗିରିର ମାହୁନ୍ତର ନାମ ଆପାଢକ । ତାକୁ ମୁଁ ବହୁତ ଧନଦେଇ ବଶ କରିନେଇଛି । ଆପଣ ସେଇ ମାଈହାତୀରେ ଚଢ଼ି ବାସବଦତ୍ତାଙ୍କୁ ସାଙ୍ଗରେ ନେଇ ଲୁଚିକରି ରାତିରେ ଏଠାରୁ ପଳାନ୍ତୁ । ଆମେ ଏଠିକାର ମୁଖ୍ୟ ମାହୁନ୍ତକୁ ତଣ୍ଟିଯାଏ ମଦ ପିଆଇ ବେହୋସ କରିଦେବୁ । ମୁଁ ଏଇକ୍ଷଣି ଆପଣଙ୍କ ବନ୍ଧୁ ପୁଳିନ୍ଦଙ୍କ ପାଖକୁ ଯାଉଛି ଓ ବାଟରେ ଯୁଦ୍ଧ କରିବା ପାଇଁ ପ୍ରସ୍ତୁତ ରହିବାକୁ ତାଙ୍କୁ କହିବି ।

ଯୌଗନ୍ଧରାୟଣ ଚାଲିଯିବା ପରେ ବାସବଦତ୍ତା ସେଠାକୁ ଆସିଲେ ଓ ଉଦୟନ ସବୁ ଯୋଜନା ବିଷୟରେ ଜଣାଇଲେ । ସେ ବି ଉଦୟନଙ୍କ ସାଙ୍ଗରେ ଲୁଚି ପଳାଇବା ପାଇଁ ପ୍ରସ୍ତୁତ ହୋଇଗଲେ । ଦେବତାଙ୍କ ଭୋଗ ନାଁରେ ମୁଖ୍ୟ ମାହୁନ୍ତକୁ ଖୁବ୍ ମଦ ପିଆଇ ଦିଆଗଲା । ମାଈହାତୀ ଭଦ୍ରବତୀକୁ ବି ଖୁବ୍ ମଦ ପିଆଇ ଦିଆଗଲା । ଆଷାଢ଼କ ମାଈହାତୀ ଭଦ୍ରବତୀକୁ ନେଇ ଆସିଲା । ବାସବଦତ୍ତା ପୂଜା କରିବା ପାଇଁ ମନ୍ଦିର ଯିବା ବାହାନାରେ ଭଦ୍ରବତୀ ଉପରେ ଚଢ଼ିଗଲେ । ଉଦୟନ ଯୌଗନ୍ଧରାୟଣ ଦେଇଥିବା ହତିଆର ସାହାଯ୍ୟରେ ନିଜର ବନ୍ଧନକୁ କାଟି ପକାଇଲେ ଓ ତାଙ୍କ ବୀଣାକୁ ଧରି ସେଇ ମାଈହାତୀ ଉପରକୁ ଚଢ଼ି ବାହାରି ପଡ଼ିଲେ । ସେ ବସନ୍ତକ ଓ ଅନ୍ୟ ଜଣେ ସହଯୋଗୀଙ୍କ ସାଙ୍ଗରେ ନେଇ ନଗରର ଯେଉଁଠାରେ ପାଚେରୀ ଭାଙ୍ଗି ଯାଇଥିଲା, ସେଇ ବାଟଦେଇ ନଗର ବାହାରକୁ ଚାଲି ଆସିଲେ ଓ ଆସିଲାବେଳେ ସେଠାରେ ପହରା ଦେଉଥିବା ସୈନ୍ୟମାନଙ୍କୁ ମାରିଦେଲେ ।

ଉଦୟନ ପଳାଇଯିବା ଖବର ଯେମିତି ମହାସେନଙ୍କୁ ମିଳିଲା, ସେ ତାଙ୍କ ପୁଅ ପାଳକକୁ ନଡ଼ାଗିରି ହାତୀ ଉପରେ ବସି ସେମାନଙ୍କ ପିଛା କରିବାକୁ କହିଲେ । ଉଦୟନ ବାଣମାରି ପାଳକକୁ ରୋକି ଦେଲେ । ନଡ଼ାଗିରୀ ମାଈହାତୀ ଭଦ୍ରବତୀ ଯୋଗୁ ଉଦୟନଙ୍କ ସେନା ଉପରେ ଆକ୍ରମଣ କଲା ନାହିଁ । ସେତିକିବେଳେ ମହାସେନଙ୍କ ଆଦେଶରେ ତାଙ୍କ ସାନପୁଅ ଗୋପାଳକ ସେଠାରେ ପହଞ୍ଚି ଯୁଦ୍ଧ ବନ୍ଦ କରାଇଲା । ସେ ଓ ଗୋପାଳକ ଉଦୟନଙ୍କ ସହିତ ଯୁଦ୍ଧ ନକରି ଉଜ୍ଜୟିନୀ ଫେରିଗଲେ ।

ଉଦୟନ ଓ ବାସବଦତ୍ତା ସେଇ ମାଈହାତୀ ଉପରେ ବସି ସାରାରାତି ଓ ତା'ପର ଦିନ ସାଝୁଆବେଳେ ପର୍ଯ୍ୟନ୍ତ ଆଗକୁ ମାଡ଼ି ଚାଲିଥିଲେ । ଦ୍ୱିପ୍ରହର ହୋଇଯାଇଥିଲା ଓ ହାତୀଟି ଶହେ ଯୋଜନ ଚାଲି ସାରିଥିଲା । ଏଥର ଉଦୟନ ଓ ବାସବଦତ୍ତା ତା ଉପରୁ ଓହ୍ଲାଇ ଆସନ୍ତେ ସେ ପେଟ ଭରିକରି ପାଣି ପିଇଲା ଓ ତା'ପରେ ମରିଗଲା ।

ଠିକ୍ ସମୟବେଳେ କାମରେ ଆସିଥିବା ଭଦ୍ରବତୀକୁ ନିଜ ଆଖି ସାମନାରେ ମରିଯିବା ଦେଖି ଉଦୟନ ଓ ବାସବଦତ୍ତା କାନ୍ଦିପକାଇଲେ । ସେଇ ସମୟରେ ସେମାନେ ଆକାଶବାଣୀ ଶୁଣିଲେ— ରାଜା ମୁଁ ବିଦ୍ୟାଧାରୀ ମାୟାବତୀ । ଶାପ ଯୋଗୁଁ ହାତୀହୋଇ ଜନ୍ମ ହୋଇଥିଲି ଓ ତମର ସହାୟତା କଲି । ଆଗକୁ ମୁଁ ତମ ପୁଅର ମଧ୍ୟ ଉପକାର କରିବି ।

ବିଦ୍ୟାଧାରୀ କଥା ଶୁଣିବା ପରେ ରାଜା ଉଦୟନ ଶିଘ୍ର ଏଇ ଘନ ଜଙ୍ଗଲକୁ ପାର ହୋଇଯିବା କଥା ବିଚାର କଲେ । ନିକଟରେ ବିନ୍ଧ୍ୟର ଚୂଡ଼ା ଉପରେ ପୁଲିନ୍ଦଙ୍କ ନଗର ଥିଲା । ସେମାନେ ନଗର ଅଭିମୁଖେ ଯାଉଥିଲାବେଳେ ବାଟରେ ସେମାନଙ୍କୁ ସାହାଯ୍ୟ କରିବାକୁ ଆଗେଇ ଆସୁଥିବା ପୁଲିନ୍ଦକ ଓ ଯୌଗନ୍ଧରାୟଣଙ୍କ ସହିତ ତାଙ୍କର ଭେଟହେଲା ।

ଉଦୟନ ଯୌଗନ୍ଧରାୟଣ ଓ ବସନ୍ତକଙ୍କ ସହିତ ସେଇ ଭିଲ୍ଲ ଗାଁରେ କିଛିଦିନ ରହିଲେ । କୌଶାମ୍ବୀରୁ ରୁମଣ୍ୱାନ ସେମାନଙ୍କୁ ମହାସେନଙ୍କ ବିପକ୍ଷରେ ଯୁଦ୍ଧର ସାହାଯ୍ୟ କରିବାକୁ ସେନା ସହ ଆସି ପହଞ୍ଚିଲେ, କିନ୍ତୁ ଯୁଦ୍ଧର ଆଉ ଆବଶ୍ୟକତା ନଥିଲା । ଏହି ସମୟରେ ମହାସେନ ଦୂତ ପଠାଇ ଖବର ଦେଲେ ଯେ ସେ ତାଙ୍କ ଜ୍ୱାଇଁ, ରାଜା ଉଦୟନ ଓ ଝିଅ ବାସବଦତ୍ତା ଉପରେ ସନ୍ତୁଷ୍ଟ ଓ ସେ ଦୁହିଁଙ୍କୁ ଆଶୀର୍ବାଦ ପଠାଇଛନ୍ତି ।

ବାପ-ମା'ଙ୍କୁ ନଜଣାଇ ଲୁଚିକରି ପଳାଇ ଆସିଥିବା ଯୋଗୁ ବାସବଦତ୍ତାଙ୍କ ମନରେ ଯେଉଁ ଦୁଃଖ ହୋଇଥିଲା, ବାପା ପଠାଇଥିବା ସନ୍ଦେଶ ପାଇ ସେଇ ଦୁଃଖ ଦୁରିଗଲା ।



ଭିଲ୍ଲ ଗ୍ରାମରେ କିଛିଦିନ ସୁଖରେ କଟାଇ ମହାରାଜ ଉଦୟନ, ବସନ୍ତକ, ଯୌଗନ୍ଧରାୟଣ ଓ ବାସବଦତ୍ତାଙ୍କୁ ସାଙ୍ଗରେ ନେଇ କୌଶାମ୍ବୀ ଫେରିଆସିଲେ । ରାଜା ଫେରିଆସିଥିବାରୁ ନଗରକୁ ନବବଧୂ ଭଳି ସଜାଯାଇ ଉତ୍ସବ ପାଳନ କରାଗଲା । ପ୍ରଥମ ଦିନ ରାଜା ବାସବଦତ୍ତାଙ୍କୁ ନେଇ ମନ୍ତ୍ରୀ ରୁମଣ୍ୱାନଙ୍କ ମହଲରେ ରହିଲେ । ତା'ପରଦିନ ସେ ରାଜକୁମାରୀଙ୍କୁ ନେଇ ନିଜ ପ୍ରାସାଦରେ ପହଞ୍ଚିଲେ । ସେଇଦିନ ହିଁ ମହାସେନଙ୍କ ଆଦେଶରେ ରାଜକୁମାର ଗୋପାଳକ ମଧ୍ୟ ଆସିଗଲା ଓ ଉଦୟନ ଓ ବାସବଦତ୍ତାଙ୍କ ବିବାହ ପାଇଁ ଆୟୋଜନରେ ଲାଗିଗଲା । ସେମାନଙ୍କର ବିବାହ ବଡ଼ ଧୁମ୍‌ଧାମ୍‌ରେ ହେଲା ।

ମହାରାଜା ଉଦୟନ ମୂଳରୁ ରାଜକାର୍ଯ୍ୟରେ ମନଯୋଗୀ ନଥିଲେ । ବିବାହ ପରେ ସେ ବାସବଦତ୍ତାଙ୍କ ପ୍ରେମରେ ଏମିତି ବାନ୍ଧି ହୋଇଗଲେ ଯେ, ତାଙ୍କ ବିଶ୍ୱାସୀ ମନ୍ତ୍ରୀ ଯୌଗନ୍ଧରାୟଣ ଓ ରୁମଣ୍ୱାନଙ୍କ ଉପରେ ସବୁ ରାଜକାର୍ଯ୍ୟ ବୁଝିବା ଭାର ଛାଡ଼ିଦେଇ ରଙ୍ଗରସ, ସଙ୍ଗୀତ ଓ ବାସବଦତ୍ତାଙ୍କ ସହ ପ୍ରେମରେ ମାତି ରହିଥିଲେ । ଦିନେ ବରିଷ୍ଠ ମନ୍ତ୍ରୀ ଯୌଗନ୍ଧରାୟଣ ତାଙ୍କ କନିଷ୍ଠ ମନ୍ତ୍ରୀ ରୁମଣ୍ୱାନଙ୍କୁ କହିଲେ— ଆମ ମହାରାଜା ପାଣ୍ଡବ ବଂଶରେ ଜନ୍ମ ହୋଇଛନ୍ତି । ବଂଶାନୁକ୍ରମେ ସାରା ଭାରତ ତାଙ୍କର । ରାଜଧାନୀ ହସ୍ତିନାପୁରରେ ମଧ୍ୟ ତାଙ୍କ ରାଜତ୍ୱ ଚାଲିବା ଉଚିତ । କିନ୍ତୁ ସେ ଯୁଦ୍ଧ କରିବାକୁ ଉଦାସୀନ, ସ୍ତ୍ରୀ ଓ ମଦିରା ପ୍ରତି ଆସକ୍ତ । ଆମକୁ ଏମିତି କିଛି କରିବାକୁ ହେବ, ଯାହାଦ୍ୱାରା ଆମର ରାଜଭକ୍ତି ଓ ମନ୍ତ୍ରୀତ୍ୱ ଉଭୟ ସଫଳହେବ । ଯେତେଦିନ ପର୍ଯ୍ୟନ୍ତ ମହାରାଜାଙ୍କ ମନ ମହାରାଣୀ ବାସବଦତ୍ତାଙ୍କ ଠିଁ ଲାଗିଥିବ, ସେ ଆଉ କିଛି କାମ କରିବେ ନାହିଁ । ପୁଣି ଆମ ପୃଥିବୀ ବିଜୟରେ ସବୁଠୁଁ ବଡ଼ ବାଧା ହେଉଛନ୍ତି ରାଜା ପ୍ରଦ୍ୟୋତ । ଆମେ ଏମିତି କରିବା— ତାଙ୍କ ଝିଅ ସୁନ୍ଦରୀ ପଦ୍ମାବତୀଙ୍କ ସହିତ ଆମ ମହାରାଜାଙ୍କର ବିବାହ ପାଇଁ ପ୍ରସ୍ତାବ ପଠାଇବା । ଆଗରୁ ଥରେ ଆମେ ରାଜା ପ୍ରଦ୍ୟୋତଙ୍କ ପାଖକୁ ଏଇ ପ୍ରସ୍ତାବ ପଠାଇଥିଲୁ, ସେ ଉତ୍ତର ଦେଇଥିଲେ ଯେ, ଉଦୟନଙ୍କର ରାଣୀ ବାସବଦତ୍ତାଙ୍କ ପ୍ରତି ଅତ୍ୟଧିକ ପ୍ରେମ ଯୋଗୁ ସେ ତାଙ୍କ ଝିଅକୁ ଉଦୟନଙ୍କୁ ଦେବେ ନାହିଁ । ତେଣୁ ଆମେ ଏମିତି କରିବା— ରାଣୀ ବାସବଦତ୍ତାଙ୍କ ମିଛ ମଲା ଖବର ପ୍ରଚାର କରିଦେବା । ବାସବଦତ୍ତା ଯେ ପର୍ଯ୍ୟନ୍ତ ଅଛନ୍ତି, ଆମ ମହାରାଜାଙ୍କର ଦ୍ୱିତୀୟ ବିବାହ କେମିତି ହେବ ?

ରୁମଣ୍ୱାନ ଯୌଗନ୍ଧରାୟଣଙ୍କ ଯୋଜନା ସମ୍ପର୍କରେ ଶଙ୍କା ପ୍ରକାଶ କରି କହିଲେ— ପଦ୍ମାବତୀଙ୍କ ସହିତ ରାଜାଙ୍କୁ ବିବାହ କରାଇବା ପାଇଁ ଆମର ସେଇ ମିଛ ପ୍ରଚାର ଯଦି ଆମ ପାଇଁ କାଳହୁଏ ଓ ଆମେ ପାପରେ ଭାଗୀଦାର ହେଉ ? ତା'ଛଡ଼ା ଆମ ବାସବଦତ୍ତାଙ୍କ ମରିବା ଖବର ଶୁଣି ଆମ ରାଜା କ'ଣ କରିବେ ? ବଡ଼ ବଡ଼ ଧୀର ଓ ଗମ୍ଭୀର ପୁରୁଷମାନେ ସୁନ୍ଦରୀ ସ୍ତ୍ରୀଙ୍କ ବିରହ ସହିପାରନ୍ତି ନାହିଁ ।

ଯୌଗନ୍ଧରାୟଣ କହିଲେ— ଆମେ ଗୋପାଳକଙ୍କୁ ବିଶ୍ୱାସକୁ ନେଇ କାମ କରିବା । ଗୋପାଳକଙ୍କର ମଧ୍ୟ ଛୋଟ ଭଉଣୀଟିଏ ଅଛି, ତାକୁ ରାଜା ବହୁତ ସ୍ନେହ କରନ୍ତି । ସେ ରାଜାଙ୍କ ସହିତ ରହି ରାଜାଙ୍କ ମନ ଭୁଲାଇବ । ତମେ କୌଶାମ୍ବୀରେ ରହି ରାଜା ଯେମିତି କିଛି ଅନର୍ଥ କରି ନବସନ୍ତି, ସେଥିପ୍ରତି ଧ୍ୟାନରଖ ।

ଯୌଗନ୍ଧରାୟଣଙ୍କୁ ଦୃଢ଼ ନିଶ୍ଚିତ ଜାଣି ରୁମଣ୍ୱାନ ତାଙ୍କ ଯୋଜନାକୁ ଗ୍ରହଣ କରିନେଲେ । ଦୁଇ ମନ୍ତ୍ରୀ ଗୁପ୍ତରେ ଦୂତ ପଠାଇ ଗୋପାଳକଙ୍କୁ ଉଜ୍ଜୟିନୀରୁ ଡକାଇ ଆଣିଲେ । ପ୍ରଥମେ ନିଜ ଭଉଣୀର କଷ୍ଟହେବ ଜାଣି ଗୋପାଳକ ମନାକଲେ, ପୁଣି ଭିଣୋଇଙ୍କ ଉନ୍ନତି କଥା ଭାବି ରାଜି ହୋଇଗଲେ । ତିନିଜଣ ମିଶି ମନ୍ତ୍ରଣାକରି ଯୋଜନାକଲେ ଯେ, ହାତୀ ଧରିବା ବାହାନାରେ ରାଜାଙ୍କୁ

ମଗଧର ସୀମାନ୍ତ ଲାବାଣକ ଗାଁକୁ ନେଇଯିବେ । ସେଠାରେ ରାଜାଙ୍କୁ ହାତୀ ଧରିବା କାମରେ ଲଗାଇଦେଇ ଏଣେ ରାଣୀ ଅନ୍ତଃପୁରରେ ନିଆଁ ଲଗାଇଦେଇ ରାଣୀ ବାସବଦତ୍ତାଙ୍କୁ ଚୋରାଇକରି ନେଇ ପଦ୍ମାବତୀଙ୍କ ପାଖରେ ତାଙ୍କର ସଖୀରୂପେ ରଖାଇ ଦେବେ । ତା'ପରେ ରାଜାଙ୍କୁ ପଦ୍ମାବତୀଙ୍କ ସହ ବିବାହ କରିବାକୁ ରାଜି କରାଇବେ ।

ଯୋଜନା ଠିକ୍ ହୋଇଗଲା । ପରେ ସେମାନେ ମହାରାଜ ଉଦୟନଙ୍କ ପାଖକୁ ଆସିଲେ । ରୁମଣ୍ୱାନ ତାଙ୍କୁ କହିଲେ— ମହାରାଜ ! ଆମେ କିଛିଦିନ ଲାବାଣକ ଗାଁରେ ଯାଇ ରହିଲେ ଭଲ ହୁଅନ୍ତା । ସେ ଗାଁ ଖୁବ୍ ସୁନ୍ଦର ଓ ଶିକାର ପାଇଁ ପାଖରେ ବଡ଼ ଜଙ୍ଗଲ ବି ଅଛି । ଲାବାଣକ ମଗଧର ସୀମାକୁ ଲାଗିଥିବାରୁ ମଗଧ ରାଜା ଆମ ରାଜ୍ୟକୁ ଲୁଟ୍‌ପାଟ୍ କରୁଛି । ତେଣୁ ସେଇ ଗାଁରେ ରହିଲେ ହାତୀ ଶିକାର ଭଳି ମନୋରଞ୍ଜନ ସହିତ ସେଇ ଗାଁର ଜଗିବା ବ୍ୟବସ୍ଥା ବି କରି ହୁଅନ୍ତା ।

ରାଜା ମନ୍ତ୍ରୀମାନଙ୍କ କଥାରେ ରାଜି ହୋଇଗଲେ । ଲାବାଣକ ଯିବା ପାଇଁ ପ୍ରସ୍ତୁତି ସରିଯିବାରୁ ମହାରାଜ ଉଦୟନ ବିଶାଳ ସେନାବାହିନୀ ସହିତ ମନ୍ତ୍ରୀମାନଙ୍କୁ ଓ ବାସବଦତ୍ତାଙ୍କୁ ସଙ୍ଗରେ ନେଇ ସେଇ ଗାଁରେ ପହଞ୍ଚିଲେ । ମଗଧ ରାଜା ନିଜ ସୀମା ପାଖରେ ବତ୍ସ ରାଜାଙ୍କ ବିଶାଳ ସେନା ଆକ୍ରମଣ ଭୟରେ ଡରିଗଲେ । ସେ ତାଙ୍କର ସଦ୍‌ଭାବନା ପ୍ରକାଶ କରିବା ପାଇଁ ଦୂତ ପଠାଇଲେ । ଦୂତକୁ ମନ୍ତ୍ରୀ ଯୌଗନ୍ଧରାୟଣ ଉତ୍ତମ ସତ୍କାର କଲେ ।

ଲାବାଣକରେ ରହି ଉଦୟନଙ୍କ ମନ ଶିକାରରେ ଲାଗିଗଲା । ସେ ଦିନସାରା ଘଞ୍ଚ ଜଙ୍ଗଲ ଭିତରେ ବୁଲିବାକୁ ଲାଗିଲେ । ଏହା ଭିତରେ ଯୌଗନ୍ଧରାୟଣ, ରୁମଣ୍ୱାନ, ଗୋପାଳକ ଓ ବସନ୍ତକ ରାଣୀ ବାସବଦତ୍ତାଙ୍କୁ ବୁଝାଇ ସୁଝାଇ ସେମାନଙ୍କ ଯୋଜନାରେ ରାଜି କରାଇ ନେଲେ । ତା'ପରେ ଦିନେ ଯୌଗନ୍ଧରାୟଣ ରାଣୀଙ୍କୁ ବଦଳାଇ ତାଙ୍କୁ ବ୍ରାହ୍ମଣୀ କରାଇଲେ । ବସନ୍ତକକୁ କଣା ବ୍ରହ୍ମଚାରୀ କରାଇଲେ ଓ ନିଜକୁ ବୁଢ଼ା ବ୍ରାହ୍ମଣ ବେଶରେ ସଜାଇଲେ । ଏହିଭଳି ବେଶ ବଦଳାଇ ତିନିଜଣଯାକ ମଗଧ ଅଭିମୁଖେ ଚାଲିଲେ ।

ସେମାନେ ବାହାରିଯିବା ପରେ ବସନ୍ତକ ଲାବାଣକ ଗାଁରେ ଥିବା ରାଣୀଙ୍କ ନିବାସରେ ନିଆଁ ଲଗାଇଦେଇ ଘୋଷଣା କଲେ ଯେ, ରାଣୀ ବାସବଦତ୍ତା ଓ ମନ୍ତ୍ରୀ ବସନ୍ତକ ପୋଡ଼ିହୋଇ ମରିଗଲେ । ସାରା ଗାଁରେ ହାହାକାର ଖେଳିଗଲା ।

ଏଣେ ଯୌଗନ୍ଧରାୟଣ, ବସନ୍ତକ ଓ ବାସବଦତ୍ତା ଛଦ୍ମବେଶରେ ମଗଧର ରାଜଧାନୀ ପାଟଳୀପୁତ୍ର ନଗରରେ ପହଞ୍ଚିଲେ । ସେଠାରେ ସେମାନେ ରାଜପ୍ରାସାଦ ଆଡ଼କୁ ଗଲେ । ସେତିକିବେଳେ ରାଜକୁମାରୀ ପଦ୍ମାବତୀ ବଗିଚାରେ ବୁଲୁଥିଲେ । ବଗିଚାର ଦ୍ୱାର ମୁହଁରେ ଥିବା ଜଗୁଆଳୀ ଅଟକାଇ ଅଟକାଇ ବ୍ରାହ୍ମଣ ବେଶଧାରୀ ଯୌଗନ୍ଧରାୟଣ ରାଜକୁମାରୀଙ୍କ ସମ୍ମୁଖକୁ ଚାଲିଗଲେ । ସେତିକିବେଳେ ବଗିଚା ଦ୍ୱାର ମୁହଁରେ ବ୍ରାହ୍ମଣୀ ବେଶରେ ଠିଆ ହୋଇଥିବା ବାସବଦତ୍ତାଙ୍କୁ ଦେଖିବା ମାତ୍ରେ ପଦ୍ମାବତୀଙ୍କର ତାଙ୍କପ୍ରତି ସ୍ନେହଭାବ ଜନ୍ମିଲା ଓ ସେ ଜଗୁଆଳୀକୁ ରୋକିଦେଇ ବାସବଦତ୍ତା ଓ ବସନ୍ତକଙ୍କୁ ପାଖକୁ ଡାକିନେଲେ । ତା'ପରେ ସେ ଯୌଗନ୍ଧରାୟଣଙ୍କୁ ପଚାରିଲେ— ବ୍ରାହ୍ମଣ ଦେବତା ! ଏଇ ଝିଅଟି କିଏ, ଆଉ ଯାକୁ ମୋ ପାଖକୁ କାହିଁକି ଆଣିଛନ୍ତି ?

ଯୌଗନ୍ଧରାୟଣ କହିଲେ— ରାଜକୁମାରୀ ! ଏ ମୋ ଝିଅ । ଯା ନାଁ ଆବନ୍ତିକା । ଯା'ର ବିଳାସୀ ସ୍ୱାମୀ ଯାକୁ ଛାଡ଼ି ଚାଲିଯାଇଛି । ମୋର ନିବେଦନ, ରାଜକୁମାରୀ ଯାକୁ କିଛିଦିନ ପାଇଁ ପାଖରେ ରଖନ୍ତୁ । ସେଇ ଭିତରେ ମୁଁ ତା'ର ସ୍ୱାମୀକୁ ଖୋଜିନେଇ ଆସିବି । ଏ ମୋ ପୁଅ କାଣବଟୁ ବି ତା ପାଖରେ ଏଇଠି ରହିବ, ନହେଲେ ଝିଅର ମନ ଲାଗିବନି ।



ପଦ୍ମାବତୀ ତାଙ୍କୁ ଜଣେ ବୁଢ଼ା ବ୍ରାହ୍ମଣ ଓ ସେ ବିପଦରେ ପଡ଼ିଛନ୍ତି ଜାଣି ଦୟାରେ ବିଗଳିତ ହୋଇ ତାଙ୍କ କଥା ମାନିଗଲେ । ଯୌଗନ୍ଧରାୟଣ ବାସବଦତ୍ତା ଓ ବସନ୍ତକଙ୍କୁ ପଦ୍ମାବତୀଙ୍କ ପାଖରେ ଛାଡ଼ି ଲାବାଣକ ଫେରି ଆସିଲେ ।

ପଦ୍ମାବତୀ ବାସବଦତ୍ତାଙ୍କ ରୂପ, ଗୁଣ ଓ ପ୍ରଭାବଶାଳୀ ବ୍ୟକ୍ତିତ୍ୱ ଦେଖି ଭାବିବାକୁ ଲାଗିଲେ— ମନେହେଉଛି ଯେ କୌଣସି ବଡ଼ ଘରର ସ୍ତ୍ରୀଲୋକ । ବାସବଦତ୍ତା ମଧ୍ୟ ତାଙ୍କ ଭଦ୍ର ବ୍ୟବହାରରେ ପଦ୍ମାବତୀଙ୍କ ମନକୁ ଜୟକଲେ । ସେ ଉଦୟନଙ୍କ ଠାରୁ ଅମଳିନ ଫୁଲମାଳ ଗୁନ୍ଥିବା କଳା ଶିଖିଥିଲେ । ସେ ପଦ୍ମାବତୀଙ୍କୁ ଗୋଟିଏ କରି ମାଳା ଦେଇ ଖୁସି ରଖୁଥାନ୍ତି । କେବେ କେବେ ପଦ୍ମାବତୀଙ୍କର ମନେ ହେଉଥିଲା ସେ କେଉଁ ଦେବୀ, ଯିଏ ତାଙ୍କ ପରୀକ୍ଷା ନେବାକୁ ସାଧାରଣ ସ୍ତ୍ରୀଭାବରେ ତାଙ୍କ ପାଖରେ ରହିଛନ୍ତି । ତାଙ୍କ ମନରେ ବାସବଦତ୍ତାଙ୍କ ପ୍ରତି ଆଦର ଆହୁରି ବଢ଼ିଗଲା ଓ ସେ ବାସବଦତ୍ତାଙ୍କ ମନ ଭୁଲାଇବାକୁ ଓ ତାଙ୍କୁ ପ୍ରସନ୍ନ ରଖିବାକୁ ଯତ୍ନଶୀଳା ହେଲା । ଏହିପରି ପଦ୍ମାବତୀଙ୍କ ସାଥୀରେ ରହି ବାସବଦତ୍ତାଙ୍କୁ ନିଜ ପତି-ବିରହ ଦୁଃଖ ବେଶୀ ବାଧିଲା ନାହିଁ । ବସନ୍ତକ ମଧ୍ୟ ତାଙ୍କ ପିଲାଳିଆମି ଅଭିନୟ ଓ ମଜା ମଜା ଗପ ଶୁଣାଇ ପଦ୍ମାବତୀ ଓ ବାସବଦତ୍ତାଙ୍କ ମନକୁ ଭୁଲାଇବାକୁ ଲାଗିଲେ ।

ଏ ପଟରେ ଜଙ୍ଗଲରେ ଶିକାର ଖୋଜି କିଛିଦିନ ବୁଲି ବୁଲି ଉଦୟନ ଗାଁକୁ ଫେରି ଦେଖିଲେ ଯେ, ରାଜମହଲ ପୋଡ଼ି ଧ୍ୱଂସ ହୋଇଯାଇଛି ଓ ଲୋକମାନେ କାନ୍ଦୁଛନ୍ତି । ସେମାନେ ତାଙ୍କୁ ଜଣାଇଲେ ଯେ ପ୍ରାସାଦରେ ଲାଗିଥିବା ନିଆଁରେ ବସନ୍ତକ ଓ ବାସବଦତ୍ତା ପୋଡ଼ି ମରିଯାଇଛନ୍ତି । ଏଇକଥା ଶୁଣି ମହାରାଜା ମୂର୍ଚ୍ଛିତ ହୋଇ ପଡ଼ିଗଲେ । ଚେତାପାଇ ସେ କାନ୍ଦି କାନ୍ଦି ନିଜେ ନିଆଁକୁ ଡେଇଁପଡ଼ିବାକୁ ଉଦ୍ୟତ ହେଲେ । ଯୌଗନ୍ଧରାୟଣ ଓ ରୁମଣ୍ୱାନ ଇତ୍ୟାଦି ତାଙ୍କୁ ବୁଝାଇ ବୁଝାଇ ସମ୍ଭାଳିଲେ । କିଛି ସମୟ ପରେ ଉଦୟନ ସ୍ଥିର ମନରେ ଭାବିଲେ— ନାରଦ ମୁନି ତ ମୋତେ କହିଥିଲେ ମୋର ଓ ବାସବଦତ୍ତାର ପୁଅ ବିଦ୍ୟାଧରମାନଙ୍କର ରାଜା ହେବ । ନାରଦଙ୍କ କଥା ମିଛ କେମିତି ହେବ ? ପୁଣି ବାସବଦତ୍ତାଙ୍କ ଭାଇ ଗୋପାଳକ ସେତେ ଦୁଃଖୀ ମନେହେଉ ନାହିଁ ଓ ଯୌଗନ୍ଧରାୟଣ ଓ ରୁମଣ୍ୱାନ ଉପର ଠାଉରିଆ ଭାବେ ଦୁଃଖୀ ହେଲାଭଳି ଜଣା ପଡୁଛନ୍ତି । ଘଟଣା ସତ ହେଉକି ନହେଉ, ଏଥିରେ ଏଇ ଲୋକମାନଙ୍କର କିଛି ଚକ୍ରାନ୍ତ ଅଛି ଓ ଦେବୀ ବାସବଦତ୍ତା ଜୀବିତ ଅଛନ୍ତି ।

ଏଇଆ ଭାବି ଓ ମନ୍ତ୍ରୀମାନଙ୍କ ବୁଝାଇ ସୁଝାଇବାରେ ରଜା ଉଦୟନ କିଛି ପରିମାଣରେ ଆଶ୍ୱସ୍ତ ହେଲେ ।

ଲାବାଣକରେ ଘଟିଥିବା ଅଗ୍ନିକାଣ୍ଡର ଖବର ମଗଧର ଗୁପ୍ତଚରମାନେ ମଗଧର ରାଜାଙ୍କୁ ଜଣାଇଲେ । ସେ ଚିନ୍ତାକଲେ— ଯୌଗନ୍ଧରାୟଣ ପ୍ରଥମେ ମୋ ଝିଅର ହାତ ରାଜା ଉଦୟନ ପାଇଁ ମାଗିଥିଲେ । ମୁଁ ବାସବଦତ୍ତା ଯୋଗୁଁ ମନାକରି ଦେଇଥିଲି । ଏଇକ୍ଷଣି ପଦ୍ମାବତୀ ସହିତ ଉଦୟନର ବାହାଘର କରି ବତ୍ସଦେଶ ସହିତ ବନ୍ଧୁତା କରିବା ପାଇଁ ଭଲ ସୁଯୋଗ ମିଳିଛି । ଏଇଆ ଭାବି ସେ ଯୌଗନ୍ଧରାୟଣଙ୍କ ପାଖକୁ ଦୂତ ଦ୍ୱାରା ବିବାହ ପ୍ରସ୍ତାବ ପଠାଇଲେ । ଯୌଗନ୍ଧରାୟଣ ଉଦୟନଙ୍କୁ ବିବାହ କରିବା ପାଇଁ ରାଜି କରାଇଲେ ଓ ମଗଧ ରାଜାଙ୍କୁ ସ୍ୱୀକୃତି ପଠାଇଦେଲେ ।

ମହାରାଜା ଉଦୟନ ବିବାହ କରିବା ପାଇଁ ପ୍ରସ୍ତୁତ ହେଲେ କିନ୍ତୁ ତାଙ୍କ ମନ ବାସବଦତ୍ତାଙ୍କ ଠାରେ ରହିଥିଲା । ବିବାହ ବେଶରେ ରତିହୀନ କାମଦେବଙ୍କ ପରି ସେ ମନେହେଉଥିଲେ ।

ବାସବଦତ୍ତା ମହାରାଜାଙ୍କର ଦ୍ୱିତୀୟ ବିବାହ କଥା ଶୁଣି ବହୁତ ଦୁଃଖୀହେଲେ କିନ୍ତୁ ବସନ୍ତକ ତାଙ୍କୁ ବୁଝାଇ ସୁଝାଇ ବୋଧଦେଇ ଶାନ୍ତ କରାଇଲେ । ସେ ବି ପଦ୍ମାବତୀଙ୍କୁ ନବବଧୂ ବେଶରେ ସଜାଇବା ପାଇଁ ଅମଳିନ ଫୁଲମାଳ ଗୁନ୍ଥିଦେଲେ ଓ ଚନ୍ଦନ ଘୋରିଦେଲେ । ସେ ତାଙ୍କୁ ଫୁଲମାଳ

ପିନ୍ଧାଇ ବେଶ ଓ ଚନ୍ଦନରେ ବେଶକରି ତାଙ୍କ ସୌନ୍ଦର୍ଯ୍ୟକୁ ବହୁଗୁଣିତ କରିଦେଲେ । ବିବାହ ବେଳେ ରାଜା ଉଦୟନ ପଦ୍ମାବତୀଙ୍କୁ ଅମଳିନ ମାଳ ପିନ୍ଧିଥିବା ଓ ଚନ୍ଦନ ବେଶ ହୋଇଥିବା ଦେଖି ଚିନ୍ତାକରି ରହିଗଲେ ଯେ ବାସବଦତ୍ତା ବ୍ୟତୀତ ଆଉ କିଏ ଏମିତି ମାଳ ଓ ଚନ୍ଦନ ତିଆରି କରିପାରେ ?

ବିବାହ ବିଧି ସମ୍ପନ୍ନ ହେଲାପରେ ସେଇ ସ୍ଥାନରେ ଅଗ୍ନିକୁ ସାକ୍ଷୀରଖି ଯୌଗନ୍ଧରାୟଣ ମଗଧରାଜଙ୍କୁ ଶପଥ କରାଇଲେ ଯେ, ସେ ତାଙ୍କ ଜାମାତା ବତ୍ସରାଜ ଉଦୟନଙ୍କୁ କୌଣସି ପରିସ୍ଥିତିରେ ବିରୋଧ କରିବେନାହିଁ ।

ଉଦୟନ ଓ ପଦ୍ମାବତୀଙ୍କ ବିବାହ ପରେ ମଗଧର ରାଣୀଅନ୍ତଃପୁରରେ କାଳେ ଉଦୟନ ବାସବଦତ୍ତାଙ୍କୁ ଦେଖି ରହସ୍ୟ ଜାଣିଦେବେ, ଏଇ ଆଶଙ୍କାରେ ଯୌଗନ୍ଧରାୟଣ ମଗଧରାଜଙ୍କୁ ସଙ୍ଗେ ସଙ୍ଗେ ଝିଅ ବିଦାକରିବାକୁ ଅନୁରୋଧ କଲେ । ମଗଧରାଜ ବି ତାଙ୍କ କଥାରେ ରାଜି ହୋଇଗଲେ । ସେ ଅସଂଖ୍ୟ ଉପହାର ଓ ଦାସ-ଦାସୀଙ୍କ ସହିତ ଝିଅକୁ ବିଦାକଲେ । ଉଦୟନ, ପଦ୍ମାବତୀ ଓ ଯୌଗନ୍ଧରାୟଣ ପ୍ରଭୃତି ମନ୍ତ୍ରୀମାନେ ମଗଧରୁ କୌଶାମ୍ବୀ ଅଭିମୁଖେ ବାହାରିଲେ । ପଦ୍ମାବତୀ ଦେଇଥିବା ଗୋଟିଏ ସୁନ୍ଦର ରଥ ଚଢ଼ି ବାସବଦତ୍ତା ଓ ବସନ୍ତକ ଛଦ୍ମବେଶରେ ବରଯାତ୍ରୀ ଦଳଙ୍କ ସହ ସେନା ବାହିନୀରେ ପଛେ ପଛେ ଗଲେ ।

ମଗଧ ସୀମା ପାରହୋଇ ବରଯାତ୍ରୀ ଦଳ ପ୍ରଥମେ ଲାବାଣକ ଗାଁକୁ ଆସିଲେ । ବତ୍ସରାଜ ପଦ୍ମାବତୀଙ୍କୁ ନେଇ ସୁନ୍ଦର ଭାବରେ ସଜା ହୋଇଥିବା ନିଜ ମହଲକୁ ଚାଲିଗଲେ । ବାସବଦତ୍ତା ନିଜ ସାଥିରେ ଆସିଥିବା ସେବକମାନଙ୍କର ରହିବା ବ୍ୟବସ୍ଥା କରି ରାତି ଅଧରେ ନିଜ ଭାଇ ଗୋପାଳକଙ୍କ ଶିବିରକୁ ଚାଲିଗଲେ ।

ଗୋପାଳକଙ୍କୁ ଦେଖିବା ମାତ୍ରେ ବାସବଦତ୍ତା ଭାଙ୍ଗିପଡ଼ିଲେ ଓ ଭାଇଙ୍କ ଛାତିରେ ମଥାରଖି କାନ୍ଦିବାକୁ ଲାଗିଲେ । ସେତିକିବେଳେ ଯୌଗନ୍ଧରାୟଣ ଓ ରୁମଣ୍ୱାନ ମଧ୍ୟ ସେଠାରେ ପହଞ୍ଚିଲେ । ସମସ୍ତେ ବାସବଦତ୍ତାଙ୍କ ଧୈର୍ଯ୍ୟ ଓ ସାହସ ଓ ସେମାନଙ୍କୁ ସହାୟତା ଦେଇଥିବାରୁ ତାଙ୍କର ପ୍ରଶଂସା କଲେ । ବାସବଦତ୍ତା କିଛି ପରିମାଣରେ ଆଶ୍ୱସ୍ତ ହେଲେ ।

ଏହି ସମୟରେ ବାସବଦତ୍ତାଙ୍କ ଶିବିରରେ ଜଗୁଆଳୀ ପଦ୍ମାବତୀଙ୍କ ପାଖକୁ ଯାଇ କହିଲେ— ଆପଣଙ୍କ ସାଥୀରେ ଆସିଥିବା ବ୍ରାହ୍ମଣୀ, ଆବନ୍ତିକା ଆସିବା ମାତ୍ରେ ଉଜ୍ଜୟିନୀର ରାଜକୁମାର ଗୋପାଳକଙ୍କ ଶିବିରକୁ ଚାଲି ଯାଇଛନ୍ତି ।

ପଦ୍ମାବତୀ ଶଙ୍କିତ ହୋଇ କହିଲେ— ଆବନ୍ତିକାଙ୍କୁ କୁହ ସେ ତାଙ୍କ ଶିବିରରେ ରୁହନ୍ତୁ । ତାଙ୍କ ବାପା ତାଙ୍କୁ ମୋ ପାଖରେ ରଖି ଯାଇଛନ୍ତି । ଏମିତିକା ନକହି ତାଙ୍କର ଯୁଆଡ଼େ ଇଚ୍ଛା ସିଆଡ଼େ ଯିବା ଭଲ କଥା ନୁହେଁ ।

ଜଗୁଆଳୀ ଚାଲିଗଲା ପରେ ମହାରାଜ ଉଦୟନ ପଦ୍ମାବତୀଙ୍କୁ ପଚାରିଲେ— ଏଇ ଅମଳିନ ଫୁଲମାଳା ଓ ଏଇ ଚନ୍ଦନ ଚୋପା ତମକୁ ଏମିତି ସୁନ୍ଦର ଭାବରେ କିଏ ପିନ୍ଧାଇଛି ମୋତେ କୁହତ ?

ପଦ୍ମାବତୀ ଉତ୍ତର ଦେଲେ— ଜଣେ ବ୍ରାହ୍ମଣ ତାଙ୍କ ଝିଅ ଆବନ୍ତିକାଙ୍କୁ ମୋ ପାଖରେ ଆଶ୍ରିତା ରୂପେ ଛାଡ଼ି ଯାଇଛନ୍ତି । ଯେ ସେଇ ଆବନ୍ତିକାର କଳା ।

ପଦ୍ମାବତୀଙ୍କ ମୁହଁରୁ କଥା ସରିଛି କି ନାହିଁ, ଉଦୟନ ଗୋପାଳକଙ୍କ ଶିବିର ଆଡ଼କୁ ଦୌଡ଼ିଲେ । ଶିବିରରେ ପହଞ୍ଚି ଶିବିର ଭିତରେ ଗୋପାଳକଙ୍କ ସହିତ ବାସବଦତ୍ତା, ଯୌଗନ୍ଧରାୟଣ, ରୁମଣ୍ୱାନ ଓ ବସନ୍ତକ ବସିଥିବାର ସେ ଦେଖିଲେ । ବାସବଦତ୍ତା ଗ୍ରହଣ ମୁକ୍ତ ଚନ୍ଦ୍ରମା ପରି ଦିଶୁଥିଲେ ।

ବାସବଦତ୍ତାଙ୍କୁ ସାଧାରଣ ବ୍ରାହ୍ମଣୀ ବେଶରେ ଦେଖି ରାଜା ଉଦୟନ ଶୋକରେ ବ୍ୟାକୁଳ ହୋଇ ଅଚେତ ଗଲେ ଓ ଭୂମିଉପରେ ଢଳି ପଡ଼ିଲେ । ବାସବଦତ୍ତା ମଧ୍ୟ ହଠାତ୍ ଉଦୟନଙ୍କୁ ସାମ୍ନା



ସାମ୍ନା ଦେଖି କମ୍ପିଉଠି ମୂର୍ଚ୍ଛା ଚାଲିଗଲେ । ଚେତାପାଇ ସ୍ୱାମୀ-ସ୍ତ୍ରୀ ଉଭୟ ଉଭୟଙ୍କୁ ଚାହିଁ କାନ୍ଦିବାକୁ ଲାଗିଲେ । ଯୌଗନ୍ଧରାୟଣ, ରୁମଣ୍ୱାନ, ବସନ୍ତକ ଓ ଗୋପାଳକ ମଧ୍ୟ ରଜା ଓ ରାଣୀଙ୍କ କାନ୍ଦିବା ଦେଖି କାନ୍ଦି ପକାଇଲେ ।

ରାଜା ତାଙ୍କୁ ଏହିପରି ହଠାତ୍ ଛାଡ଼ି ଚାଲିଯିବାରୁ ପଦ୍ମାବତୀ ବି ରାଜାଙ୍କ ପଛେ ପଛେ ସେଠାରେ ପହଞ୍ଚିଗଲେ ସେଠାରେ ଉଦୟନ ଓ ବାସବଦତ୍ତାଙ୍କୁ ପରସ୍ପରକୁ ଚାହିଁ କାନ୍ଦୁଥିବା ଦେଖି ସେ ମଧ୍ୟ ଶୋକାକୁଳ ହୋଇଗଲେ ।

ଯୌଗନ୍ଧରାୟଣ କହିଲେ— ଏଇ ସବୁଥିରେ ମହାରାଣୀ ବାସବଦତ୍ତାଙ୍କର କୌଣସି ଦୋଷନାହିଁ । ମଗଧ ରାଜକୁମାରୀଙ୍କ ସହିତ ବିବାହ ହେଲେ ଆପଣଙ୍କ ହୃତ ରାଜ୍ୟ ଆପଣ ଫେରିପାଇବେ, ଏଇଆ ବିଚାରକରି ମୁଁ ହିଁ ସବୁ କାଣ୍ଡ କରିଛି । ପ୍ରବାସ ସମୟରେ ମହାରାଣୀଙ୍କ ଚରିତ୍ରର ସାକ୍ଷୀ ହେଉଛନ୍ତି ସ୍ୱୟଂ ଦେବୀ ପଦ୍ମାବତୀ ।

ପଦ୍ମାବତୀ ରୁଦ୍ଧ କଣ୍ଠରେ କହିଲେ— ମହାରାଣୀଙ୍କ ସୁଚରିତ୍ରତା ସିଦ୍ଧ କରିବା ପାଇଁ ମୁଁ ନିଜେ ନିଆଁରେ ପଶିପାରେ ।

ରାଜ ଉଦୟନ କହିଲେ— ଏଇସବୁ ପାଇଁ ମୁଁ ହେଉଛି ଏକମାତ୍ର ଅପରାଧୀ । ମୋରି ପାଇଁ ମହାରାଣୀଙ୍କୁ ଏତେ ସବୁ କଷ୍ଟ ସହିବାକୁ ପଡ଼ିଲା । ମୋର ନିଆଁରେ ପଶିବା ଉଚିତ ।

ବାସବଦତ୍ତା କହିଲେ— ମହାରାଜଙ୍କ ମନରେ ଯଦି ମୋ ଉପରେ କୌଣସି ସନ୍ଦେହ ଥାଏ, ତା'ହେଲେ ମୁଁ ନିଆଁରେ ପଶିଯିବି ।

ଗୋପାଳକ ତିନିଜଣଯାକଙ୍କୁ ଅନର୍ଥ ଘଟାଇବାରୁ ନିବୃତ୍ତ କରାଇଲେ । ଧୀରେ ଧୀରେ ସମସ୍ତେ ପ୍ରକୃତିସ୍ଥ ହେଲେ ।

ମଗଧ ରାଜାଙ୍କୁ ବାସବଦତ୍ତା ବଞ୍ଚିଥିବା ଖବର ତାଙ୍କ ଗୁପ୍ତଚରଠୁଁ ମିଳିଲା । ସଙ୍ଗେ ସଙ୍ଗେ ସେ ବତ୍ସରାଜାଙ୍କ ପାଖକୁ ଦୂତ ପଠାଇଲେ ଯେ ତାଙ୍କ ମନ୍ତ୍ରୀମାନେ ତାଙ୍କୁ ଧୋକା ଦେଇଛନ୍ତି । ଏଣିକି ଏମିତି କିଛି ନହେଉ, ଯେଉଁଥିରେ ତାଙ୍କ ଝିଅ ଦୁଃଖ ପାଇବ ।

ବତ୍ସରାଜ ସେଇ ଦୂତକୁ ନିଜେ ଯାଇ ପଦ୍ମାବତୀଙ୍କୁ ଭେଟିବାକୁ କହିଲେ ।

ପଦ୍ମାବତୀ ତାଙ୍କ ଅନ୍ତଃପୁର କକ୍ଷରୁ ବାହାରକୁ ଆସି ସେଇ ଦୂତକୁ ଭେଟି କହିଲେ— ଭଦ୍ର ! ମୋର ହୋଇ ମୋର ବାପ-ମା'ଙ୍କୁ କହିବ ଯେ ସେମାନେ ମୋ ପାଇଁ କିଛି ଚିନ୍ତା କରିବେ ନାହିଁ । ଆର୍ଯ୍ୟ ପୁତ୍ରଙ୍କର ମୋ ପ୍ରତି ବହୁତ ସ୍ନେହ । ମହାରାଣୀ ବାସବଦତ୍ତା ମୋତେ ତାଙ୍କୁ ଛୋଟ ଭଉଣୀ ଭଳି ଦେଖନ୍ତି । ମୋତେ ଯଦି ସେମାନେ ସୁଖୀ ଦେଖିବାକୁ ଚାହାଁନ୍ତି, ତା'ହେଲେ ବତ୍ସଦେଶ ସହ ଶତ୍ରୁତା ହେଲାଭଳି କୌଣସି କାମ ନ କରନ୍ତୁ ।

ତା'ପରେ ପଦ୍ମାବତୀ ହସି ହସି ଦୂତକୁ ବିଦାୟ ଦେଲେ ।

ଦୁଇଦିନ ପରେ ମଗଧରାଜାଙ୍କ ଦୂତ ପୁଣି ଆସି ପହଞ୍ଚିଲା । ପଦ୍ମାବତୀଙ୍କ ବାପା-ମା ପଦ୍ମାବତୀଙ୍କ ପଠାଇଥିବା ଖବରରେ ଖୁବ୍ ସନ୍ତୁଷ୍ଟ ହେଲେ । ସେ ଉଦୟନଙ୍କୁ ସବୁପ୍ରକାର ସହାୟତା କରିବା ପ୍ରତିଶ୍ରୁତି ଦେଇ ଦୂତ ପଠାଇଦେଲେ ।

ଏଥର ଲାବାଣକ ଗାଁ ଛାଡ଼ି ରାଜଧାନୀ କୌଶାମ୍ବୀକୁ ଫେରିଯିବା ଉଚିତ ଓ ମହାରାଜା ଉଦୟନ ଦିଗ୍‌ବିଜୟରେ ବାହାରିବା ଉଚିତ ବୋଲି ସମସ୍ତେ ମନେକଲେ । ସେଇ ସମୟରେ ଉଜ୍ଜୟିନୀରୁ ରାଜା ମହାସେନଙ୍କ ଦୂତ ମଧ୍ୟ ଆସିଗଲା । ମହାସେନ ଦୂତ ହାତରେ ଖବର ଦେଇଥିଲେ— ମୋ ଝିଅ ବାସବଦତ୍ତା ତା ସ୍ୱାମୀର ଉନ୍ନତି ପାଇଁ ବଡ଼ ତ୍ୟାଗ କରିଛି, ମୋ ମଥାକୁ ଉଚ୍ଚ କରିଛି ।

ଯେଉଁ ପ୍ରୟୋଜନରେ ମୋ ଝିଅ ଏତେ ବଡ଼ ତ୍ୟାଗ କରିଛି, ଉଦୟନ ସେଥିପାଇଁ ଉଦ୍ୟମ ଆରମ୍ଭ କରନ୍ତୁ ।

ରାଜା ଉଦୟନ କୌଶାମ୍ବୀକୁ ଫେରି ଆସିଲେ ଓ ତାଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଦିଆଗଲା । ଯେମିତି ବିଦେଶ ଯାଇଥିବା ସ୍ତ୍ରୀଟିଏ ତା' ସ୍ୱାମୀ ଫେରୁଥିବାରୁ ଘରକୁ ଯେମିତି ସଜାଇ ଥାଏ ନଗରକୁ ସେମିତି ସଜା ଯାଇଥିଲା । ସବୁ ଘରଗୁଡ଼ିକର ଝରକା ଖୋଲାଥିଲା । ଯେମିତି ନିଜ ରାଜାଙ୍କୁ ନିରେଖିବାକୁ ନଗର ରମଣୀର ଆଖି ଖୋଲା ରହିଥିଲା । ପ୍ରତି ଘରର ସମ୍ମୁଖରେ ଦୁଇଟି ଲେଖାଏଁ ପୂର୍ଣ୍ଣକୁମ୍ଭ ଶୋଭା ପାଉଥିଲା । ସାରା ନଗରୀ ଯେମିତି ଖିଲିଖିଲି ହୋଇ ହସୁଥିଲା ।

କୌଶାମ୍ବୀ ଫେରିଆସି ମହାରାଜା ଉଦୟନ କିଛିଦିନ ଆମୋଦ ପ୍ରମୋଦରେ କଟାଇଲେ । ତା'ପରେ ଯୌଗନ୍ଧରାୟଣଙ୍କ ପ୍ରେରଣାରେ ଦିଗ୍‌ବିଜୟ କରିବାପାଇଁ ଯିବାକୁ ମନ ବଳାଇଲେ । ମହାରାଜ ଯୁଦ୍ଧ ପାଇଁ ଯିବାକୁ ପ୍ରସ୍ତୁତ ହେବାରୁ ଦୁଇ ରାଣୀ– ବାସବଦତ୍ତା ଓ ପଦ୍ମାବତୀଙ୍କ ମନ କାତରହେଲା । ବତ୍ସରାଜ ସେମାନଙ୍କୁ କହିଲେ– ମଣିଷ ନିଜ ପୁରୁଷାର୍ଥ ବଳରେ ନିଶ୍ଚୟ ବିଜୟ ଲାଭକରିବ ।

ତା'ପରେ ସେ ତାଙ୍କର ବିଜୟ ଅଭିଯାନ ଆରମ୍ଭକଲେ । ସର୍ବପ୍ରଥମେ ସେ ତାଙ୍କର ପ୍ରବଳ ଶତ୍ରୁ ବାରାଣସୀର ରାଜା ବ୍ରହ୍ମଦତ୍ତଙ୍କ ଉପରେ ଆକ୍ରମଣ କଲେ । ପୂର୍ବରୁ ଗୁପ୍ତଚରମାନଙ୍କ ଦ୍ୱାରା ଯୌଗନ୍ଧରାୟଣ ବାରାଣସୀରେ ଏମିତି ଜାଲ ବିଛାଇଥିଲେ ଯେ, ବ୍ରହ୍ମଦତ୍ତଙ୍କ ଯୁଦ୍ଧ ପ୍ରସ୍ତୁତି ଓ ସବୁ କୌଶଳ ଆଗରୁ ଜଣାପଡ଼ି ଯାଇଥିଲା । ଯୌଗନ୍ଧରାୟଣଙ୍କ କୂଟନୀତି ଆଗରେ ବ୍ରହ୍ମଦତ୍ତଙ୍କ ସାରା ଯୋଜନା ପାଣି ଫୋଟକା ଭଳି ମିଳାଇଗଲା ଓ ତାଙ୍କୁ ବାଧ୍ୟହୋଇ ବିନା ଯୁଦ୍ଧରେ ମହାରାଜ ଉଦୟନଙ୍କ ନିକଟରେ ଆତ୍ମସମର୍ପଣ କରିବାକୁ ପଡ଼ିଲା । ତା'ପରେ ବତ୍ସରାଜ ବୋଳ ଦେଶର ରାଜାଙ୍କୁ ପରାସ୍ତକଲେ ଓ କଳିଙ୍ଗକୁ ଧ୍ୱଂସକରି ମହେନ୍ଦ୍ର ପର୍ବତ ଉପରେ ବିଜୟ ପତାକା ଉଡ଼ାଇଲେ । ଏହିଭଳି ଦକ୍ଷିଣରେ ବିଜୟ ଲାଭକରି ସେ ଉତ୍ତର ଦିଗକୁ ଗଲେ । ସିନ୍ଧୁ ଓ କାମରୂପର ରାଜାଙ୍କୁ ମଧ୍ୟ ଜୟକଲେ ।

ଏହିଭଳି ସାରା ପୃଥିବୀ ଜୟକରି ବତ୍ସରାଜ ମଗଧ ରାଜାଙ୍କ ରାଜଗୃହରେ ପହଞ୍ଚିଲେ । ମଗଧରାଜ ଦୁଇ ରାଣୀଙ୍କ ସହ ତାଙ୍କୁ ଦେଖି ବଡ଼ ଆନନ୍ଦିତ ହେଲେ । ରାଜା ଶ୍ୱଶୁର ଘରେ କେତେଦିନ କଟାଇ ତାଙ୍କ ରାଣୀ, ମନ୍ତ୍ରୀ ଓ ସେନାମାନଙ୍କ ସହ କୌଶାମ୍ବୀ ଫେରିଆସିଲେ ।

# ପିଙ୍ଗଳିକାର ଆତ୍ମକଥା

ଦିନେ ବତ୍ସରାଜା ଉଦୟନ ଦରବାରରେ ବସିଥିଲେ । ପ୍ରତିହାରୀ ଆସି ନିବେଦନ କଲା– ମହାରାଜ ଜଣେ ଗରୀବ ବ୍ରାହ୍ମଣୀ ତା' ଦୁଇ ପୁଅଙ୍କ ସହିତ ଆପଣଙ୍କୁ ଦର୍ଶନ କରିବାକୁ ଆସିଛି ।

ରାଜା କହିଲେ– ତାଙ୍କୁ ତୁରନ୍ତ ନେଇଆସ ।

ରାଜାଙ୍କ ହୁକୁମ ପରେ ଜଣେ ବ୍ରାହ୍ମଣୀ ରାଜାଙ୍କ ଆଗରେ ଆସି ପହଞ୍ଚିଲା । ତା'ର ଲୁଗାପଟା ପତଳା ଥିଲା ଓ ହଳଦିଆ ପଡ଼ିଯାଇଥିଲା ଓ ତା ଲୁଗାପଟା ଧୂଳି-ମଇଳାରେ ବୋଦଟ ଦେଖାଯାଉଥିଲା । ସେ ତା'ର ଦୁଇଟି କ୍ଷୀରଖିଆ ପୁଅଙ୍କୁ କୋଳ କରିଥିଲା । ରାଜାଙ୍କୁ ପ୍ରଣାମ କରି ସେ କହିଲା– ମହାରାଜ ! ମୁଁ କୁଳୀନ ଘରର ବ୍ରାହ୍ମଣୀ । ଭାଗ୍ୟକୁ ମୁଁ ଏବେକ୍ଷଣି ବଡ଼ ଦୁର୍ଗତି ଭୋଗୁଛି । ମୋର ଏଇ ଦୁଇଟି ଯାଆଁଳା ପୁଅ । ମୋର ଖାଇବା ପିଇବାର କିଛି ଠିକଣା ନଥିବାରୁ ମୁଁ ଏମାନଙ୍କୁ ମୋ କ୍ଷୀରବି ପିଆଇ ପାରୁନାହିଁ । ଆପଣ ଶରଣବତ୍ସଳ ଅଟନ୍ତି । ମୁଁ ଆପଣଙ୍କ ଆଶ୍ରାକୁ ଆସିଛି ।



ଏଇ କଥାଶୁଣି ଦୟାଳୁ ରଜା ପ୍ରତିହାରୀକୁ ହୁକୁମ ଦେଲେ– ଏଇ ବ୍ରାହ୍ମଣୀକୁ ଦେବୀ ବାସବଦତ୍ତାଙ୍କ ପାଖରେ ପହଞ୍ଚାଇ ଦିଅ । ସେ ତାଙ୍କ ପାଖରେ ରହିବ ।

ଦେବୀ ବାସବଦତ୍ତା ସେଇ ବ୍ରାହ୍ମଣୀକୁ ବଡ଼ ମାନ-ସମ୍ମାନଦେଇ ନିଜ ପାଖରେ ରଖିନେଲେ । ତା'ର ଯାଆଁଳା ପୁଅଙ୍କୁ ଦେଖି ଭାବିଲେ– ଯାହାର ଖାଇବା ପିନ୍ଧିବା ଠିକଣା ନାହିଁ, ତା'ର ଦୁଇଟା ପୁଅ । ମୋର ଗୋଟିଏ ବି ନାହିଁ ।

ବହୁତ ଦିନପରେ ଭଲ ଖାଇବାକୁ ଓ ଭଲ ପିନ୍ଧିବାକୁ ପାଇ ବ୍ରାହ୍ମଣୀ ବଡ଼ ଖୁସିହେଲା । ସେ ରାଣୀ ବାସବଦତ୍ତାଙ୍କ ପାଖରେ ରହି ତାଙ୍କୁ ଦୈନିକ ନୂଆ ନୂଆ ଗପ ଶୁଣାଇ ତାଙ୍କ ମନୋରଞ୍ଜନ କରିବାକୁ ଲାଗିଲା ।

ଦିନେ ରାଣୀ ପିଙ୍ଗଳିକା ନାମକ ସେଇ ବ୍ରାହ୍ମଣୀକୁ କହିଲେ– ତମ ନିଜ କଥାଟି କୁହ । ତମେ କେଉଁଠିକାର ଓ କେମିତି ବିପଦରେ ପଡ଼ିଲ ?

ପିଙ୍ଗଳିକା କହିଲା– ମହାରାଣୀ ! ମୁଁ ମାଳବ ଦେଶର ବ୍ରାହ୍ମଣ ଅଗ୍ନିଦତ୍ତଙ୍କ ବୋହୂ । ମୋ ଶ୍ୱଶୁରଙ୍କ ଘର ଧନ ସମ୍ପତ୍ତିରେ ଭରି ହୋଇଥିଲା । ତାଙ୍କର ଦୁଇ ପୁଅ ଥିଲେ– ଶଙ୍କର ଦତ୍ତ ଓ ଶାନ୍ତିକର । ବଡ଼ ଶଙ୍କରଦତ୍ତଙ୍କ ସହିତ ମୋର ବାହାଘର ହୋଇଥିଲା । ମୋ ଦିଅର ଶାନ୍ତିକର ପିଲାଦିନେ ପାଠ ପଢ଼ିବାକୁ ଘରଛାଡ଼ି ଯାଇଛନ୍ତି ଯେ ଆଜି ପର୍ଯ୍ୟନ୍ତ ତାଙ୍କ ପତ୍ତା ମିଳୁନାହିଁ । ମୋର କେତେଟି ବର୍ଷ ଶ୍ୱଶୁର ଘରେ ଖୁବ୍ ସୁଖରେ କଟିଗଲା । ବୃଦ୍ଧାବସ୍ଥା ହେତୁ ମୋ ଶ୍ୱଶୁର ମରିଗଲେ ଓ ମୋ ଶାଶୂ ତାଙ୍କ ଚିତାରେ ସତୀ ହୋଇଗଲେ । ମୋ ସ୍ୱାମୀଙ୍କର ତାଙ୍କ ବାପା-ମାଙ୍କ ପ୍ରତି ବହୁତ ସ୍ନେହ ଥିଲା । ଶାଶୂ ଓ ଶ୍ୱଶୁର ନ ରହିବାରୁ ସେ ମୋତେ ଛାଡ଼ି ତୀର୍ଥ କରିବାକୁ ଚାଲିଗଲେ । ପରେ ଜଣା ପଡ଼ିଲା ଯେ, ସେ ସରସ୍ୱତୀ ନଦୀରେ ତାଙ୍କ ଜୀବନ ଦେଇଛନ୍ତି ।

ସ୍ୱାମୀଙ୍କ ଶୋକରୁ ମୁଁ ବଡ଼ କଷ୍ଟରେ ନିଜକୁ ସମ୍ଭାଳି ନେଉଥିବାବେଳେ ଦଳେ ଡକାୟତ ଆମ ଗାଁ ଉପରେ ଆକ୍ରମଣ କରିଦେଲେ । ଗାଁରେ ତ୍ରାହି ତ୍ରାହି ଡାକ ପଡ଼ିଗଲା । ମୁଁ ଘରଛାଡ଼ି ଦୁଇ ପୁଅଙ୍କୁ କାଖେଇ ନିଜର ସତୀତ୍ୱ ରକ୍ଷା କରିବା ପାଇଁ ତିନିଜଣ ବ୍ରାହ୍ମଣୀଙ୍କ ସହିତ କିଛି ଲୁଗାପଟା ନେଇ ପଳାଇଆସିଲି । ଆମ ଗାଁ ଲୁଟ୍‌ପାଟ୍‌ରେ ନଷ୍ଟ ହୋଇଗଲା । ମାସେ କାଳ ମୁଁ ମୂଲଲାଗି କୌଣସି ମତେ ପେଟ ପୋଷିଲି । ତା'ପରେ ଶୁଣିଲି ବତ୍ସଦେଶର ରାଜା ଦୁଃଖୀ ଗରୀବଙ୍କୁ ବହୁତ ଦାନ ଦିଅନ୍ତି, ତେଣୁ ଏଠାକୁ ଚାଲି ଆସିଲି । ମାଇପି-ଲାଜ ଛାଡ଼ି ମୁଁ ରାଜାଙ୍କୁ ମୋ ଦୁଃଖ ଜଣାଇଲି ଆଉ ମୋତେ ଆପଣଙ୍କ ପାଖରେ ଆଶ୍ରା ମିଳିଲା । ଏବେକ୍ଷଣି ମୋ ଶ୍ୱଶୁର ଘରେ କେହି ନାହାଁନ୍ତି କି ବାପଘରେ ବି କେହି ନାହାଁନ୍ତି । ମୋ ଦିଅର ଶାନ୍ତିକରଙ୍କରତ କୌଣସି ପତ୍ତା ମିଳୁନାହିଁ ।

ରାଣୀ କହିଲେ– ଶାନ୍ତିକର ନାମରେ ଜଣେ ବିଦେଶୀ ପୁରୋହିତ ଏଇ ନଗରରେ ରହୁଛନ୍ତି ବୋଲି ମୁଁ ଶୁଣିଛି । ସେ ତୁମର ଦିଅର ନୁହନ୍ତିତ !

କଥା କହୁ କହୁ ରାତି ହୋଇଯାଇଥିଲା । ତା'ପରଦିନ ସକାଳେ ରାଣୀ ପୁରୋହିତ ଶାନ୍ତିକରଙ୍କୁ ଡକାଇଲେ ଓ ତାଙ୍କୁ ତାଙ୍କ ବଂଶ ଓ ଘରଦ୍ୱାର ବିଷୟରେ ପଚାରିଲେ । ତାଙ୍କର ଉତ୍ତରରୁ ଜଣାଗଲା ଯେ, ସେ ହିଁ ପିଙ୍ଗଳିକାର ଦିଅର । ରାଣୀ ତାଙ୍କୁ ପିଙ୍ଗଳିକାକୁ ଦେଖାଇ କହିଲେ– ସେ ତମର ଭାଉଜ । ତାଙ୍କୁ ସାଥିରେ ନେଇଯାଅ ।

ଶାନ୍ତିକର ତାଙ୍କର ବାପା ଓ ବଡ଼ଭାଇଙ୍କ ମରିବା ଖବର ଶୁଣିଲେ ଓ ତାଙ୍କ ଭାଉଜର ପରିଚୟ ପାଇଲେ । ତା'ପରେ ପିଙ୍ଗଳିକା ଓ ତାଙ୍କ ଯାଆଁଳା ପୁଅଙ୍କୁ ନିଜ ଘରକୁ ନେଇ ଯିବାକୁ ଠିକ୍‌କଲେ ।

ରାଣୀ ଶାନ୍ତିକରଙ୍କ ବ୍ୟବହାର ଓ ଜ୍ଞାନରେ ସନ୍ତୁଷ୍ଟହୋଇ ତାଙ୍କୁ ରାଜ ପୁରୋହିତ କରିଦେଲେ ଓ ପିଙ୍ଗଳିକାର ଯାଆଁଳା ପୁଅ-ଶାନ୍ତିସୋମ ଓ ବୈଶ୍ୱାନରଙ୍କୁ ବଡ଼ ହେଲାପରେ ପୁରୋହିତ ଭାବେ ନିଯୁକ୍ତି ଦିଆଯିବାକୁ ହୁକୁମ ଦେଲେ ।

ପିଙ୍ଗଳିକା ଉପରେ ବାସବଦତ୍ତାଙ୍କର ଏତେ ସ୍ନେହ ଥିଲା ଯେ, ପିଙ୍ଗଳିକା ରାଜମହଲର ରାଣୀ ଅନ୍ତଃପୁରରେ ତାଙ୍କ ପାଖରେ ପ୍ରାୟ ରହୁଥିଲା ।

ଦିନକର କଥା । କୁମ୍ଭାରୁଣୀଟିଏ କିଛି ହାଣ୍ଡି କୁଣ୍ଡେଇ ନେଇ ରାଣୀ ଅନ୍ତଃପୁର ପାଖକୁ ବିକିବାକୁ ଆସିଲା । ତା' ସାଥିରେ ତା'ର ଛୋଟ ଛୋଟ ପାଞ୍ଚଜଣ ପୁଅ ଥିଲେ । ରାଣୀ ସେମାନଙ୍କୁ ଦେଖାଇ ପିଙ୍ଗଳିକାକୁ କହିଲେ– ଦେଖ ସଖି ! ସେଇ ଗରୀବ କୁମ୍ଭାରୁଣୀର ପାଞ୍ଚ ପାଞ୍ଚଟା ପୁଅ । ମୁଁ ହତଭାଗିନୀ । ମୋର ଗୋଟିଏ ବୋଲିବି ପୁଅ ନାହିଁ ।

ପିଙ୍ଗଳିକା କହିଲା– ମହାରାଣୀ ! ଗରୀବଙ୍କର ଏଇ ପାପ ଯେ, ତାଙ୍କର ବେଶୀ ପିଲାଛୁଆ ହୁଅନ୍ତି । ଆପଣଙ୍କ ଭଳି ବଡ଼ଘର ଲୋକଙ୍କର ତ ଗୋଟିଏ ଗୋଟିଏ ପୁଅ ହୁଏ, ଯୋଉ ପୁଅ ବଂଶର ନାମ ବଢ଼ାଏ । ସମୟ ଆସିଲେ ଆପଣଙ୍କର ବି ସେମିତିକା ପୁଅଟିଏ ହେବ ।

ପିଙ୍ଗଳିକା କଥାଶୁଣି ରାଣୀ ପୁଅଟିଏ ପାଇବା ପାଇଁ ଅଧିକ ବ୍ୟାକୁଳ ହେଲେ । ସେ ଶିବଙ୍କ ବ୍ରତ ଆରାଧନା କରିବାକୁ ଲାଗିଲେ । ଦିନେ ଭଗବାନ ଶିବ ତାଙ୍କୁ ସ୍ୱପ୍ନରେ ଦର୍ଶନ ଦେଇ କହିଲେ– ଶିଘ୍ର ତମର ପୁଅଟାଏ ହେବ । ସେ କାମଦେବଙ୍କ ଅବତାର ହୋଇ ଜନ୍ମହେବ ଓ ବଡ ହୋଇ ବିଦ୍ୟାଧରମାନଙ୍କର ସମ୍ରାଟ ହେବ ।

ରାଣୀଙ୍କ ସ୍ୱପ୍ନକଥା ଶୁଣି ରାଜା ଉଦୟନ ଓ ସବୁ ମନ୍ତ୍ରୀମାନେ ଖୁବ୍ ଆନନ୍ଦିତ ହେଲେ । କିଛିଦିନ ପରେ ରାଣୀ ଗର୍ଭବତୀ ହେଲେ । ଏଇ ସମୟ ଭିତରେ ମୌଗନ୍ଧରାୟଣଙ୍କର ମରୁଭୂତି, ରୁମଣ୍ୱାନଙ୍କର ହରିଶିଖ୍ୟ ଓ ବସନ୍ତକଙ୍କର ତପନ୍ତକ ନାମରେ ପୁଅମାନେ ଜନ୍ମହେଲେ ।

ଏଥର ରାଣୀ ବାସବଦତ୍ତା ପ୍ରସୂତୀ ଗୃହରେ ଯାଇ ରହିଲେ । ସେଇ ଗୃହରେ ଉଜ୍ଜ୍ୱଳ ଦୀପମାନ ଜଳୁଥିଲା ଓ ସଧବା ସ୍ତ୍ରୀଲୋକମାନଙ୍କ ଚହଳପ୍ରଚହଳରେ ଉହଳି ଉଠିଉଛିଥିଲା । ମନ୍ତ୍ରୀମାନେ ସେଇ ଘରକୁ କଡ଼ା ପହରାରେ ଜଗୁଆଳୀମାନଙ୍କୁ ରଖାଇଥିଲେ ଓ ମନ୍ତ୍ର ତନ୍ତ୍ରଦ୍ୱାରା ସେଇ ଘରକୁ ଶୁଦ୍ଧ କରାଯାଇଥିଲା । ସେଇ ଘରେ ଶୁଭ ବେଳାରେ ଆକାଶରେ ଅମୃତମୟ କାନ୍ତି ଚନ୍ଦ୍ରମା ଉଦୟ ହେଲାଭଳି ରାଣୀ ସୁନ୍ଦର ପୁଅଟିକୁ ଜନ୍ମଦେଲେ ।

ରାଜା ଉଦୟନ ପୁଅ ଜନ୍ମହେବା ଖବର ଶୁଣି ଆନନ୍ଦରେ ଗଦ୍‌ଗଦ୍ ହୋଇ ଦୌଡ଼ିଗଲେ ଓ ବଡ଼ ଉତ୍ସୁକତା ସହକାରେ ନିଜ ପୁଅକୁ ଦେଖିଲେ । ରାଜକୁମାରଙ୍କ ଓଠ ଓ ଗଣ୍ଡଦେଶ ଗାଢ଼ ଲାଲ ରଙ୍ଗର ହୋଇଥିଲା ଓ ତାଙ୍କ କପାଳ ମଝିରେ ଚକ୍ର ଚିହ୍ନ ଥିଲା । ସେଇ ଚିହ୍ନ ସେ ଭବିଷ୍ୟତରେ ଚକ୍ରବର୍ତ୍ତୀ ବା ସମ୍ରାଟ୍ ହେବାର ସୂଚନା ଦେଉଥିଲା ।

ପୁଅର ମୁହଁ ଦେଖି ରାଜାଙ୍କର ଆଖି ଅତି ଆନନ୍ଦରେ ଛଳଛଳ ହୋଇଗଲା । ମୌଗନ୍ଧରାୟଣ ପ୍ରଭୃତି ମନ୍ତ୍ରୀମାନେ ମଧ୍ୟ ବହୁତ ଆନନ୍ଦିତ ହେଲେ । ଏଇ ସମୟରେ ଶୂନ୍ୟବାଣୀ ହେଲା– ରାଜା ! ତମର ପୁଅ କାମଦେବଙ୍କ ଅବତାର । ସେ ନରବାହନ ନାମରେ ବିଖ୍ୟାତ ହେବ । ସେ ବଡହୋଇ ବିଦ୍ୟାଧରମାନଙ୍କର ସମ୍ରାଟ୍ ବା ଚକ୍ରବର୍ତ୍ତୀ ହେବ । ଏତିକି କହି ଆକାଶରୁ ପୁଷ୍ପବୃଷ୍ଟି ହେବାକୁ ଲାଗିଲା ।

ରାଜକୁମାରଙ୍କ ଜନ୍ମ ଉପଲକ୍ଷେ ରାଜ୍ୟସାରା ମହା ଉତ୍ସବ ପାଳନ କରାଗଲା । ତୂରୀର ନାଦରେ ଗଗନ ପବନ କମ୍ପିଲା । ଉଚ୍ଚ ଉଚ୍ଚ କୋଠାମାନଙ୍କରୁ ଲାଲ ରଙ୍ଗର ପତାକାମାନ ଧାଡ଼ି ଧାଡ଼ି ହୋଇ ଉଡୁଥିଲା । ରାଜପଥର ଗଳି ଓ ଛକମାନଙ୍କରେ ନୃତ୍ୟାଙ୍ଗନାମାନେ ନୃତ୍ୟ କରୁଥିଲେ, ମନେହେଉଥିଲା ଯେମିତି ଅପ୍‌ସରାମାନେ ସ୍ୱର୍ଗରୁ ଓହ୍ଲାଇ ଆସି ନୃତ୍ୟ କରୁଛନ୍ତି ।

ରାଜା ଉଦୟନ ଯେମିତି ଏଇ ଅବସରରେ ନିଜର ରାଜକୋଷ ଖୋଲି ଦେଇଥିଲେ । ତାଙ୍କର ସାମନ୍ତମାନଙ୍କର ସ୍ତ୍ରୀମାନେ ନିଜ ନିଜର ରାଣୀମାନଙ୍କ ସହିତ ବହୁମୂଲ୍ୟ ଉପହାରମାନ ଧରି ଚାଲି ଆସୁଥିଲେ । ସାରା ନଗରୀ ନୃତ୍ୟମୟ ଓ କୋଳାହଳପୂର୍ଣ୍ଣ ହୋଇ ଉଠିଥିଲା ।



ଧୀରେ ଧୀରେ ରାଜକୁମାର ନରବାହନ ବଡ ହେବାକୁ ଲାଗିଲେ । ତାଙ୍କର ଖେଳ କୌତୁକ ପାଇଁ ମୌଗନ୍ଧରାୟଣ, ରୁମଣ୍ୱାନ ଓ ବସନ୍ତକ ସେମାନଙ୍କର ପୁଅମାନଙ୍କୁ ତାଙ୍କର ଖେଳସାଥୀ କରିବା ପାଇଁ ରାଜମହଲ ଭିତରେ ଛାଡ଼ି ଦେଇଥିଲେ । ପୁରୋହିତ ଶାଣ୍ଡିଲ୍ୟର ମଧ୍ୟ ନିଜର ସାଆଁଳା ପୁତୁରା ଚୁଡ଼ିଙ୍କୁ ରାଜକୁମାରଙ୍କୁ ଖୁସି ରଖିବା ପାଇଁ ରାଜମହଲକୁ ଛାଡ଼ି ଦେଇଥିଲେ । ମନ୍ତ୍ରୀ ଇତ୍ୟାଙ୍କର ପୁଅ ଗୋମୁଖ ମଧ୍ୟ ରାଜକୁମାରଙ୍କ ସାଥିରେ ରହିଲା । ଏହିଭଳି ଛଅଜଣ ସାଙ୍ଗଙ୍କ ସହିତ ରାଜକୁମାର ନରବାହନଦତ୍ତ ବଡ ହେବାକୁ ଲାଗିଲେ ।

## କଳିଙ୍ଗସେନା କଥା

ନରବାହନଦତ୍ତ ଧୀରେ ଧୀରେ ବଡ ହେବାକୁ ଲାଗିଲେ । ତା'ସହିତ ବତ୍ସରାଜ ଉଦୟନଙ୍କ ପ୍ରତାପ ଓ ଯଶ ସାରା ପୃଥିବୀରେ ସୁବାସ ପରି ଚହଟିଲା । ସେଇ ସମୟରେ ଶ୍ରାବସ୍ତୀରେ ରାଜା ପ୍ରସେନଜିତ୍ ରାଜତ୍ୱ କରୁଥିଲେ ଓ ଇକ୍ଷ୍ୱାକୁ ବଂଶୀୟ ରାଜା ଶୁଦ୍ଧୋଦନଙ୍କ ପୁଅ ସିଦ୍ଧାର୍ଥ ବଣରେ ତପସ୍ୟା କରି ବୁଦ୍ଧତ୍ୱ ପ୍ରାପ୍ତ ହୋଇଥିଲେ । ଏହି ସମୟରେ ବିତସ୍ତା ନଦୀ କୂଳରେ ଅବସ୍ଥିତ ତକ୍ଷଶିଳା ନଗରୀରେ କଳିଙ୍ଗଦତ୍ତ ରାଜତ୍ୱ କରୁଥିଲେ । ସେ ଭଗବାନ ବୁଦ୍ଧଙ୍କର ପରମ ଭକ୍ତ ଥିଲେ । ତାଙ୍କ ରାଣୀଙ୍କ ନାମ ତାରାଦତ୍ତା ଥିଲା । କଳିଙ୍ଗଦତ୍ତ ଅତ୍ୟନ୍ତ ଧର୍ମାତ୍ମା ଥିଲେ ଓ ପ୍ରଜାମାନଙ୍କୁ ପୁଅଭଳି ଦେଖୁଥିଲେ । ତାରାଦତ୍ତା ବି ଯେତିକି ସୁନ୍ଦରୀ ଥିଲେ, ସେତିକି ଗୁଣବତୀ ଥିଲେ ।

ଦିନେ ରାତିରେ ତାରାଦତ୍ତା ସ୍ୱପ୍ନ ଦେଖିଲେ ଯେ, ଆକାଶରୁ ଉଲ୍‌କାଟିଏ ଖସି ତାଙ୍କ ପେଟ ଭିତରେ ପଶିଗଲା । ସକାଳ ହେବାରୁ ସେ ରାଜାଙ୍କୁ ସେଇ ସ୍ୱପ୍ନକଥା ଶୁଣାଇଲେ । ରାଜା କହିଲେ– ସେଇ ସ୍ୱପ୍ନର ଅର୍ଥ ହେଉଛି କେହି ଦିବ୍ୟ ପ୍ରାଣୀ ତୁମ ପେଟ ଭିତରକୁ ଆସିଯାଇଛି । ହୋଇପାରେ ସେ କୌଣସି ବିଦ୍ୟାଧର ହୋଇପାରିଥାଏ, ଯିଏ ଶାପଭ୍ରଷ୍ଟ ହୋଇଯାଇଥିବ । ଜଣେ ଲୋକ ତା'ର ମନକୁ ପବିତ୍ର ରଖିବା ଉଚିତ । ଶୁଭ ସଙ୍କଳ୍ପର ଫଳ ଶୁଭ ହୁଏ । ତା' ସହିତ ଉଦ୍ୟମ କରିବାରୁ କେବେ ବିରତ ହେବନାହିଁ । ମଣିଷକୁ ନିଜ କର୍ମର ଫଳ ଭୋଗିବାକୁ ହିଁ ପଡ଼ିବ । ମୋର ମନେହେଉଛି କୌଣସି ଦିବ୍ୟ ପ୍ରାଣୀ ତୁମ ଗର୍ଭ ମଧ୍ୟକୁ ଆସିଛି ।

କିଛିଦିନ ପରେ ରାଣୀ ତାରାଦତ୍ତା ଗୋଟିଏ ଅପୂର୍ବ ସୁନ୍ଦରୀ ଝିଅକୁ ଜନ୍ମଦେଲେ । ରାଜା କଳିଙ୍ଗଦତ୍ତ ପୁଅ ଚାହୁଁଥିଲେ । ଝିଅ ଜନ୍ମ ହୋଇଥିବା ଶୁଣି ତାଙ୍କ ମନ ବଡ ଖରାପ ହୋଇଗଲା । ସେ ତାଙ୍କ ସଦ୍ୟ ଜନ୍ମହୋଇଥିବା ଝିଅର ମୁହଁକୁ ମଧ୍ୟ ଦେଖିଲେ ନାହିଁ । ସାରାଦିନ ଉଦାସ ହୋଇ ବସି ରହିଲେ । ସେତିକିବେଳେ ରାଜବଂଶର ସବୁଠୁଁ ପୂଜ୍ୟ ଓ ବୟୋବୃଦ୍ଧ ଜଣେ ବ୍ରାହ୍ମଣ ତାଙ୍କୁ ବୁଝାଇ ସୁଝାଇ କହିଲେ– ମହାରାଜ ! ଝିଅ ତ ପୁଅଠୁଁ ଅଧିକ ଆନନ୍ଦ ଦିଏ । ସେ ଆମକୁ ଇହଲୋକ ଓ ପରଲୋକ– ଉଭୟ ଲୋକରେ ମଙ୍ଗଳ ଫଳ ଦେଇଥାଏ । ପୁଅ କଥା କ'ଣ ? ରାଜ୍ୟ ଲୋଭରେ ମାଙ୍କଡ଼ମାନଙ୍କ ଭଳି ସେ ତା' ବାପକୁ ବି କାମୁଡ଼ି ଗୋଡ଼ାଏ ।

ଏହିପରି ବୃଦ୍ଧ ବ୍ରାହ୍ମଣ ବୁଝାଇବା ପରେ ରାଜାଙ୍କ ମନ କିଛି ପରିମାଣରେ ଶାନ୍ତହେଲା ।

ଝିଅର ନାମ କଳିଙ୍ଗସେନା ରଖାଗଲା । ସମୁଦ୍ରର ଛୋଟ ଛୋଟ ଲହରି ଭଳି ତା'ର ଖିଲିଖିଲି ହସ ଓ ଗୁଲୁଗୁଲିଆ କଥା ରାଜମହଲ ଓ ରାଜଉଦ୍ୟାନକୁ ଆନନ୍ଦ ମୁଖରିତ କଲା । ତା'ପରେ ସେ ଟିକେ ବଡହୋଇ ତା'ବାପାଙ୍କ ପ୍ରାସାଦରୁ, ରାଣୀ ଅନ୍ତଃପୁରକୁ ଓ ସେଠାରୁ ପ୍ରମୋଦ ଉଦ୍ୟାନକୁ ଓ ଏମିତି ଏମିତି ସବୁ ଜାଗାମାନଙ୍କୁ ତା'ର ଠୁକୁ ଠୁକୁ ଚାଲିରେ ସମସ୍ତଙ୍କ ମନକୁ ଆନନ୍ଦିତ କରିଦେଲା ।

ଦିନ ଗଡି ଚାଲିଲା ଓ କଳିଙ୍ଗସେନା ବଡହୋଇ ଯୁବତୀ ହେଲା । ସେ ରତିଦେବୀଙ୍କ ପରି ଦିଶିଲା । ଦିନେ ସେ ରାଜପ୍ରାସାଦର ଛାତ ଉପରେ ଖେଳୁଥିବାବେଳେ ଆକାଶମାର୍ଗରେ ଯାଉଥିବା ସୋମପ୍ରଭା ତାକୁ ଦେଖିଦେଲା । ସୋମପ୍ରଭା ମୟଦାନବର ଝିଅ ଥିଲା । କଳିଙ୍ଗସେନାକୁ ଦେଖିବା ମାତ୍ରେ ଏପରି ଏକ ସୁନ୍ଦରୀ ରାଜକୁମାରୀ ସହିତ ବନ୍ଧୁତା କରିବାକୁ ତା'ର ମନ ବଳିଲା । ସେ ଅଦୃଶ୍ୟ ହୋଇ ଛାତ ଉପରେ ଓହ୍ଲାଇଲା ଓ ପୁଣି ମଣିଷ ରୂପରେ କଳିଙ୍ଗସେନା ସମ୍ମୁଖରେ ଉଭାହେଲା ।

କଳିଙ୍ଗସେନା ତାକୁ ଦେଖି ଭାରି ଖୁସିହେଲା । ଦୁହେଁ ଅତି ଆପଣାର ସାଙ୍ଗ ଭଳି କଥାହେଲେ । ଦୁହେଁ ପରସ୍ପର ହାତ ଧରାଧରି ହୋଇ ବସିଥିଲେ । କଳିଙ୍ଗସେନା କହିଲା— ତମେ ତମ ନାମ, ବଂଶ ଆଉ ଘରର ଠିକଣା, ଏସବୁ କିଛିତ କହିଲ ନାହିଁ ।

ସୋମପ୍ରଭା କହିଲା— ସବୁ କହିବି । ତମେ ଏତେ ବଡ ବଂଶର ରାଜକୁମାରୀ । ମୋର ତ ଆଶଙ୍କା ହେଉଛି କାଳେ ରାଗିଯାଇ ତମେ ମୋ ସହିତ ବନ୍ଧୁତା ରଖିବାକୁ ନ ଚାହିଁବ । ରାଜ ବଂଶର ଲୋକଙ୍କ ସହିତ ବନ୍ଧୁତା ରଖିବା ବଡ କଠିନ ।

ରାଜକୁମାରୀ କଳିଙ୍ଗସେନା କହିଲା— ନା, ସଖି ! ଏମିତି କଥା କୁହନାହିଁ । କୁଳୀନ ରାଜକୁମାରୀମାନେ ଏମିତି ହୁଅନ୍ତି ନାହିଁ । ମୋ ସାଙ୍ଗ ହେବତ, ମୁଁ ତମକୁ କୌଣସି କଷ୍ଟ ଦେବିନାହିଁ ।

ଏହିଭଳି କଥାବାର୍ତ୍ତା କରୁ କରୁ ଓ ଦୁହେଁ ଦୁହିଁଙ୍କୁ ଭଲ ମନ୍ଦ କଥା ଶୁଣାଇ ଶୁଣାଇ ରାତି ହୋଇଗଲା । ସୋମପ୍ରଭା କହିଲା— ସଖି ! ମୋ ଘର ଏଠୁଁ ବହୁତ ଦୂର । ମୋତେ ଯିବାକୁ ଦିଅ । ଏହାକହି ସେ ଅନ୍ତର୍ଦ୍ଧାନ ହୋଇଗଲା । କଳିଙ୍ଗସେନା ଭାବିବାକୁ ଲାଗିଲା— ମୁଁ ତା ନାଁ ଆଉ ଘର ଇତ୍ୟାଦି ବିଷୟରେ କିଛିତ ପଚାରି ପାରିଲି ନାହିଁ । ସେ କିଏ ? ସେ ଦେବୀ ନା ଅପ୍ସରା ?

ପରଦିନ ସକାଳ ହେବା ମାତ୍ରେ ସୋମପ୍ରଭା ତା'ର ସଖୀର ବିନୋଦନ ପାଇଁ ଗୋଟିଏ ପେଟରାରେ କେତୋଟି କାଠ କଣ୍ଢେଇକୁ ସଜେଇ ଆକାଶମାର୍ଗରେ ଆସି କଳିଙ୍ଗସେନା ନିକଟରେ ପହଞ୍ଚିଲା । କଳିଙ୍ଗସେନା ତାକୁ ଦେଖି ଉଲ୍ଲସିତ ହୋଇଉଠି ତାକୁ ଆଲିଙ୍ଗନ କରି କହିଲା— ତମେ ତମ ନାଁ ଠିକଣା କିଛି ବି ମୋତେ ଜଣାଇଲ ନାହିଁ । ଏଇ ପେଟରାରେ କ'ଣ ଆଣିଛ ?

ସୋମପ୍ରଭା କହିଲା— ତୁମେ ମୟ ନାମରେ ଜଣେ ଅସୁରଙ୍କ ନାମ ଶୁଣିଥିବ । ସେ ତିନିଲୋକରେ ବିଖ୍ୟାତ । ସେ ବହୁ ପୂର୍ବରୁ ଅସୁର ପ୍ରକୃତି ଛାଡିଦେଇ ଭଗବାନ ବିଷ୍ଣୁଙ୍କର ଭକ୍ତ ହୋଇଯାଇଥିଲେ । ସେଥିପାଇଁ ସେ ଦେବତାମାନଙ୍କ ପକ୍ଷ ହୋଇଯାଇଛନ୍ତି ବୋଲି ମନେକରି ଅସୁରମାନେ ତାଙ୍କୁ ମାରି ଗୋଡାଇଲେ । ସେ ମଧ୍ୟ ଅସୁରମାନଙ୍କ ହାତରୁ ରକ୍ଷାପାଇବା ପାଇଁ ବିନ୍ଧ୍ୟ ପର୍ବତଙ୍କ ଶରଣ ନେଲେ ଓ ସେଇ ପର୍ବତ ଗୁମ୍ଫାରେ ନିଜର ମାୟାମୟ ରାଜପ୍ରାସାଦ ତୋଳାଇଲେ । ସେଇ ମୟ ଅସୁରଙ୍କ ଆମେ ଦୁଇ ଝିଅ— ସ୍ୱୟଂପ୍ରଭା ଆଉ ସୋମପ୍ରଭା । ମୋ ବଡ ଭଉଣୀ ସ୍ୱୟଂପ୍ରଭା ଜଣେ ବଡ ତପସ୍ୱିନୀ । ମୋ ବିବାହ କୁବେରଙ୍କ ପୁଅ ନଳକୁବେରଙ୍କ ସହିତ ହୋଇଛି । ମୋ ବାପା ମୋତେ ଅନେକ ପ୍ରକାର ମାୟା ମନ୍ତ୍ର ଶିଖାଇଛନ୍ତି । ମୁଁ ସେଇ ମନ୍ତ୍ର ନିଜେ ଚଳାଏଁ । ଏଇସବୁ କଣ୍ଢେଇ ନିଜେ ନିଜେ ଚଳପ୍ରଚଳ ହୁଅନ୍ତି । ମୁଁ ଏଗୁଡିକ ତିଆରିକରି ତମ ପାଇଁ ଆଣିଛି । ଏତକ କହି ସୋମପ୍ରଭା କଣ୍ଢେଇ ଭର୍ତ୍ତି ପେଟରାର ମୁହଁଖୋଲି କଣ୍ଢେଇଗୁଡିକ କାଢ଼ି କଳିଙ୍ଗସେନାକୁ ଦେଖାଇଲା ।

କଳିଙ୍ଗସେନା ଗୋଟିଏ କଣ୍ଢେଇର ଚାବି ମୋଡିବା ମାତ୍ରେ କଣ୍ଢେଇଟି ଆକାଶକୁ ଉଡିଗଲା ଓ ସୋମପ୍ରଭା ଆଦେଶରେ କଳିଙ୍ଗସେନା ପାଇଁ ମାଳାଟିଏ ନେଇ ଆସିଲା । ଏହିପରି ତା' କହିବା ମୁତାବକ ପାଣି ନେଇ ଆସିଲାତ କେଉଁ କଣ୍ଢେଇ ନାଚିଲା । ଗୋଟିଏ କଣ୍ଢେଇ ଗପ ମଧ୍ୟ ଶୁଣାଇଲା ।

ଏହିପରି ବିଭିନ୍ନ ପ୍ରକାରର କଣ୍ଢେଇଖେଳ ଦେଖାଇସାରି ସୋମପ୍ରଭା କଣ୍ଢେଇଗୁଡିକୁ ପେଟରା ଭିତରେ ରଖିଦେଲା । ତା'ପରେ କହିଲା— ତମକୁ ଦେଖିବାକୁ ମନହେଲା, ତେଣୁ ଚାଲି ଆସିଲି ।



ଏଇକ୍ଷଣି ମୋତେ ଯିବାକୁ ଦିଅ । ମୋତେ ମୋର ସ୍ୱାମୀଙ୍କ ସେବା କରିବାକୁ ହେବ । ଏତିକି କହି ସୋମପ୍ରଭା ଆକାଶମାର୍ଗରେ ଫେରିଗଲା ।

କଳିଙ୍ଗସେନା ସେଇ କଣ୍ଢେଇଗୁଡିକ ପାଇ ଏତେ ଖୁସି ହୋଇଗଲା ଯେ, ଖାଇବା ପିଇବା ଭୁଲିଗଲା । ରାଣୀ ତାରାଦତ୍ତା ଖାଇବାକୁ ତାକୁ କେତେଥର ଡାକିଲେ, କିନ୍ତୁ ସେ କହିଲା ଯେ, ତାକୁ ଭୋକନାହିଁ । ରାଣୀ ଚିନ୍ତିତା ହୋଇ ବୈଦ୍ୟଙ୍କୁ ଡକାଇ ପଠାଇଲେ ।

ବୈଦ୍ୟ ରାଜକୁମାରୀଙ୍କୁ ପରୀକ୍ଷାକରି କହିଲେ— ତାଙ୍କର ତ କିଛି ବେମାରୀ ନାହିଁ । ସେ ଅତ୍ୟଧିକ ଖୁସିହେତୁ ତାଙ୍କର ଭୋକ ମରିଯାଇଛି । କିଛି ଅସୁବିଧା ନାହିଁ ।

ବୈଦ୍ୟଙ୍କ ଠାରୁ କଳିଙ୍ଗସେନାର କିଛି ବେମାରୀ ନାହିଁ ଓ ଅତ୍ୟଧିକ ଖୁସିହେତୁ ତା'ର ଭୋକ ମରିଯାଇଛି ଜାଣି ରାଣୀ ତାରାଦତ୍ତା ତାକୁ ପଚାରିଲାରୁ ସେ ତାଙ୍କୁ ସୋମପ୍ରଭା ବିଷୟରେ ଜଣାଇଲା ।

ତା'ପରଦିନ ସୋମପ୍ରଭା ପୁଣି ଆସିଲା । ସେ ଆସିବା ମାତ୍ରେ କଳିଙ୍ଗସେନା ତା'ର ହାତ ଧରି ରାଣୀ ଅନ୍ତଃପୁରକୁ ନେଇଗଲା ଓ ତା ମା'ଙ୍କ ସହିତ ଭେଟ କରାଇଲା । ରାଣୀ ତାରାଦତ୍ତା ଓ ରାଜା କଳିଙ୍ଗଦତ୍ତ ସୋମପ୍ରଭାକୁ ଦେଖି ବହୁତ ଖୁସିହେଲେ । ସୋମପ୍ରଭା ମଧ୍ୟ ରାଜାଙ୍କୁ ସେଇ ମନ୍ତ୍ର ବିଷୟରେ ଜଣାଇଲା । ସେଇ ମନ୍ତ୍ରମାନଙ୍କ ଭିତରେ ଏମିତି ଏକ ମନ୍ତ୍ର ଥିଲା, ଯିଏ ରାଜ ପ୍ରାସାଦରେ ଦରଜାକୁ ଏମିତି ଭାବେ ବନ୍ଦ କରିଦେଲା ଯେ କେହି ସେଇ ଦରଜାକୁ ଖୋଲିପାରିଲେ ନାହିଁ । ଦ୍ୱିତୀୟ ମନ୍ତ୍ର ନିଆଁକୁ ଉଠାଇ ଫିଙ୍ଗିଦେଇ ପାରୁଥିଲା । କେଉଁ ମନ୍ତ୍ର କଥା କହୁଥିଲା ତ କେଉଁ ମନ୍ତ୍ର ଚଳପ୍ରଚଳ ହେଉଥିଲା । ପୁଣି ସୋମପ୍ରଭା କଳିଙ୍ଗସେନାକୁ ମନ୍ତ୍ର ତିଆରି ବିମାନରେ ବସାଇ ଘରକୁ ନେଇ ତା'ର ବଡ ଭଉଣୀ ସ୍ୱୟଂପ୍ରଭା ସହିତ ଭେଟ କରାଇଲା । ସ୍ୱୟଂପ୍ରଭାଙ୍କ ଜଟା ବହୁତ ବଢ଼ିଥିଲା । ସେ ଧଳା ଲୁଗା ପିନ୍ଧି ହାତରେ ଅକ୍ଷମାଳା ଧାରଣ କରି ତପସ୍ୟା କରୁଥିଲେ । ସେ ଦେବୀ ପାର୍ବତୀଙ୍କ ଭଳି ଦିଶୁଥିଲେ । ସେ କଳିଙ୍ଗସେନାକୁ କିଛି ଫଳ ଖାଇବାକୁ ଦେଲେ । ସୋମପ୍ରଭା କହିଲା— ନିଅ, ଫଳ ଖାଇଦିଅ । ସେଇ ଫଳ ଖାଇଲେ ତମ ରୂପ ଅକ୍ଷୟ ହୋଇ ରହିବ । ବାର୍ଦ୍ଧକ୍ୟ କେବେ ଆସିବ ନାହିଁ । ହନୁମାନ ଓ ଅଙ୍ଗଦ ପ୍ରଭୃତି ସୀତାଙ୍କୁ ଖୋଜୁଥିବାବେଳେ ମୋ ଭଉଣୀ ସେମାନଙ୍କୁ ଏଇ ଗୁମ୍ଫାରେ ଫଳ ଖୁଆଇଥିଲେ ।

ରାଜକୁମାରୀ କଳିଙ୍ଗସେନା ସୋମପ୍ରଭା ସହିତ ମୟଦାନବଙ୍କ ତିଆରି ମାୟାନଗରୀରେ ମଧ୍ୟ ଖୁବ୍ ବୁଲିଲା । ସେଇ ମାୟାନଗରୀ ଅନେକ ପ୍ରକାର ବିସ୍ମୟରେ ଭରିରହିଥିଲା । ତା'ଭିତରେ କେଉଁଠି ଶୂନ୍ୟରେ ପାଚେରୀ ବା ସ୍ତମ୍ଭ ଠିଆ ହେବାର ଭ୍ରମ ହେଉଥିଲା ତ କେଉଁଠି ପାଣିକୁ ସ୍ଥଳଭୂମି ଓ ସ୍ଥଳଭୂମିକୁ ପାଣି ଭ୍ରମ ହେଉଥିଲା । ଏହିପରି ସୋମପ୍ରଭା ଓ କଳିଙ୍ଗସେନା ଭିତରେ ବନ୍ଧୁତା ବଢ଼ି ଚାଲିଥିଲା ।

ଦିନେ ସୋମପ୍ରଭା କଳିଙ୍ଗସେନାକୁ ପଚାରିଲା— ସଖି ! ଗୋଟେ କଥା ପଚାରିବି, ସତ କହିବ । ତମର କ'ଣ ଏପର୍ଯ୍ୟନ୍ତ କେଉଁଠି ବାହାଘର ପ୍ରସ୍ତାବ ପଡିନାହିଁ ?

କଳିଙ୍ଗସେନା ହସିଦେଇ ଉତ୍ତରଦେଲା— ସଖୀ ! କଥାଟା ତ ଗୋପନୀୟ । ତେବେ ତମକୁ କ'ଣ ଲୁଚାଇବି । ମୋର ବିବାହ ବିଷୟରେ ଆଲୋଚନା ଚାଲିଛି । ମୋ ହାତ ମାଗିବା ପାଇଁ ଅନେକ ରାଜା ଦୂତ ପଠାଇଥିଲେ, କିନ୍ତୁ ବାପା ସମସ୍ତଙ୍କୁ ଫେରାଇ ଦେଲେ । କେବଳ ଶ୍ରାବସ୍ତୀର ରାଜା ପ୍ରସେନଜିତଙ୍କ ଦୂତକୁ ଆଦର ଯତ୍ନରେ ଅଟକାଇଛନ୍ତି । ମୁଁ ଶୁଣିଛି ପ୍ରସେନଜିତଙ୍କ ସହିତ ମୋର ବିବାହ ଦେବାପାଇଁ ମୋ ବାପା-ମା ଉଭୟ ହଁ କରିଦେଇଛନ୍ତି । ପ୍ରସେନଜିତ ଭଲବଂଶର । କୌରବ ଓ ପାଣ୍ଡବମାନଙ୍କ ଆଈ ଅମ୍ବା ଓ ଅମ୍ବାଳିକା ଯେଉଁ ବଂଶର, ସେ ସେଇ ବଂଶର ।

କଳିଙ୍ଗସେନାର କଥାଶୁଣି ସୋମପ୍ରଭା ଆଖିରୁ ଲୁହ ଝରିପଡ଼ିଲା । କଳିଙ୍ଗସେନା ବିସ୍ମିତା ହୋଇ କହିଲା– ସଖି ! ତମେ କାନ୍ଦୁଛ କାହିଁକି ?

ସୋମପ୍ରଭା କହିଲା– ସଖି ! ବରର ଅବସ୍ଥା, ରୂପ, ବଂଶ, ଭଦ୍ରତା, ଧନ– ଏସବୁ ଗୁଣ ଦେଖାଯାଏ । ରାଜା ପ୍ରସେନଜିତଙ୍କୁ ମୁଁ ଦେଖିଛି । ସେ ଟଁ ବୁଢ଼ା । ସେଥିପାଇଁ ମୋତେ ଦୁଃଖ ଲାଗୁଛି । ତମକୁ ଯଦି ବତ୍ସରାଜ ଉଦୟନ ମିଳନ୍ତେ, ତା'ହେଲେ ମୁଁ ଖୁସି ହୁଅନ୍ତି । ରୂପ, ବଂଶ, ଭଦ୍ରତା– ସବୁଗୁଣରେ ଏଇ ପୃଥିବୀରେ ତାଙ୍କପରି ରାଜା କେହି ନାହିଁ ।

ସୋମପ୍ରଭା ଉଦୟନଙ୍କ ଗୁଣ ଓ ଜୀବନ ଚରିତ କଳିଙ୍ଗସେନାକୁ ଏମିତି ବର୍ଣ୍ଣନାକରି ଶୁଣାଇଲା ଯେ, କଳିଙ୍ଗସେନାର ମନ ଉଦୟନଙ୍କ ପ୍ରତି ଅନୁରକ୍ତ ହୋଇଗଲା । କିନ୍ତୁ ସେ ପୁଣି ଉଦାସହୋଇ କହିଲା– ମୁଁ ମୋ ବାପା-ମା'ଙ୍କ ଇଚ୍ଛା ପାଖରେ ନାଚାର । ସେ ଯେଉଁଠି ଚାହିଁବେ, ସେଇଠି ମୋ ବାହାଘର ହେବ ।

ସୋମପ୍ରଭା କହିଲା– ମଣିଷ ନିରାଶହୋଇ ଚେଷ୍ଟା ନ କରିବା ଉଚିତ ନୁହେଁ । ଚେଷ୍ଟାକଲେ ଅସାଧ୍ୟ ବି ସାଧ୍ୟ ହୋଇପାରେ ।

କଳିଙ୍ଗସେନା କହିଲା– ଯଦି ଏମିତି କଥା, ତା'ହେଲେ ମୁଁ ପ୍ରଥମେ ତମ ସାହାଯ୍ୟରେ ପ୍ରସେନଜିତକୁ ଦେଖିବାକୁ ଚାହେଁ, ଯିଏ ବୁଢ଼ା ହୋଇଯାଇଛି । ଆଉ ତା'ପରେ ଉଦୟନଙ୍କୁ ଦେଖିବି, ଯାହାଙ୍କ ରୂପ ଓ ଗୁଣର ତମେ ପ୍ରଶଂସା କରୁଛ ।

ସୋମପ୍ରଭା କହିଲା– ଇୟେ କୋଉ ବଡ଼ କଥା ! ମୁଁ ତମକୁ ମୋ ଆକାଶଗାମୀ ବିମାନରେ ବସାଇ ଶ୍ରାବସ୍ତୀ ଓ କୌଶାମ୍ବୀ ଦୁଇଟିଯାକ ନଗରକୁ ନେଇଯିବି ଓ ଦୁଇଜଣଯାକ ରାଜାଙ୍କୁ ଦେଖାଇବି ।

କଳିଙ୍ଗସେନା ସୋମପ୍ରଭାର କଥାରେ ରାଜି ହୋଇଗଲା । ତା'ପରଦିନ ସେ ସୋମପ୍ରଭା ସହିତ ବିମାନରେ ଆକାଶ ମାର୍ଗରେ ଯାଇ ଶ୍ରାବସ୍ତୀରେ ପହଞ୍ଚିଲା । ସେଠାରେ ରାଜଭବନରେ ଲୁଚିରହି ସେ ପ୍ରସେନଜିତଙ୍କୁ ଦେଖିଲା । ବୃଦ୍ଧାବସ୍ଥା ଯୋଗୁ ପ୍ରସେନଜିତଙ୍କ ମୁହଁ ଚମ କୁଞ୍ଚି ହୋଇଯାଇଥିଲା ଓ ହଳଦିଆ ପଡ଼ିଯାଇଥିଲା । କଳିଙ୍ଗସେନା ବିତୃଷ୍ଣାରେ ଭ୍ରୂକୁଟିକରି କହିଲା– ସଖି ! ମୋତେ ବତ୍ସରାଜଙ୍କ ପାଖକୁ ନେଇଚାଲ ।

ସୋମପ୍ରଭା ତାକୁ କୌଶାମ୍ବୀ ନେଇଗଲା, ଯେଉଁଠି ବତ୍ସରାଜ ଉଦୟନ ତାଙ୍କ ପ୍ରମୋଦ ଉଦ୍ୟାନରେ ବୁଲୁଥିବାର ଦେଖାଗଲା । ବତ୍ସରାଜଙ୍କୁ କଳିଙ୍ଗସେନା ତୃଷିତ ଆଖିରେ ଏମିତି ଚାହିଁ ରହିଲା, ଯେମିତି ଚକୋରୀ ଚନ୍ଦ୍ରମାକୁ ଚାହିଁ ରହେ । ସେ ସୋମପ୍ରଭାକୁ କହିଲା– ସଖି ! ମୁଁ ତାଙ୍କଠାରୁ ଦୂରରେ ରହି ପାରିବି ନାହିଁ । ଯେମିତି ହେଉ, ତମେ ମୋତେ ତାଙ୍କ ସହ ମିଳନ କରାଇଦିଅ ।

ସୋମପ୍ରଭା କହିଲା– ଆଜି ମୁଁ କେତେକ ଅପଶକୁନ ଦେଖିଛି । ତମେ ଆଜି ଏଇ ପ୍ରମୋଦ ଉଦ୍ୟାନରେ ଲୁଚିରୁହ । ସେଠୁଁ ବାହାରକୁ ମୋଟେ ଆସିବ ନାହିଁ । କାଲି ସକାଳେ ମୁଁ ଏଠାକୁ ଆସିବି ଓ ତମ ପ୍ରିୟସହ ତମର ମିଳନ କରାଇବି । –ଏତିକି କହି ସୋମପ୍ରଭା କଳିଙ୍ଗସେନା ଠାରୁ ବିଦାୟ ନେଇ ଚାଲିଗଲା ।

କିଛି ସମୟ ବୁଲାବୁଲିକରି ବତ୍ସରାଜା ପ୍ରମୋଦ ଉଦ୍ୟାନରୁ ନିଜ ରାଜଭବନକୁ ଫେରିଗଲେ । ବର୍ତ୍ତମାନ କଳିଙ୍ଗସେନା ପ୍ରମୋଦ ଉଦ୍ୟାନରେ ଏକାକୀ ରହିଗଲା । ସୋମପ୍ରଭା ତାକୁ ବତ୍ସରାଜାଙ୍କୁ ଭେଟିବାକୁ ଚେଷ୍ଟା ନକରିବାକୁ ଓ ସାରାରାତି ପ୍ରମୋଦ ଉଦ୍ୟାନରେ ଲୁଚିରହିବାକୁ କହିଥିଲା । କିନ୍ତୁ କଳିଙ୍ଗସେନାର ମନ ବତ୍ସରାଜଙ୍କ ସହିତ ମିଳନ ପାଇଁ ବ୍ୟାକୁଳ ହେଲା । ସେ ପ୍ରମୋଦ ଉଦ୍ୟାନରୁ ବାହାରକୁ ଆସି ରାଜଭବନର ଦ୍ୱାର ମୁହଁରେ ପହଞ୍ଚି ପ୍ରତିହାରୀ ଦ୍ୱାରା ବତ୍ସରାଜଙ୍କ ପାଖକୁ ଖବର



ପଠାଇଲା ଯେ, ତକ୍ଷଶିଳାର ରାଜା କଳିଙ୍ଗଦତ୍ତଙ୍କ ଝିଅ କଳିଙ୍ଗସେନା ତାଙ୍କୁ ବରଣ କରିବାକୁ ନିଜେ ଆସିଛି ଓ ସେ ତାକୁ ଗ୍ରହଣ କରନ୍ତୁ ।

କଳିଙ୍ଗସେନାର ସନ୍ଦେଶ ପ୍ରତିହାରୀ ଠାରୁ ପାଇ ବତ୍ସରାଜ ଉଦୟନ ବହୁତ ଆନନ୍ଦିତ ହେଲେ ଓ ପ୍ରତିହାରୀକୁ ଲୁଗାପଟା ଓ ଅଳଙ୍କାର ଦେଇ ସମ୍ମାନିତ କଲେ । ତା'ପରେ ସେ ଯୌଗନ୍ଧରାୟଣଙ୍କୁ ଡକାଇ ପଚାରିଲେ– ତକ୍ଷଶିଳର ରାଜା କଳିଙ୍ଗଦତ୍ତଙ୍କ ପୃଥିବୀ ବିଖ୍ୟାତ ସୁନ୍ଦରୀ ଝିଅ କଳିଙ୍ଗସେନା ମୋତେ ବରଣ କରିବାକୁ ସ୍ୱୟଂ ଏଠାକୁ ଚାଲି ଆସିଛନ୍ତି । ତା'ହେଲେ ମୋତେ କୁହ ମୁଁ କ'ଣ ତାଙ୍କୁ ସଙ୍ଗେ ସଙ୍ଗେ ବିବାହ କରିବି ?

ରାଜାଙ୍କ କଥା ଶୁଣି ମନ୍ତ୍ରୀ ଯୌଗନ୍ଧରାୟଣ ରାଜପ୍ରାସାଦର ଦ୍ୱାରକୁ ଯାଇ କଳିଙ୍ଗସେନାକୁ ଦେଖିଲେ ଓ କଳିଙ୍ଗସେନାର ସୌନ୍ଦର୍ଯ୍ୟରେ ମୁଗ୍ଧହୋଇ କ୍ଷଣେକାଳ ସ୍ତବ୍ଧ ହୋଇଗଲେ । ସେ ଭାବିଲେ– ଯା ଭଳି ସୁନ୍ଦରୀ ସାରା ସଂସାରରେ ନଥିବେ । ଦେବତାମାନେ ମଧ୍ୟ ଯାକୁ ଚାହୁଁଥିବେ । ଯଦି ବତ୍ସରାଜାଙ୍କୁ ଯେ ମିଳିଯିବ, ତା'ହେଲେ କଥା ସରିଲା । ରାଜା ତ ବଡ଼ ରସିକ ଓ ରୂପର ପୂଜାରୀ । ସେ ନୂଆ ରାଣୀକୁ ପାଇଲେ ସବୁକିଛି ଭୁଲିଯିବେ । ମୁଁ ମହାରାଣୀ ବାସବଦତ୍ତାଙ୍କୁ ଶପଥ ଦେଇଥିଲି ଯେ ପଦ୍ମାବତୀଙ୍କ ସହିତ ବତ୍ସରାଜଙ୍କ ବିବାହ ପରେ ଆଉ ମହାରାଜଙ୍କର ତୃତୀୟ ବିବାହ ହେବନାହିଁ । ଏଣୁ ମୋତେ ଯେମିତିହେଲେ ଏଇ ବାହାଘରକୁ ବନ୍ଦ କରିବାକୁ ହେବ, ନହେଲେ ମହାରାଣୀ ବାସବଦତ୍ତା ଜୀବନ ହରାଇଦେବେ ଓ ରାଜକୁମାର ନରବାହନଦତ୍ତଙ୍କ ଦେଖାଶୁଣା କରିବାକୁ କେହି ରହିବେ ନାହିଁ । ରାଣୀ ପଦ୍ମାବତୀ ମଧ୍ୟ ଏଭଳି ଦୁରବସ୍ଥାରେ ବଞ୍ଚିବେ ନାହିଁ । ଯଦି ସେଇ ଦୁଇରାଣୀ ଜୀବିତ ନରହନ୍ତି, ତା'ହେଲେ ସେମାନଙ୍କର ବାପା ଉଜ୍ଜୟିନୀ ରାଜା ମହାସେନ ଓ ମଗଧରାଜା ପ୍ରଦ୍ୟୋତ ଆମର ବିରୋଧୀ ହୋଇଯିବେ । ତେଣୁ ରାଜାଙ୍କର ଏଇ ତୃତୀୟ ବିବାହ ହେଲେ ସାରା ରାଜ୍ୟର ସର୍ବନାଶ ହୋଇଯିବ ।

ଏହିଭଳି ଭାବି ଯୌଗନ୍ଧରାୟଣ ମହାରାଜ ଉଦୟନଙ୍କୁ କହିଲେ– ମହାରାଜ, ତ୍ରୈଲୋକ୍ୟ ସୁନ୍ଦରୀ କଳିଙ୍ଗସେନା ଆପଣଙ୍କୁ ବରଣ କରିବାକୁ ନିଜେ ଚାଲିଆସିଥିବାରୁ ଆପଣ ଧନ୍ୟ । ଏଇ ବିବାହ ହେଲେ ତକ୍ଷଶିଳାର ରାଜା କଳିଙ୍ଗଦତ୍ତ ଆମର ଅଧୀନ ହୋଇଯିବେ । କିନ୍ତୁ ସେ ପୃଥିବୀରେ ଅପ୍ରତିମ ସୁନ୍ଦରୀ ଓ ଜଣେ ପ୍ରତାପୀ ରାଜାଙ୍କ ଝିଅ, ତେଣୁ ଜ୍ୟୋତିଷମାନଙ୍କୁ ଡକାଇ ଶୁଭମୁହୂର୍ତ୍ତ ଦେଖି ବିଧିବଦ୍ଧ ଭାବେ ତାଙ୍କୁ ବିବାହ କରିବା ଉଚିତ । ବର୍ତ୍ତମାନ ଆପଣ ଗୋଟିଏ ଅଲଗା ଭବନରେ ରାଜକୁମାରୀଙ୍କ ରହିବା ବ୍ୟବସ୍ଥା କରିଦିଅନ୍ତୁ, ତାଙ୍କ ସେବା ପାଇଁ ଦାସ-ଦାସୀ ଖଞ୍ଜି ଦିଅନ୍ତୁ ଓ ତାଙ୍କୁ ଅଳଙ୍କାର ଆଦି ଦିଅନ୍ତୁ । କାଲି ସକାଳେ ମୁଁ ଆପଣଙ୍କ ପାଖକୁ ଜ୍ୟୋତିଷମାନଙ୍କୁ ପଠାଇବି ।

ଯୌଗନ୍ଧରାୟଣ ଜାଣିଥିଲେ ଯେ ଯଦି ସେ ରାଜାଙ୍କୁ ସିଧାସଳଖ ବିବାହ କରିବାକୁ ମନା କରିବେ ତା'ହେଲେ ସେ ରାଗିଯିବେ ଓ ସଙ୍ଗେ ସଙ୍ଗେ କଳିଙ୍ଗସେନାକୁ ବାହାହୋଇ ପଡ଼ିବେ । ତେଣୁ ସେ କୂଟନୀତି ପ୍ରୟୋଗକଲେ ।

କଳିଙ୍ଗସେନା ବତ୍ସରାଜଙ୍କ ପାଖକୁ ଅଭିସାର ପାଇଁ ଆସିଥିଲେ, କିନ୍ତୁ ସବୁ ଐଶ୍ୱର୍ଯ୍ୟ ଭିତରେ ରାଜପ୍ରାସାଦ ଭିତରେ ବନ୍ଦିନୀଟିଏ ଭଳି ରହିଲେ ।

ତା'ପର ଦିନ ଯୌଗନ୍ଧରାୟଣ ଜ୍ୟୋତିଷମାନଙ୍କୁ ବତ୍ସରାଜାଙ୍କ ପାଖକୁ ପଠାଇଲେ । ସେ ସେମାନଙ୍କୁ ଆଗରୁ ଶିଖାଇ ଦେଇଥିଲେ । ଜ୍ୟୋତିଷମାନେ ଗଣନାକରି ଏକ ସ୍ୱରରେ କହିଲେ– ମହାରାଜ, ଆଜିଠୁଁ ଛଅ ମାସ ପରେ ଯାଇ ଆପଣଙ୍କର ତକ୍ଷଶିଳାର ରାଜକୁମାରୀଙ୍କ ସହ ବିବାହ ଯୋଗ ଜୁଟୁଛି ।

ମୌଗନ୍ଧରାୟଣ ସେଠାରେ ଉପସ୍ଥିତ ଥିଲେ । ସେ ସେଇ ଜ୍ୟୋତିଷମାନଙ୍କ ଉପରେ ମିଛ ମିଛିକା କ୍ରୋଧ ଦେଖାଇ କହିଲେ— ଆରେ ଏ ଗୁଡ଼ାକ ସବୁ ଅଜ୍ଞାନୀ । ମହାରାଜ, ସେଇ ବିଶେଷ ଜ୍ୟୋତିଷଙ୍କୁ ଡକାଯାଉ, ଯାହାଙ୍କୁ ମହାରାଜ ସନ୍ତୁଷ୍ଟହୋଇ ପ୍ରଥମେ ନିଜ ହାତରେ ସମ୍ମାନିତ କରିଥିଲେ ।

ରାଜା ସମ୍ମାନିତ ଜ୍ୟୋତିଷଙ୍କୁ ଡକାଇଲେ । ତାଙ୍କୁ ମଧ୍ୟ ମୌଗନ୍ଧରାୟଣ ଆଗରୁ ଶିଖାଇ ଦେଇଥିଲେ । ସେ ମଧ୍ୟ ଅନ୍ୟ ଜ୍ୟୋତିଷମାନେ କହିଥିବା ସେଇ ଏକା କଥା କହିଲେ ।

ବସରାଜାଙ୍କ ମନ ଖରାପ ହୋଇଗଲା । ମୌଗନ୍ଧରାୟଣ କହିଲେ— ମହାରାଜ ! ସବୁଯାକ ଜ୍ୟୋତିଷ ତ ବିଚିତ୍ର କଥା କହୁଛନ୍ତି । ମୁଁ ତ ଚାହୁଁଥିଲି କଳିଙ୍ଗସେନାଙ୍କ ସହିତ ଆପଣଙ୍କର ବିବାହ ଆଜି ହୋଇଯାଉ । ଏବେ ଆପଣ ହୁକୁମ କରନ୍ତୁ କ'ଣ କରାଯିବ ।

ବସରାଜ କହିଲେ— କଳିଙ୍ଗସେନାଙ୍କୁ ମଧ୍ୟ ପଚରାଯାଉ— ସେ କ'ଣ ଚାହୁଁଛି । ସେ କ'ଣ ଏଠି ଛଅମାସ କାଳ ରହି ପାରିବ ?

ମୌଗନ୍ଧରାୟଣ କହିଲେ— ମୁଁ ନିଜେ ରାଜକୁମାରୀଙ୍କୁ ପଚାରି ଆସୁଛି ।

ସେ କଳିଙ୍ଗସେନା ରହୁଥିବା ଭବନକୁ ଗଲେ । କଳିଙ୍ଗସେନାର ଅଦ୍ଭୁତ ସୌନ୍ଦର୍ଯ୍ୟ ପୁଣିଥରେ ଦେଖି ସେ ଆହୁରି ନିଶ୍ଚିତ ଓ ଦୃଢ଼ ହୋଇଗଲେ ଯେ ଏଇ ଅନୁପମା ସୁନ୍ଦରୀ ବସରାଜଙ୍କୁ ବାହାହେଲେ ସର୍ବନାଶ ନିଶ୍ଚୟ ହେବ ।

କଳିଙ୍ଗସେନା ସହିତ ଆସିଥିବା ବୁଢ଼ା ମହନ୍ତକୁ ସେ ଏମିତି ପାଠ ପଢ଼ାଇଲେ ଯେ, ସେଇ ବୁଢ଼ା ମହନ୍ତ ମଧ୍ୟ କଳିଙ୍ଗସେନା ସହିତ କଥା ହୋଇ ସେଇ ଉତ୍ତର ଦେଲା ଯେ ବିବାହ ତ ଶୁଭମୁହୂର୍ତ୍ତରେ ହିଁ ହେବ ଓ କଳିଙ୍ଗସେନା ସେପର୍ଯ୍ୟନ୍ତ ଅପେକ୍ଷା କରିବ ।

କଳିଙ୍ଗସେନା ଭବନରୁ ଫେରି ମୌଗନ୍ଧରାୟଣ ବସରାଜାଙ୍କୁ ବୁଝାଇଲେ । ବସରାଜା ବହୁତ ଚିଡ଼ୁଥିଲେ । କିନ୍ତୁ କିଛି କହିପାରିଲେ ନାହିଁ ।

ମୌଗନ୍ଧରାୟଣ ମଧ୍ୟ ଦୁଇରାଣୀ— ବାସବଦତ୍ତା ଓ ପଦ୍ମାବତୀଙ୍କୁ ବୁଝାଇଲେ— କଳିଙ୍ଗସେନା ପ୍ରତି ରାଜାଙ୍କ ଆସକ୍ତି ଯୋଗୁ ଆପଣମାନେ ରାଜାଙ୍କୁ କିଛି ଗାଳି-ଗୁଲଜ କରିବେ ନାହିଁ, ତା'ହେଲେ କଥାଟା ଆହୁରି ବିଗିଡ଼ିଯିବ । କଳିଙ୍ଗସେନାର ସୌନ୍ଦର୍ଯ୍ୟ ଯୋଗୁ ଆମ ଉପରେ ଯେଉଁ ବିପଦ ପଡ଼ିଛି ମୁଁ ତାକୁ ମୋ କୂଟନୀତି ବଳରେ ହଟାଇଦେବି ।

ସେଦିନ ସୋମପ୍ରଭା ତା'ର ସଖିକୁ ଭେଟିବା ପାଇଁ ବସରାଜାଙ୍କ ପ୍ରମୋଦ ଉଦ୍ୟାନରେ ପହଞ୍ଚି ଜାଣିଲା ଯେ କଳିଙ୍ଗସେନା ନିଜର କୌତୂହଳ ରୋକି ନ ପାରି ପିଲାଳିଆମି କରି ବସିଲା ଆଉ ବସରାଜଙ୍କ ଭବନରେ ରହିବାକୁ ଚାଲିଯାଇଛି । ସେ ସେଇ ରାଜଭବନକୁ ଯାଇ କଳିଙ୍ଗସେନାକୁ ଭେଟିବାକୁ ଗଲା ଓ ତାକୁ ଝଗଡ଼ାଦେଇ କହିଲା— ଏ ତମେ କ'ଣ କଲ ? ଏବେ ତ ମୁଁ ଆଉ ତମକୁ ଭେଟିବାକୁ ଆସି ପାରିବି ନାହିଁ କି ତମକୁ ସାହାଯ୍ୟ କରିପାରିବି ନାହିଁ । ଏଇଟା ପରପୁରୁଷର ଭବନ । ମୁଁ ଯଦି ଏଠିକି ବାରମ୍ବାର ଆସିବି, ମୋ ସ୍ୱାମୀ ଅସନ୍ତୁଷ୍ଟ ହେବେ ।

କଳିଙ୍ଗସେନା ଏଇକ୍ଷଣି ତା'ର ତରବରିଆ କାମ ପାଇଁ ଅନୁତାପ କରୁଥିଲା, କିନ୍ତୁ କ'ଣ ବା ସେ କରିପାରିବ ? ସୋମପ୍ରଭା କହିଲା— ତମେ ଏବେ ବି ପିଲାହୋଇ ଅଛ । ମୌଗନ୍ଧରାୟଣ ଭାରି ଧୂର୍ତ୍ତ । ଦେବତା ଓ ବିଦ୍ୟାଧରମାନଙ୍କର ନଜର ମଧ୍ୟ ତମ ଉପରେ ଅଛି । ତେଣୁ ବହୁତ ସାବଧାନ ହୋଇ ଏଠାରେ ରୁହ । —ଏହିପରି କଳିଙ୍ଗସେନାକୁ ବୁଝାଇ ଓ ତାକୁ ସଉତୁଣୀମାନଙ୍କ ଷଡ଼ଯନ୍ତ୍ର ଓ ଅନ୍ତଃପୁରର କୁଟନ୍ତ୍ରୀମାନଙ୍କ କଥା କହି ସୋମପ୍ରଭା ତା'ଠାରୁ ବିଦାୟ ନେଇ ଚାଲିଗଲା ।



କଳିଙ୍ଗସେନା ଏକୁଟିଆ ହୋଇଗଲା । ସେ ଭାବିବାକୁ ଲାଗିଲା ଯେ, ସେ ଦୀର୍ଘ ଛଅମାସ ସେଠାରେ କେମିତି କଟାଇବ ।

ଏଣେ ସେ ବଶକରି ରଖିଥିବା ବ୍ରହ୍ମରାକ୍ଷସକୁ ମୌଗନ୍ଧରାୟଣ ଡକାଇଲେ । ସେ ତାକୁ କହିଲେ— ତମେ ତମ ଦିବ୍ୟ ଶକ୍ତି ବଳରେ ଅଦୃଶ୍ୟ ହୋଇ କଳିଙ୍ଗସେନାର ଭବନ ଉପରେ ନଜର ରଖ । ଦେବତା ଓ ବିଦ୍ୟାଧରମାନେ ତା' ରୂପରେ ଆକୃଷ୍ଟ । ତମେ ନଜର ରଖ ଯେ କେହି ଦିବ୍ୟପୁରୁଷ ତା'ସହିତ ମିଳିତ ହେବାକୁ ଆସୁଛିକି ନାହିଁ । କୌଣସି ଦେବତା, ଗନ୍ଧର୍ବ ବା ବିଦ୍ୟାଧର କଳିଙ୍ଗସେନା ସହିତ ବ୍ୟଭିଚାର କରିବା ଆମେ ଯଦି ହାତେସରି ଧରିପାରିବା, ତା'ହେଲେ ସବୁଠୁ ଭଲହେବ । ତା'ହେଲେ କଳିଙ୍ଗସେନାର ମନ ବସରାଜଙ୍କ ଉପରୁ ଫେରିଯିବ ।

ବ୍ରହ୍ମରାକ୍ଷସ କଳିଙ୍ଗସେନାର ଭବନ ଉପରେ ନଜର ରଖି ତା'ପରଦିନ ମୌଗନ୍ଧରାୟଣଙ୍କୁ ଜଣାଇଲା— କେବଳ ବିଦ୍ୟାଧାରୀ ସୋମପ୍ରଭା ତାକୁ ଭେଟିବାକୁ ଆସିଥିଲା । ଆଉ କେହି ତାଙ୍କ ଭବନର ପାଖ ମାଡ଼ି ନାହାନ୍ତି ।

ମୌଗନ୍ଧରାୟଣ ତାକୁ କହିଲେ— ଠିକ୍ ଏହିପରି ତା' ଭବନର ବାହାର ଓ ଭିତର ଉପରେ ନଜର ରଖ । କିଛି ନା କିଛି ଛିଦ୍ର ମିଳିଯିବ ।

କଳିଙ୍ଗସେନାର ମୋହରେ ପଡ଼ି ମହାରାଜ ଉଦୟନ କିଛିଦିନ ପାଇଁ ବାସବଦତ୍ତା ବା ପଦ୍ମାବତୀଙ୍କ ଭବନରେ ପାଦ ମଧ୍ୟ ପକାଇଲେ ନାହିଁ । ତା'ପରେ ସେ ଭାବିଲେ— ମୋର ଏଇ ଆସକ୍ତିରେ ଦୁଇ ରାଣୀ ବହୁତ ଦୁଃଖୀ ହୋଇଥିବେ । କୌଣସି ମତେ ସେମାନଙ୍କ ମନରଖିବା ପାଇଁ ମୋତେ ସେମାନଙ୍କ ପାଖକୁ ଯିବାକୁ ହେବ । —ତା'ପରେ ସେ ପାଳିକରି ଦୁଇ ରାଣୀଙ୍କ ପାଖକୁ ଯିବା ଆସିବା କଲେ ।

ଦୁଇ ରାଣୀଙ୍କୁ ମୌଗନ୍ଧରାୟଣ ଭଲ ଭାବେ ପାଠ ପଢ଼େଇ ରଖିଥିଲେ । ଦୁଇ ଜଣ ଯାକ ଆନନ୍ଦିତ ହୋଇ ରାଜାଙ୍କୁ ସ୍ୱାଗତ କଲେ । ରାଜା ସେମାନଙ୍କ ମନ ବୁଝାଇବାକୁ ପଚାରିଲେ— ତକ୍ଷଶିଳାର ରାଜକୁମାରୀ ମୋତେ ବାହାହେବା ପାଇଁ [illegible]କୁ ଆସିଛି । ଏଇକଥା ତମମାନଙ୍କୁ ଭଲଲାଗୁ ନଥିବ ନିଶ୍ଚୟ ।

ଦୁଇରାଣୀ ବହୁତ ବିନୟରେ କହିଲେ— ଆପଣ ଏ କି କଥା କହୁଛନ୍ତି, ମହାରାଜ ! ଏତ ଆମ ପାଇଁ ବଡ଼ ସୌଭାଗ୍ୟର କଥା । ସେଇ ରାଜକୁମାରୀ ଆପଣଙ୍କ ରୂପରେ ମୁଗ୍ଧହୋଇ ଆପଣଙ୍କୁ ବରଣକରିବାକୁ ନିଜେ ଚାଲିଆସିଛି— ଏତ ସମସ୍ତଙ୍କ ପାଇଁ ଗୌରବର କଥା । ପୁଣି ଏହାଦ୍ୱାରା ତକ୍ଷଶିଳା ସହିତ ଆମ ରାଜ୍ୟର ସମ୍ପର୍କ ଭଲ ରହିବ । ଆମେ ତ ଏଥିରେ ବହୁତ ଖୁସି । ଏଇ ଘରକୁ ତ ଲକ୍ଷ୍ମୀ ନିଜେ ଆସିଛନ୍ତି ।

ଦୁଇ ରାଣୀଙ୍କ ଏଇ ଭଳି ଏକାପ୍ରକାର କଥାରେ ରାଜା ଚିନ୍ତାରେ ପଡ଼ିଗଲେ । ସେ ଜାଣିଥିଲେ ବାସବଦତ୍ତା ଓ ପଦ୍ମାବତୀ ଏତେ ଉଦାର ତ ନୁହନ୍ତି । ତା'ହେଲେ ଦୁଇଜଣଯାକ ଏପରି କହୁଥିବାର କାରଣ କ'ଣ ? କିଛି ଚିନ୍ତାକରି ନପାରି ସେ ରାଣୀମାନେ କହିଥିବା କଥା ମୌଗନ୍ଧରାୟଣଙ୍କୁ କହିଲେ । ମୌଗନ୍ଧରାୟଣ ବଡ଼ ଗମ୍ଭୀର ହୋଇ କହିଲେ— ମହାରାଜ ! ସତୀ ସ୍ତ୍ରୀମାନେ ନିଜର ସ୍ୱାମୀଙ୍କ ଆନନ୍ଦ ପାଇଁ ବିଷ ମଧ୍ୟ ପିଇ ପାରନ୍ତି । ସ୍ୱାମୀଙ୍କ ପାଇଁ ସେମାନେ ନିଜ ଜୀବନ ଦେବାକୁ ପଛାନ୍ତି ନାହିଁ । ମହାରାଣୀ ବାସବଦତ୍ତା ଓ ପଦ୍ମାବତୀ ଆପଣଙ୍କ ଆନନ୍ଦ ପାଇଁ ନିଜ ନିଜ ଜୀବନ ବାଜି ଲଗାଇ ଦେଇଛନ୍ତି— ଏହା ହିଁ ବୁଝନ୍ତୁ । କାରଣ କଳିଙ୍ଗସେନାଙ୍କ ସହିତ ଆପଣଙ୍କ ବିବାହ ହେଲେ ଦୁଇ ରାଣୀଙ୍କର ତ ଛାତି ଫାଟିଯିବ, ଆଉ ସେଇ ଆଘାତରେ ସେମାନଙ୍କର ଜୀବନ ମଧ୍ୟ ଚାଲିଯାଇପାରେ ।

ଏତକ କହି ଯୌଗନ୍ଧରାୟଣ ରାଜାଙ୍କୁ ଏମିତି ରାଣୀମାନଙ୍କର କଥା ଶୁଣାଇଲେ, ସ୍ୱାମୀମାନଙ୍କର ଅନ୍ୟ ସୁନ୍ଦରୀମାନଙ୍କ ସହିତ ବିବାହ ଯୋଗୁଁ ସେମାନଙ୍କର ଜୀବନ ଚାଲିଯାଇଥିଲା ଓ ସେଇ ରାଣୀମାନଙ୍କ ବିଚ୍ଛେଦ ଦୁଃଖରେ ସେଇ ରାଜାମାନେ ଜୀବନ ଦେଇ ଦେଇଥିଲେ, ଯାହାଫଳରେ ସେଇ ରାଜ୍ୟମାନଙ୍କର ସର୍ବନାଶ ହୋଇଥିଲା ।

ଯୌଗନ୍ଧରାୟଣଙ୍କ କଥାରେ ରାଜା ଉଦୟନ ମନ ବଦଳିବାକୁ ଲାଗିଲା । ସେ ସତକୁ ସତ ଡରିଗଲେ ଯେ କାଳେ କଳିଙ୍ଗସେନାକୁ ସେ ବାହାହେଲେ ଦେବୀ ବାସବଦତ୍ତା ନିଜ ଜୀବନ ଦେଇ ନ ଦିଅନ୍ତି ଓ ତାଙ୍କ ଦୁଃଖରେ ପଦ୍ମାବତୀ ବି ସଂସାରରୁ ଚାଲି ନ ଯାଆନ୍ତି । ସେ ବହୁତ ଦୁଃଖିତ ସ୍ୱରରେ ଯୌଗନ୍ଧରାୟଣଙ୍କୁ କହିଲେ– ମୁଁ ମୋର ପରିବାର ଓ ରାଜ୍ୟର ସର୍ବନାଶ କରିବାକୁ ଚାହେଁନାହିଁ । ଭଲ ହୋଇଛି ଯେ ଜ୍ୟୋତିଷମାନେ ଛଅମାସ ପରେ ଲଗ୍ନ ପଡ଼ିବ ବୋଲି କହିଛନ୍ତି । ଏବେତ ମୋର ମନେ ହେଉଛି– ଏଇ ବିବାହ ନହେଲେ ଭଲହେବ ।

ତା'ପରେ ରାଜା ବାସବଦତ୍ତାଙ୍କ ପାଖକୁ ଯାଇ କହିଲେ– ମୋର ପ୍ରେମ କେବଳ ତମରି ପାଇଁ । କଳିଙ୍ଗସେନା ନିଜେ ଏଠିକୁ ଚାଲିଆସିଲା ତ ମୁଁ କ'ଣ କରିବି ? ମୁଁ ତାକୁ ତିରସ୍କାରକରି ତଡ଼ି ଦେଇନାହିଁ ଏଇଥି ପାଇଁ ଯେ ଯୌବନ ମଦରେ ମତୁଆଲୀ ଏଇ ସ୍ତ୍ରୀକୁ ତିରସ୍କାର କଲେ ସେ ତା'ର ବହୁତ ଖରାପ ପ୍ରତିଶୋଧ ନେଇପାରେ ।

ଅନ୍ୟ ପକ୍ଷରେ କଳିଙ୍ଗସେନା ବତ୍ସରାଜଙ୍କ ଦର୍ଶନ ପାଇଁ ବ୍ୟାକୁଳ ଥିଲା । ଦିନପରେ ଦିନ ବିତି ଯାଉଥିଲା କିନ୍ତୁ ତା'ର ପୀଡ଼ା ଶେଷ ହେଉ ନଥିଲା । ବିବ୍ରତ ହୋଇ ସେ ନିଜ ଭବନ ବାହାର ବଗିଚାରେ କେତେବେଳେ ବୁଲୁଥିଲା ତ କେତେବେଳେ ଭବନର ଛାତ ଉପରେ ବୁଲୁଥିଲା ।

ବିଦ୍ୟାଧର ରାଜା ମଦନବେଗ ବହୁ ପୂର୍ବରୁ କଳିଙ୍ଗସେନାର ରୂପରେ ଆକର୍ଷିତ ହୋଇଥିଲା ଓ ତାକୁ ଏମିତି ବୁଲାବୁଲି କରିବା କେତେ ଦିନ ହେଲା ଦେଖୁଥିଲା । ସେ କଳିଙ୍ଗସେନା ସହିତ ସଙ୍ଗମ କରିବା ପାଇଁ ସୁଯୋଗ ଖୋଜୁଥିଲା । ଦିନେ ରାତିରେ ସେ ଆକାଶ ମାର୍ଗରୁ କଳିଙ୍ଗସେନାର ଛାତ ଉପରେ ଓହ୍ଲାଇଲା । ଭଗବାନ ଶିବଙ୍କୁ ସ୍ମରଣ କରି ସେ ନିଜ ବିଦ୍ୟାବଳରେ ବତ୍ସରାଜ ଉଦୟନଙ୍କ ରୂପଧରି ଭବନର ତଳକୁ ଓହ୍ଲାଇଲା । ଦ୍ୱାରପାଳମାନେ ତାକୁ ରାଜା ଉଦୟନ ମନେକରି ପ୍ରଣାମକଲେ । ସେ କଳିଙ୍ଗସେନାଙ୍କ ଭବନ ଭିତରକୁ ଚାଲିଗଲା ।

କଳିଙ୍ଗସେନା ତାକୁ ନିଜ ଭବନରେ ଦେଖି ବିସ୍ମୟ ଓ ଆନନ୍ଦରେ ସ୍ତବ୍ଧ ହୋଇଗଲେ । ଯେଉଁ ରାଜା ଉଦୟନଙ୍କ ସହ ମିଳନ ପାଇଁ ଓ କ୍ଷଣଟିଏ ତାଙ୍କ ଦର୍ଶନ ପାଇଁ ସେ ଏତେଦିନ ହେଲା ବ୍ୟାକୁଳ ହେଉଥିଲେ ସେ ସମ୍ମୁଖରେ ଥିଲେ । ଆନନ୍ଦରେ ତାଙ୍କ ଆଖିରୁ ଲୁହ ଜକେଇ ଆସିଲା । କୌଣସି ପ୍ରକାରେ ନିଜକୁ ସମ୍ଭାଳି ସେ ସ୍ୱାଗତ ସମ୍ଭାଷଣ କଲେ ।

ମଦନବେଗ ବୁଝିପାରିଲା ଯେ କଳିଙ୍ଗସେନାକୁ ପାଇବାକୁ ହେଲେ ତାକୁ ବତ୍ସରାଜ ହୋଇ ରହିବାକୁ ପଡ଼ିବ । ସେ କହିଲା– ସୁନ୍ଦରୀ । ତମ ସହିତ ମିଳନ ପାଇଁ ମୁଁ ବହୁଦିନ ହେଲା ବ୍ୟାକୁଳ । କିନ୍ତୁ ଦୁଇ ରାଣୀ ଓ ମନ୍ତ୍ରୀମାନଙ୍କ ଯୋଗୁ ଆସିପାରୁ ନଥିଲି । ଆସ, ଆମେ ସବୁ ବିଧି ବିଧାନ ଛାଡ଼ିଦେଇ ଗାନ୍ଧର୍ବ ବିବାହ କରିନେବା ।

କଳିଙ୍ଗସେନା କହିଲା– ମୁଁ କେବେଠୁଁ ଏଇ ସମୟକୁ ଅପେକ୍ଷା କରିଛି, ମହାରାଜ ।

ଯୌଗନ୍ଧରାୟଣଙ୍କ ଆଦେଶରେ କଳିଙ୍ଗସେନାର ଭବନ ଉପରେ ଅଦୃଶ୍ୟହୋଇ ନଜର ରଖିଥିବା ବ୍ରହ୍ମରାକ୍ଷସ ଯୋଗେଶ୍ୱର ଏଇସବୁ ଘଟଣା ଦେଖୁଥିଲା । ସେ ସଙ୍ଗେ ସଙ୍ଗେ ବତ୍ସରାଜ ଉଦୟନ କଳିଙ୍ଗସେନାର ଭବନରେ ପହଞ୍ଚିବା ଖବର ଯୌଗନ୍ଧରାୟଣଙ୍କୁ ଜଣାଇବାକୁ ଗଲା । କିନ୍ତୁ



ରାଜଭବନରେ ପହଞ୍ଚି ବତ୍ସରାଜଙ୍କୁ ଯୌଗନ୍ଧରାୟଣଙ୍କ ପାଖରେ ବସିଥିବା ଦେଖିଲା । ସେ ବିସ୍ମିତ ହୋଇଗଲା । ସେ ଯୌଗନ୍ଧରାୟଣଙ୍କୁ ଏକାନ୍ତକୁ ଡାକି ସବୁକଥା କହିଲା । ଯୌଗନ୍ଧରାୟଣ କହିଲେ– ବତ୍ସରାଜଙ୍କ ବେଶରେ ସେ କେଉଁ ଦେବତା ବା ବିଦ୍ୟାଧର ହୋଇଥିବ । ତମେ ତମ ବିଦ୍ୟାବଳରେ ତା'ର ଅସଲ ରୂପ ଦେଖି ମୋତେ ଜଣାଅ ।

ଯୋଗେଶ୍ୱର ପୁଣି କଳିଙ୍ଗସେନାର ଭବନକୁ ଚାଲିଗଲା । ବତ୍ସରାଜ ବେଶଧାରୀ ବିଦ୍ୟାଧର ମଦନବେଗ ମିଠା ମିଠା କଥାକହି କଳିଙ୍ଗସେନାର ମନ ଜିଣି ନେଇଥିଲା । ସେ ଦୁଇଜଣ ଆମୋଦ ପ୍ରମୋଦରେ ବୁଡ଼ିଗଲେ ଓ କିଛି ସମୟପରେ ମଦନବେଗ ଓ କଳିଙ୍ଗସେନା ପରସ୍ପରକୁ କୋଳକରି ଶୋଇଗଲେ । ବ୍ରହ୍ମରାକ୍ଷସ ଯୋଗେଶ୍ୱର ସେତେବେଳେ ନିଜ ବିଦ୍ୟା ପ୍ରୟୋଗକରି ମଦନବେଗକୁ ତା' ନିଜ ଅସଲ ରୂପରେ ଦେଖି ପାରିଲା । ତା'ପରେ ସେ ଯୌଗନ୍ଧରାୟଣଙ୍କ ପାଖକୁ ଫେରିଆସି ଜଣାଇଲା ଯେ, ବତ୍ସରାଜଙ୍କ ବେଶଧାରୀ ଜଣେ ବିଦ୍ୟାଧର କଳିଙ୍ଗସେନାକୁ ଆଲିଙ୍ଗନକରି ଶୋଇଯାଇଛି ।

ଯୌଗନ୍ଧରାୟଣ ବାସବଦତ୍ତା, ପଦ୍ମାବତୀ ଓ ରାଜା ଉଦୟନଙ୍କୁ ଏକାଠିକରି କହିଲେ– ଆମେ ସମସ୍ତଙ୍କର ଏତେ ଇଚ୍ଛା ଥିଲା ଯେ, ତକ୍ଷଶିଳାର ରାଜକୁମାରୀ ଆମ ମହାରାଜାଙ୍କୁ ବିବାହ କରନ୍ତୁ । କିନ୍ତୁ ଆପଣମାନେ ସମସ୍ତେ ଯାଇ ନିଜ ଆଖିରେ ଦେଖନ୍ତୁ ରାଜକୁମାରୀ ତ ବ୍ୟଭିଚାରିଣୀ ।

ବତ୍ସରାଜ ଓ ଯୌଗନ୍ଧରାୟଣ କଳିଙ୍ଗସେନାର ଭବନ ଭିତରକୁ ଗଲେ । କଳିଙ୍ଗସେନା ପାଖରେ ମଦନବେଗ ଶୋଇଥିବା ଦେଖି ବତ୍ସରାଜ ଭୀଷଣ ରାଗିଗଲେ ଓ ତାକୁ ହାଣି ଦେବାପାଇଁ ଖଣ୍ଡା ଉଠାଇଲେ । ଠିକ୍ ସେଇ ସମୟରେ ମଦନବେଗର ନିଦ ଭାଙ୍ଗିଗଲା ଓ ସେ ଭବନରୁ ବାହାରିଯାଇ ଆକାଶ ମାର୍ଗକୁ ଉଡ଼ିଗଲା । ଏଇ ଗଣ୍ଡଗୋଳରେ କଳିଙ୍ଗସେନାର ନିଦ ଭାଙ୍ଗିଗଲା ଓ ସେ ବତ୍ସରାଜଙ୍କୁ ଦେଖି କହିଲା– ଆରେ, ଆପଣ କେତେବେଳେ ଉଠିଲେ । ଏମିତି ଖଣ୍ଡା ଉଠାଇ କାହିଁକି ଠିଆ ହୋଇଛନ୍ତି ?

ଯୌଗନ୍ଧରାୟଣ କହିଲେ– ଶୁଣ ରାଜକୁମାରୀ । କେହି ପୁରୁଷ ତମ ସହିତ ରମଣ କରୁଥିବା ଖବର ପାଇ ବତ୍ସରାଜ ଏଇ ସଙ୍ଗେ ସଙ୍ଗେ ଏଠାରେ ପହଞ୍ଚିଛନ୍ତି । ତମେ ଛଦ୍ମବେଶୀ ବିଦ୍ୟାଧର ସହିତ ରମଣ କରିଛ ।

କଳିଙ୍ଗସେନା ପ୍ରତିବାଦ କରି କହିଲା– ଯେ ଆପଣ କ'ଣ କହୁଛନ୍ତି ? ବତ୍ସରାଜ ତ ମୋ ସହିତ ଏତେ ସମୟ ହେଲା ଅଛନ୍ତି । ସେ ମୋ ସହିତ ଗାନ୍ଧର୍ବ ବିବାହ କରିଛନ୍ତି ।

ଯୌଗନ୍ଧରାୟଣ କହିଲେ– ଯେ ତାହା ମିଛ ।

କଳିଙ୍ଗସେନାର ଆଖି ଲୁହରେ ଛଳଛଳ ହୋଇଗଲା । ସେ ମହାରାଜ ଉଦୟନଙ୍କୁ କହିଲା– ରାଜା ଦୁଷ୍ମନ୍ତ ଯେମିତି ଶକୁନ୍ତଳାଙ୍କ ପ୍ରତି ଛଳ କରିଥିଲେ, ଆପଣ କ'ଣ ମୋ ସହିତ ସେମିତି କରିବେ ? ଆପଣ ମୋତେ ଧୋକା ଦେବେ ?

ବତ୍ସରାଜ ତଳକୁ ମୁହଁକରି ଧୀର ସ୍ୱରରେ କହିଲେ– ରାଜକୁମାରୀ, ମନ୍ତ୍ରୀ ସତ କହୁଛନ୍ତି । ମୁଁ ତାଙ୍କ ସହିତ ଏଇ ସଙ୍ଗେ ସଙ୍ଗେ ଏଠାକୁ ଆସିଛି । ମୋ ରୂପ ଧରି ଜଣେ ବିଦ୍ୟାଧର ତମ ସହିତ ଥିଲା, ଯିଏ ଏଇ ସଙ୍ଗେ ସଙ୍ଗେ ପଳେଇଗଲା । ମୁଁ ତମ ସହିତ ଗାନ୍ଧର୍ବ ବିବାହ କରିନାହିଁ କି ତମ ସହିତ କୌଣସି ଛଳ କପଟ କରିନାହିଁ । ତମ ସହିତ ସେଇ ବିଦ୍ୟାଧର ଛଳ କରିଛି ।

ଯୌଗନ୍ଧରାୟଣ ବତ୍ସରାଜାଙ୍କୁ କହିଲେ– ଚାଲନ୍ତୁ ମହିମା, ଆପଣଙ୍କ ଭବନକୁ ଚାଲନ୍ତୁ । ସେ ଏଇକ୍ଷଣି ଆଉ ଜଣଙ୍କର ବିବାହିତା । ରାତିରେ ଆପଣଙ୍କର ଏଠାରେ ରହିବା ଉଚିତ ନୁହେଁ ।

ରାଜା, ମନ୍ତ୍ରୀ ଓ ରାଣୀମାନେ କଳିଙ୍ଗସେନାର ଭବନରୁ ଚାଲିଗଲେ । କଳିଙ୍ଗସେନା ନିଜ ଭବନରେ ଝଡ଼ରେ ସାଥିଛଡ଼ା ହୋଇଥିବା ହରିଣୀଟିଏ ପରି ରହିଗଲା । ନିଜ ସାଥିରେ ହୋଇଥିବା ଛଳରେ ଦୁଃଖୀ ହୋଇ ସେ ଅନେକ ସମୟ ଧରି କାନ୍ଦିଲା । ତା'ପରେ ଆକାଶକୁ ଚାହିଁ ସେ କହିଲା– ଯେ ମୋ ସହିତ ଛଳ କରିଛି, ସେ ମୋ ସାମନାକୁ ଆସୁ । ସେ ମୋତେ ବିବାହ କରିଛି । ବର୍ତ୍ତମାନ ସେ ମୋର ସ୍ୱାମୀ ।

କଳିଙ୍ଗସେନା ଏତିକି କହିବା ମାତ୍ରେ ମଦନବେଗ ତା' ଦିବ୍ୟରୂପ ନେଇ କଳିଙ୍ଗସେନା ସମ୍ମୁଖରେ ଆବିର୍ଭୂତ ହେଲା । କଳିଙ୍ଗସେନା ପଚାରିଲା– ତମେ କିଏ ?

ମଦନବେଗ କହିଲା– ସୁନ୍ଦରୀ ! ମୁଁ ବିଦ୍ୟାଧରମାନଙ୍କ ରାଜା ମଦନବେଗ । ତମେ ତମ ବାପଘରେ ଥିଲାଦିନୁ ମୁଁ ତମ ଉପରେ ଆସକ୍ତ ଥିଲି ଓ ଏତେଦିନ ହେଲା ତମକୁ କୌଣସି ମତେ ପାଇବା ପାଇଁ ଉପାୟ ଚିନ୍ତା କରୁଥିଲି । ଯେତେବେଳେ ମୋର ବିଶ୍ୱାସ ହେଲା ଯେ, ମୌଗନ୍ଧରାୟଣ ତା'ର କୂଟନୀତି ବଳରେ ବତ୍ସରାଜଙ୍କ ମନ ତମଠୁଁ ପୁରା ଦୂରେଇ ନେଇଛନ୍ତି ଓ ସେ ତମକୁ ନିଜର କେବେ କରିବେ ନାହିଁ, ସେତେବେଳେ ମୁଁ ମୋ ପ୍ରେମ ପ୍ରକାଶ କରିବାକୁ ସିଦ୍ଧାନ୍ତ ନେଲି ।

ମଦନବେଗର କଥାଶୁଣି ଧୀରେ ଧୀରେ କଳିଙ୍ଗସେନାର ମନରୁ ଦୁଃଖର ଜଞ୍ଜା ବାହାରିଗଲା ଓ ସେ ପ୍ରକୃତିସ୍ଥ ହୋଇଉଠିଲା । ସେ ମଦନବେଗକୁ କହିଲା– ତମେ ମୋତେ ବିବାହ କରିଛ, ମୋତେ ନିଜର କରିନିଅ । ମୁଁ ବି ବର୍ତ୍ତମାନ ତୁମ ପ୍ରତି ସମର୍ପିତ । ବାପଘର ଛାଡ଼ି ଏଠାରେ ଏତେ ଦିନ ରହି ମୁଁ ପିଲାଳିଆମି କରିଥିଲି । ବର୍ତ୍ତମାନ ମୋତେ ତମ ସାଥିରେ ନେଇଯାଅ ।

ମଦନବେଗ କହିଲା– ପ୍ରିୟେ ! ତାହା କରିବା ସମ୍ଭବ ନୁହେଁ । ମର୍ତ୍ତ୍ୟଲୋକର ସୁନ୍ଦରୀମାନଙ୍କୁ ବିଦ୍ୟାଧରମାନେ ନିଜ ସଙ୍ଗରେ ଦିବ୍ୟଲୋକକୁ ନେଇଯାଇ ପାରିବେ ନାହିଁ । ସେମାନେ ମର୍ତ୍ତ୍ୟଲୋକର ନିଜର ପ୍ରିୟାମାନଙ୍କୁ ଏଇ ପୃଥିବୀ ଉପରେ ଓହ୍ଲାଇ ସଙ୍ଗମ କରନ୍ତି ଓ ନିଜ ଦିବ୍ୟଧାମକୁ ଫେରି ଯାଆନ୍ତି । ତମେ ମୋର ସବୁଦିନର ପ୍ରିୟା ଆଉ ମୁଁ ତୁମ ବିନା ରହିପାରିବି ନାହିଁ । ତେଣୁ ମୁଁ ତମକୁ ଭେଟିବାକୁ ବାରମ୍ବାର ଏଇ ଭବନକୁ ଆସିବି ।

ମଦନବେଗର କଥା ଶୁଣି କଳିଙ୍ଗସେନା କାନ୍ଦିବାକୁ ଲାଗିଲା । ସେ କହିଲା– ମୁଁ ବତ୍ସରାଜଙ୍କ ପ୍ରେମରେ ଅନ୍ଧହୋଇ ବାପଘର ଛାଡ଼ିଲି । ଏବେକିଣା ମୁଁ ତମପାଇଁ ସବୁକିଛି ଛାଡ଼ିବାକୁ ପ୍ରସ୍ତୁତ । ତମେ ମୋତେ ଏଇଠି ଛାଡ଼ିଦେବ ତ ମୋର କ'ଣ ହେବ ? ଏଠି ଏବେକିଣା ମୋର କିଏ ଅଛି ? ଏଠିକାର ଲୋକମାନେତ ପ୍ରଥମରୁ ମୋତେ ଅପମାନିତ କରି ଆସୁଛନ୍ତି, ଆଉ ଏବେକିଣା ତ ମୋର ଏଠାରେ ରହିବା ଆହୁରି କଠିନ ହୋଇଯିବ ।

ମଦନବେଗ ତାକୁ ବୁଝାଇ ସୁଝାଇ କହିଲା– ତମେ କିଏ, ତାହା ତମେ ଜାଣନାହିଁ । ତମେ ଜଣେ ଶାପଭ୍ରଷ୍ଟ ଅପ୍ସରା । ଶାପର ସମୟ ସରିବା ପର୍ଯ୍ୟନ୍ତ ତମକୁ ଏଠାରେ ରହିବାକୁ ପଡ଼ିବ । ତମର ଅଭିଶାପ ମଧ୍ୟ ଶିଘ୍ର ଶେଷ ହେବ । ତମର ଏଇଠାରେ ରହିବା ସମସ୍ତଙ୍କ ପାଇଁ ମଙ୍ଗଳ ହେବ ।

ଏହିଭଳି କଳିଙ୍ଗସେନା କୌଣସିରେ ରହିବାକୁ ଲାଗିଲା ଓ ମଦନବେଗ ତା ପାଖକୁ ଯା'ଆସ କଲା ।

ବତ୍ସରାଜ କଳିଙ୍ଗସେନାକୁ ବାହାହେବାର ଇଚ୍ଛା ତ୍ୟାଗକଲେ, କିନ୍ତୁ ତାର ଅନୁପମ ସୌନ୍ଦର୍ଯ୍ୟରେ ତାଥାପି ଆସକ୍ତ ଥିଲେ । ସେ ମଦନବେଗର ବିବାହିତା ସ୍ତ୍ରୀ ଜାଣି ମଧ୍ୟ ତାକୁ ଭୁଲିପାରୁ ନଥିଲେ । ଦିନେ ରାତିରେ ସେ କଳିଙ୍ଗସେନାର ଭବନରେ ପହଞ୍ଚିଲେ ଓ ତାକୁ ପ୍ରେମ ମାଗିଲେ । କଳିଙ୍ଗସେନା ତାଙ୍କୁ ନିଷେଧ କରିବାରୁ ସେ କ୍ରୋଧିତ ହୋଇ ତାକୁ କହିଲେ– ତମେ ବ୍ୟଭିଚାରିଣୀ ବୋଲି ସମସ୍ତେ ଜାଣନ୍ତି । ମୋ ସହିତ ସଙ୍ଗମ କଲେ ତମର କ'ଣ ବିଗିଡ଼ି ଯିବ ?



କଳିଙ୍ଗସେନା କହିଲା– ମୁଁ ଜଣେ ବିବାହିତା ସ୍ତ୍ରୀ । ନିଜ ସ୍ୱାମୀଙ୍କ ବ୍ୟତୀତ ଆଉ କେଉଁ ପୁରୁଷ ସହିତ ଏମିତି କଥା ମୁଁ ମନରେ ଆଣିପାରିବି ନାହିଁ ।

ଏହାପରେ ସେ ପତିବ୍ରତା ସ୍ତ୍ରୀମାନଙ୍କ ଉପରେ ଦୁରାଚାର କରିବା ଓ ତା'ର କୁପରିଣାମ ବିଷୟରେ ବତ୍ସରାଜଙ୍କୁ ବହୁତ ବୁଝାଇଲା ଓ ସେଇ ବିଷୟରେ ତାଙ୍କୁ କାହାଣୀମାନ ଶୁଣାଇଲା । ବତ୍ସରାଜ ମଧ୍ୟ ତା'ର ସତୀତ୍ୱ ଆଗରେ ପରାଜିତ ହୋଇ ମୁଣ୍ଡ ତଳକୁ କରି ଫେରିଗଲେ ।

କେତେ ମାସ ପରେ କଳିଙ୍ଗସେନାର ମଦନବେଗ ଔରସରୁ ଅପୂର୍ବ ସୁନ୍ଦରୀ ଝିଅଟିଏ ଜନ୍ମହେଲା । ଜନ୍ମ ବେଳରୁ ସେଇ ଝିଅର ସୌନ୍ଦର୍ଯ୍ୟର ଖ୍ୟାତି ଚାରିଆଡ଼େ ବ୍ୟାପିବାକୁ ଲାଗିଲା ଓ ଦିନେ ବାସବଦତ୍ତା ଓ ବତ୍ସରାଜ ତାକୁ ଦେଖିବାକୁ ଆସିଲେ । ରାଣୀ ବାସବଦତ୍ତା ସେଇ ଝିଅର ଅନୁପମ ସୌନ୍ଦର୍ଯ୍ୟରେ ମୁଗ୍ଧହୋଇ ତାକୁ କ୍ଷଣେକାଳ ଚାହିଁ ରହିଲେ । ତା'ପରେ ସେ କହିଲେ– ମୁଁ ମୋ ପୁଅ ନରବାହନ ପାଇଁ ଏଇଭଳି ଝିଅକୁ ବୋହୂ କରିବାକୁ ଚାହେଁ ।

ବିଦ୍ୟାଧର ମଦନବେଗ ଔରସରୁ ଜନ୍ମ ହୋଇଥିବାରୁ ଓ ମଦନଙ୍କର ସବୁ ସୌନ୍ଦର୍ଯ୍ୟର ସାକାର ପ୍ରତିମୂର୍ତ୍ତି ରୂପେ ଦିଶୁଥିବାରୁ କଳିଙ୍ଗସେନାର ଝିଅର ନାମ ମଦନମଞ୍ଚୁକା ରଖାଗଲା ।

ମଦନମଞ୍ଚୁକା ଟିକେ ବଡ଼ ହେବାରୁ ମହାରାଣୀ ବାସବଦତ୍ତା ତାକୁ ଦେଖିବା ପାଇଁ ଧାଈ ସହିତ ତାକୁ ତାଙ୍କ ଭବନକୁ ଡକାଇ ଥିଲେ । ଦିନେ ଧାଈ ମଦନମଞ୍ଚୁକାକୁ ନେଇ ବାସବଦତ୍ତାଙ୍କ ଭବନକୁ ଯାଉଥିଲାବେଳେ ରାଜକୁମାର ନରବାହନଦତ୍ତ ଆସିଗଲେ । ମହାରାଣୀ ନରବାହନଦତ୍ତ ଓ ମଦନମଞ୍ଚୁକାକୁ ପାଳିକରି ଦେଖିବାକୁ ଲାଗିଲେ ଓ ବତ୍ସରାଜ ଉଦୟନଙ୍କୁ କହିଲେ– ଦୁଇଜଣଙ୍କ ଯୋଡ଼ି କେତେ ସୁନ୍ଦର ଦେଖାଯାଉଛି ଦେଖ । ମୋର ତ ଇଚ୍ଛା ହେଉଛି ରାଜକୁମାରଙ୍କର ବିବାହ ସମୟ ଆସିଲେ ମୁଁ ତା ବାହାଘର ସେଇ ମଦନମଞ୍ଚୁକା ସହିତ ହିଁ କରିବି ।

ବତ୍ସରାଜ କହିଲେ– କଳିଙ୍ଗସେନାକୁ ଏଠାରେ ସମସ୍ତେ ବ୍ୟଭିଚାରିଣୀ କହୁଛନ୍ତି । ଆମେ ତାକୁ ଆମ ରାଜ୍ୟରେ ଶରଣ ଦେଇ ରଖିଛୁ । ସେଥିପାଇଁ ଆମର ବି ଅପବାଦ ହେଉଛି । ଏବେକିଣା ନରବାହନଦତ୍ତର ସାଥିରେ ସେଇ ଝିଅର ବାହାଘର ପ୍ରସ୍ତାବ ପକାଇଲେ ଲୋକମାନେ କ'ଣ କହିବେ ମୁଁ ଜାଣିପାରୁ ନାହିଁ । ଆମର ଏତେ ମହାନ୍ ବଂଶ ପରମ୍ପରାକୁ ସେଇ ଅପବାଦ ଉଚିତ ହେବ ନାହିଁ ।

ପରେ ଯେତେବେଳେ ମହାରାଣୀ ପୁଣି ନରବାହନଦତ୍ତ ସାଥିରେ ମଦନମଞ୍ଚୁକାର ବାହାଘର ପଡ଼ିବା ପାଇଁ ନିଜ ସଂକଳ୍ପ କଥା ଦୋହରାଇଲେ, ରାଜା ସେଇ ବିଷୟରେ ନିଜ ମନ୍ତ୍ରୀମାନଙ୍କ ସହିତ ପରାମର୍ଶ କଲେ । ମନ୍ତ୍ରୀମାନେ କହିଲେ– କଳିଙ୍ଗସେନା ବ୍ୟଭିଚାରିଣୀ ହୋଇଛି । ତା ଝିଅ ସହିତ ରାଜକୁମାରଙ୍କ ବାହାଘର କରିବା ଉଚିତ ହେବନାହିଁ ।

ମୌଗନ୍ଧରାୟଣ କହିଲେ– ମହିମା ! କଳିଙ୍ଗସେନା ବ୍ୟଭିଚାରିଣୀ ନୁହନ୍ତି । ସେ ଜଣେ ସତୀ ଓ ଉଚ୍ଚ ବଂଶୀୟ ସ୍ତ୍ରୀ । ମୁଁ ବ୍ରହ୍ମରାକ୍ଷସ ଯୋଗେଶ୍ୱରକୁ ତାଙ୍କ ଉପରେ ନଜର ରଖିବାକୁ ନିଯୁକ୍ତି କରିଥିଲି । ଯୋଗେଶ୍ୱର ମୋତେ କହିଛି ଯେ କଳିଙ୍ଗସେନା ବାସ୍ତବରେ ଦିବ୍ୟ ସ୍ତ୍ରୀ, ସେ ଶାପଭ୍ରଷ୍ଟ ହୋଇଥିବା ଯୋଗୁ ମର୍ତ୍ତ୍ୟଲୋକରେ ରହୁଛନ୍ତି । ପ୍ରକୃତରେ ନରବାହନଦତ୍ତ କାମଦେବଙ୍କ ଅବତାର ଓ କଳିଙ୍ଗସେନାଙ୍କ ଝିଅ ମଦନମଞ୍ଚୁକା ହେଉଛନ୍ତି ରତି । ସେ ଦୁଇଜଣଙ୍କ ମିଳନ ଆଗରୁ ବିଧାତା ଧାର୍ଯ୍ୟ କରିଛନ୍ତି ।

ବାସବଦତ୍ତା ଓ ମୌଗନ୍ଧରାୟଣଙ୍କ ଆଗ୍ରହ ପାଖରେ ରାଜାଙ୍କୁ ନଇଁଯିବାକୁ ପଡ଼ିଲା ଓ ଭବିଷ୍ୟତରେ ନରବାହନଦତ୍ତ ସହିତ ମଦନମଞ୍ଚୁକାର ବିବାହ ପାଇଁ ସେ ସ୍ୱୀକୃତି ଦେଲେ । କଳିଙ୍ଗସେନା ଏଇକଥା ଜାଣି ବଡ଼ ଆନନ୍ଦିତା ହେଲା ।

ନରବାହନଦତ୍ତ କିଶୋର ହୋଇସାରିଥିଲେ । ତାଙ୍କୁ ଯୁବରାଜ ପଦରେ ଅଭିଷେକ କରିବାକୁ ରାଜା ଉଦୟନଙ୍କର ଇଚ୍ଛା ହେଲା । ସବୁ ବିଦ୍ୟା ଓ କଳାରେ ନରବାହନଦତ୍ତ ପାରଦର୍ଶୀ ହୋଇଥିଲେ । ତାଙ୍କର ରୂପ, ପରାକ୍ରମ ଓ ବୁଦ୍ଧି ଅତୁଳନୀୟ ଥିଲା । ତାଙ୍କୁ ଯୁବରାଜ ପଦରେ ଅଭିଷିକ୍ତ କରାଗଲା ଓ ସାରା ରାଜ୍ୟ ଉତ୍ସବ ମୁଖରିତ ହୋଇଉଠିଲା ।

ନରବାହନଦତ୍ତଙ୍କ ଯୁବରାଜ ପଦରେ ଅଭିଷେକ ଧୂମଧାମରେ ସମ୍ପନ୍ନ ହେଲା । ଯୌଗନ୍ଧରାୟଣଙ୍କ ପୁଅ ମରୁଭୂତିଙ୍କୁ ଯୁବରାଜଙ୍କ ମୁଖ୍ୟ ମନ୍ତ୍ରୀ, ରୁମଣ୍ୱାନଙ୍କ ପୁଅ ହରିଶିଖଙ୍କୁ ତାଙ୍କର ପ୍ରଧାନ ସେନାପତି, ବସନ୍ତକଙ୍କ ପୁଅ ତପନ୍ତକଙ୍କୁ ତାଙ୍କର ବିଦୂଷକ ଓ ଇତ୍ୟକଙ୍କ ପୁଅ ଗୋମୁଖଙ୍କୁ ଯୁବରାଜଙ୍କ ପ୍ରଧାନ ପ୍ରମୁଖ ପ୍ରତିହାରୀ ରୂପେ ନିଯୁକ୍ତି କରାଗଲା ।

ତା'ପରେ ଯୁବରାଜ ନରବାହନଦତ୍ତ ଓ ମଦନମାଞ୍ଚୁକାଙ୍କ ଭିତରେ ପ୍ରେମ ମଧ୍ୟ ବଢ଼ିବାକୁ ଲାଗିଲା । ନରବାହନଦତ୍ତ ତାଙ୍କ ପ୍ରିୟାଙ୍କ ସହିତ ପ୍ରମୋଦ ଉଦ୍ୟାନରେ ବୁଲିବାକୁ ଲାଗିଲେ । କେତେବେଳେ ସେ ବୀଣା ବଜାଇଲେ ତ ମଦନମାଞ୍ଚୁକା ତାଙ୍କ ସହିତ ନୃତ୍ୟକଲେ । ନରବାହନଦତ୍ତ ଯେଉଁଭଳି ସବୁ କଳାରେ ପ୍ରବୀଣ ଥିଲେ ସେଇଭଳି ମଦନମାଞ୍ଚୁକା ମଧ୍ୟ ନୃତ୍ୟ ଓ ସଙ୍ଗୀତରେ ଅତୁଳନୀୟା ଥିଲେ ।

ଥରେ ଯୁବରାଜ ନରବାହନଦତ୍ତ ଉଦ୍ୟାନରେ ବୁଲୁଥିଲେ । ମନ୍ତ୍ରୀ ତପନ୍ତକ ତାଙ୍କ ପାଖକୁ ଆସି କହିଲେ– ଯୁବରାଜ ! ଏଇ ଉଦ୍ୟାନରେ ମୁଁ ଏଇମାତ୍ର ଦେଖିଲି ଯେ କେହି ଦେବକନ୍ୟା ଆକାଶରୁ ଓହ୍ଲାଇ ସେଇ ଅଶୋକ ଗଛ ତଳେ ଠିଆ ହେଲା । ମୁଁ ଚକିତ ହୋଇ ତାକୁ ଚାହିଁ ରହିଗଲି । ଠିକ୍ ସେତିକି ବେଳେ ସେ ମୋତେ ଇଶାରାରେ ଡାକିଲା ଆଉ ତାକୁ ଯୁବରାଜ ନରବାହନଦତ୍ତଙ୍କ ସହିତ ଭେଟ କରାଇ ଦେବାକୁ କହିଲା । ତା' କଥା ଶୁଣି ମୁଁ ଆପଣଙ୍କ ପାଖକୁ ଆସିଛି ।

ତପନ୍ତକର କଥାଶୁଣି ନରବାହନଦତ୍ତ ସେ କହିଥିବା ସ୍ଥାନରେ ପହଞ୍ଚିଲେ । ସତକୁ ସତ ସେଠାରେ ଦେବୀଟିଏ ପରି ଜଣେ ଅନୁପମ ସୁନ୍ଦରୀ ତାଙ୍କର ଅପେକ୍ଷାରେ ଠିଆ ହୋଇଥିଲା । ନରବାହନଦତ୍ତ ତାକୁ ପଚାରିଲେ– ସୁନ୍ଦରୀ, ତମେ କିଏ ଓ ଏଠାକୁ କାହିଁକି ଆସିଛ ?

ସେଇ ଯୁବତୀଟି କହିଲା– ଯୁବରାଜ ! ହିମାଳୟ ପର୍ବତ ଉପରେ ସୁନାରେ ତିଆରି କାଞ୍ଚନପ୍ରଭା ନାମକ ନଗର ଅଛି । ମୁଁ ସେଇ ନଗରର ରାଜା ବିଦ୍ୟାଧର ହେମପ୍ରଭ ଓ ତାଙ୍କ ରାଣୀ ଅଳଙ୍କାରପ୍ରଭାଙ୍କ ଝିଅ । ମୋର ନାଁ ରତ୍ନପ୍ରଭା । ମୋ ଜନ୍ମବେଳେ ଆକାଶବାଣୀ ହୋଇଥିଲା ଯେ ମୋର ବିବାହ କୌଶାମ୍ବୀର ରାଜକୁମାର ନରବାହନଦତ୍ତଙ୍କ ସହିତ ହେବ ଓ ସେଇ ନରବାହନଦତ୍ତ ଆମ ବିଦ୍ୟାଧରମାନଙ୍କର ସମ୍ରାଟ୍ ହେବେ । ପିଲାଦିନରୁ ମୋର ଆପଣଙ୍କୁ ଭେଟିବାକୁ ବହୁତ ଇଚ୍ଛାଥିଲା । ଏଇକ୍ଷଣି ମୁଁ ମୋ ମା'ଙ୍କ ଆଦେଶ ପାଇ ଏଠାକୁ ଆସିଛି । ଆପଣଙ୍କୁ ଦର୍ଶନ କରି ମୋ ଇଚ୍ଛା ପୂରଣ ହେଲା । ମୁଁ ମନେ ମନେ ଆପଣଙ୍କୁ ମୋର ସ୍ୱାମୀ ରୂପେ ବହୁ ଦିନରୁ ଗ୍ରହଣ କରିଛି । ବର୍ତ୍ତମାନ ମୋତେ ଗ୍ରହଣ କରିବା ଭାର ଆପଣଙ୍କ ଉପରେ ।

ଯୁବତୀର ମିଠା ମିଠା କଥା ଶୁଣି ଯୁବରାଜଙ୍କର ଇଚ୍ଛା ହେଲା ଯେ, ରତ୍ନପ୍ରଭା ସବୁବେଳେ ତାଙ୍କ ଆଖି ସାମନାରେ ରହୁ ଓ ତାଙ୍କ କାନରେ ସବୁବେଳେ ରତ୍ନପ୍ରଭାର କଥା ଶୁଣାଯାଉ । ସେ ତାକୁ କହିଲେ– ତମ ଭଳି ବିଦ୍ୟାଧର ସୁନ୍ଦରୀ ମୋ ପାଖକୁ ଆସିଛି, ମୁଁ ଧନ୍ୟ ହେଲି ।

ଦୁହିଁଙ୍କ ଏହିପରି କଥାବାର୍ତ୍ତା ହେଉଥିଲାବେଳେ ବିଦ୍ୟାଧର ସେନାବାହିନୀ ଆକାଶରୁ ଓହ୍ଲାଇବା ଦେଖାଗଲା । ରତ୍ନପ୍ରଭା କହିଲା– ମନେ ହେଉଛି ମୋ ବାପା ମୋତେ ଖୋଜି ଖୋଜି ଏଠାକୁ ଆସିଲେଣି ।



ବିଦ୍ୟାଧରମାନଙ୍କ ରାଜା ହେମପ୍ରଭ ତାଙ୍କ ପୁଅ ବଜ୍ରପ୍ରଭ ସହିତ ଯୁବରାଜ ନରବାହନଦତ୍ତଙ୍କୁ ଭେଟିଲେ । ଏଇ ଖବର ମହାରାଜା ଉଦୟନ ପାଇଲେ ଓ ସେ ମଧ୍ୟ ଯୌଗନ୍ଧରାୟଣଙ୍କ ସହ ହେମପ୍ରଭଙ୍କୁ ଭେଟିବାକୁ ଉଦ୍ୟାନକୁ ଆସିଲେ । ହେମପ୍ରଭ ଉଦୟନଙ୍କୁ କହିଲେ– ରାଜା ! ନରବାହନଦତ୍ତ ଭଳି ସ୍ୱାମୀ ମୋ ଝିଅ ପାଇବା ଆମର ସୌଭାଗ୍ୟ । ଆପଣ ଅନୁମତି ଦେଲେ ମୁଁ ରାଜକୁମାରଙ୍କୁ ଆମ ସାଙ୍ଗରେ କାଞ୍ଚନଶୃଙ୍ଗ ନଗରକୁ ନେଇଯିବି ।

କାଞ୍ଚନଶୃଙ୍ଗ ନଗରରେ ପହଞ୍ଚିଲା ପରେ ନରବାହନଦତ୍ତଙ୍କର ବିବାହ ରତ୍ନପ୍ରଭା ସହିତ ବଡ଼ ଧୂମଧାମ୍‌ରେ ହେଲା । ବିବାହ ପରେ ଯୁବରାଜ ସେ ଅପାର ବୈଭବଶାଳୀ ନଗରୀରେ ନବ-ବିବାହିତା ସ୍ତ୍ରୀ ସହିତ କିଛିଦିନ ରହିଲେ । ତା'ପରେ ସେ ତାଙ୍କ ଶାଶୁ-ଶ୍ୱଶୁରଙ୍କ ଅନୁମତି ନେଇ ରତ୍ନପ୍ରଭା ସହିତ କୌଶାମ୍ବୀକୁ ଫେରି ଆସିଲେ ।

ଦିନେ ସକାଳେ ରତ୍ନପ୍ରଭାଙ୍କ ପାଇଁ ତିଆରି ହୋଇଥିବା ମହଲରେ ତାଙ୍କ ସହିତ ଯୁବରାଜ ବସିଥିଲେ । ତାଙ୍କୁ ଭେଟିବାକୁ ତାଙ୍କ ମନ୍ତ୍ରୀ ଗୋମୁଖ ପ୍ରଭୃତି ଆସି ସେଠାରେ ପହଞ୍ଚିଲେ । ପ୍ରତିହାରୀ ସେମାନଙ୍କୁ ଦ୍ୱାର ପାଖରେ ଅଟକାଇ ଯୁବରାଜ ନରବାହନଦତ୍ତଙ୍କୁ ସେମାନଙ୍କ କଥା ଜଣାଇଲା । ଯୁବରାଜ ତାକୁ ସେମାନଙ୍କୁ ଭିତରକୁ ନେଇ ଆସିବାକୁ କହିଲେ । ରତ୍ନପ୍ରଭା ପ୍ରତିହାରୀକୁ କହିଲେ– ତମେ ସେମାନଙ୍କୁ ଏଇଭଳି ଦ୍ୱାର ପାଖରେ ଅଟକାଅ ନାହିଁ । ସେମାନେ ଆର୍ଯ୍ୟପୁତ୍ରଙ୍କ ବନ୍ଧୁ ।

ନରବାହନଦତ୍ତ କହିଲେ– ଏକଥା ସତ ଯେ ଗୋମୁଖ ପ୍ରଭୃତି ମୋର ଅଭିନ୍ନ ବନ୍ଧୁ । କିନ୍ତୁ ଆମ ରାଣୀ ଅନ୍ତଃପୁରରେ ଏଇ ରୀତି ଚଳି ଆସୁଛି ଯେ କେହି ପୁରୁଷ ଭିତରକୁ ଆସିବାକୁ ଚାହିଁଲେ ତାକୁ ରାଜା ବା ରାଣୀଙ୍କର ଅନୁମତି ନେବାକୁ ପଡ଼ିବ ।

ରତ୍ନପ୍ରଭା କହିଲେ– ମୁଁ ସେଇ ରୀତିକୁ ଠିକ୍ ବୋଲି ଭାବୁନାହିଁ । ସ୍ତ୍ରୀମାନଙ୍କ ଉପରେ ଏପରି ପହରା ଦେବା କେବଳ ଈର୍ଷା ବା ଅଜ୍ଞାନ । ସ୍ତ୍ରୀମାନେ ନିଜର ରକ୍ଷା ନିଜର ଚରିତ୍ର ବଳରେ ହିଁ କରିଥାନ୍ତି । ଏଇ ବିଷୟରେ ମୁଁ ଆପଣଙ୍କୁ କଥାଟିଏ ଶୁଣାଉଛି । ଶୁଣନ୍ତୁ ।

## ରତ୍ନାଧିପତି କଥା

ସମୁଦ୍ର ମଝିରେ ରତ୍ନକୂଟ ନାମରେ ଦ୍ୱୀପଟିଏ ଥିଲା । ରତ୍ନାଧିପତି ସେଠାରେ ଶାସନ କରୁଥିଲେ । ସେ ଭଗବାନ ବିଷ୍ଣୁଙ୍କର ଜଣେ ବଡ଼ ଭକ୍ତ ଥିଲେ । ସାରା ପୃଥିବୀ ଜୟକରି ସବୁ ରାଜକୁମାରୀଙ୍କୁ ବାହାହେବା ପାଇଁ ତାଙ୍କର ଇଚ୍ଛା ଥିଲା । ସେ ତାଙ୍କ ଇଚ୍ଛା ପୂରଣ ପାଇଁ ଭଗବାନ ବିଷ୍ଣୁଙ୍କୁ ସନ୍ତୁଷ୍ଟ କରି ତାଙ୍କଠାରୁ ବର ପାଇବାକୁ ତପସ୍ୟା କଲେ । ତାଙ୍କ ତପସ୍ୟା ଏତେ କଠିନ ଥିଲା ଯେ, ବିଷ୍ଣୁ ତାଙ୍କୁ ଅଧିକଦିନ ଅପେକ୍ଷା କରାଇ ପାରିଲେ ନାହିଁ । ସେ ରାଜାଙ୍କ ଭକ୍ତିରେ ସନ୍ତୁଷ୍ଟ ହୋଇ ତାଙ୍କ ସମ୍ମୁଖରେ ଆବିର୍ଭୂତ ହୋଇ କହିଲେ– ହେ ରାଜା ! ଉଠ ମୁଁ ତମ ଭକ୍ତିରେ ବହୁତ ସନ୍ତୁଷ୍ଟ । ତମ ଇଚ୍ଛା ପୂରଣ ହେବ । ଜଣେ ଗନ୍ଧର୍ବ ଜଣେ ଋଷିଙ୍କ ଠାରୁ ଅଭିଶାପ ପାଇ କଳିଙ୍ଗ ଦେଶରେ ଧଳା ହାତୀ ହୋଇ ଜନ୍ମ ହୋଇଛି । ସେଇ ହାତୀର ନାଁ ହେଉଛି ଶ୍ୱେତରଶ୍ମି । ତା'ର ମୋ ପ୍ରତି ଭକ୍ତି ଓ ତପଯୋଗୁ ତା'ର ପୂର୍ବ ଜନ୍ମର କଥା ମନେଅଛି । ମୋ ଆଦେଶରେ ସେ ଉଡ଼ି ଉଡ଼ି ଆସି ତମର ରଥହେବ । ଇନ୍ଦ୍ରଙ୍କ ଐରାବତ ଭଳି ସେ ମଧ୍ୟ ଅନନ୍ୟ । ତା'ଉପରେ ଚଢ଼ିଲେ ତମେ ପୃଥିବୀର ଯେ କୌଣସି ରାଜାକୁ ଜିତି ପାରିବ । ଏପରିକି ତମେ କୌଣସି ରାଜାକୁ ଯୁଦ୍ଧ କ୍ଷେତ୍ରରେ ଭେଟିବା ପୂର୍ବରୁ ମୁଁ ସେଇ ରାଜାକୁ ତା' ଝିଅକୁ ତମ ସ୍ତ୍ରୀରୂପେ ତମକୁ ଭେଟି ଦେବାକୁ ସ୍ୱପ୍ନରେ ହୁକୁମ ଦେବି ।

ଏଇଭଳି ଭାବରେ ତମେ ଅଶିହଜାର ରାଜକୁମାରୀଙ୍କୁ ତମର ରାଣୀ ଭାବରେ ପାଇବ । ଉଠ ଏବଂ ସେହିପରି କର । ଆଉ ସୁଖୀହୁଅ । ବିଷ୍ଣୁ ଏତକି କହି ଅନ୍ତର୍ଦ୍ଧାନ ହୋଇଗଲେ । ବର୍ତ୍ତମାନ ରାଜା ଅଭିଯାନ ଆରମ୍ଭ କଲେ । ସେ ସବୁ ରାଜାଙ୍କୁ ଜିଣିଲେ ଓ ସେମାନଙ୍କର ଝିଅମାନଙ୍କୁ ଆଣି ରାଣୀ କଲେ । ହାତୀର ମଙ୍ଗଳ ପାଇଁ ସେ ଦୈନିକ ପାଞ୍ଚଶହ ବ୍ରାହ୍ମଣଙ୍କୁ ଖୁଆଇଲେ । ସମୟ ଗଡି ଚାଲିଲା ଓ ନିର୍ଦ୍ଦିଷ୍ଟ ଭାବେ କିଛି ଘଟିଲା ନାହିଁ ।

ଦିନେ ରାଜା ସେଇ ହାତୀ ଉପରେ ଚଢ଼ି ଅନେକ ଦ୍ୱୀପ ବୁଲିଆସିଲେ । ତାଙ୍କ ରାଜଧାନୀରେ ହାତୀରୁ ଓହ୍ଲାଇବା ବେଳେ ଗରୁଡ଼ ପକ୍ଷୀଟିଏ ହାତୀର ମୁଣ୍ଡକୁ ଖୁମ୍ପିଲା । ରାଜା ବର୍ଚ୍ଛାରେ ପକ୍ଷୀଟିକୁ ଭୁଷିଦେବାକୁ ଚେଷ୍ଟାକଲେ କିନ୍ତୁ ପକ୍ଷୀଟି ଉଡି ଚାଲିଗଲା । ହାତୀଟି ଖୁମ୍ପା ଖାଇଥିବା ଯୋଗୁ ତଳେ ପଡିଗଲା ଓ ଅଚେତ ହୋଇଗଲା । କେତେ ସମୟରେ ତା'ର ଚେତା ଫେରିଲା କିନ୍ତୁ ସେ ଖାଇଲା ନାହିଁ କି ପିଇଲା ନାହିଁ । ରାଜା ସବୁ ଗ୍ରହ ଦେବତାଙ୍କୁ ପୂଜାକଲେ ଓ ମନେ ମନେ ପ୍ରତିଜ୍ଞା କଲେ ଯେ ଯଦି ଦେବତାମାନେ ଆବିର୍ଭାବ ହୋଇ ସେଇ ସମ୍ଭ୍ରାନ୍ତ ହାତୀର ପୁଣି ଶକ୍ତି ଫେରିବା ବିଷୟରେ କିଛି ଉପଦେଶ ନ ଦିଅନ୍ତି, ତା'ହେଲେ ସେ ତାଙ୍କ ନିଜ ମୁଣ୍ଡ କାଟିଦେବେ । ସେଇଯା ପ୍ରତିଜ୍ଞାକରି ରାଜା ଖଣ୍ଡା ଉଠାନ୍ତେ ଶୂନ୍ୟବାଣୀ ଶୁଣିଲେ– ଯଦି କେହି ପତିବ୍ରତା ସ୍ତ୍ରୀ ସେଇ ହାତୀଟିକୁ ଛୁଇଁଦେବ, ତା'ହେଲେ ହାତୀଟି ତା'ର ପୂର୍ବଶକ୍ତି ଓ ତେଜ ଫେରିପାଇବ । ଏହା ବାଦ୍ ଆଉ ଅନ୍ୟ କିଛି ଉପାୟ ନାହିଁ ।

ହାତୀଟି ପାଞ୍ଚଦିନକାଳ ଚେତା ହରାଇ ପଡ଼ି ରହିଲା ।

ରାଜା କିଛି ସମୟ ପାଇଁ ଚକିତ ହୋଇ ଠିଆହୋଇ ରହିଲେ । ତା'ପରେ ତାଙ୍କ ଜ୍ୟେଷ୍ଠ ରାଣୀଙ୍କୁ ଡାକି ହାତୀଟିକୁ ଛୁଇଁବାକୁ କହିଲେ । ରାଣୀ ହାତୀଟିକୁ ଛୁଇଁଲେ କିନ୍ତୁ ହାତୀ ଉଠିଲା ନାହିଁ । ଜଣକ ପରେ ଜଣେ ଅଶି ହଜାର ରାଣୀ ସମସ୍ତେ ହାତୀଟିକୁ ଛୁଁଇଲେ କିନ୍ତୁ ସବୁ ନିଷ୍ଫଳ ହେଲା । ତା'ପରେ ସେ ନଗରର ସବୁ ସ୍ତ୍ରୀଲୋକମାନଙ୍କୁ ଡକାଇଲେ ଓ ସେମାନେ ହାତୀକୁ ଛୁଇଁଲେ କିନ୍ତୁ ତଥାପି ହାତୀ ଉଠିଲା ନାହିଁ । ସାରା ନଗରରେ ଓ ତାଙ୍କ ଅନ୍ତଃପୁରରେ କେହି ଜଣେ ସତୀ ସ୍ତ୍ରୀ ନଥିବା ଜାଣି ରାଜା ଲଜ୍ଜିତ ହେଲେ ।

ସେତିକି ବେଳେ ତାମ୍ରଲିପ୍ତର ଜଣେ ବଣିକ ହର୍ଷଗୁପ୍ତ ସେଇ ନଗରକୁ ଆସିଲା । ତା'ସହିତ ଶିଳାବତୀ ନାମରେ ଜଣେ ଚାକରାଣୀ ଥିଲା । ସେ ହାତୀ ବିଷୟରେ ଶୁଣିଥିଲା ଓ ହାତୀଟିକୁ ଦେଖିଲା । ସେ ତା'ର ମାଲିକ ବଣିକ ହର୍ଷଗୁପ୍ତକୁ କହିଲା ଯେ ଅନୁମତି ମିଳିଲେ ସେ ହାତୀଟିକୁ ଛୁଇଁବ । ହର୍ଷଗୁପ୍ତ ରାଜାଙ୍କୁ ତା ଚାକରାଣୀ ଶିଳାବତୀ କହିଥିବା କଥା କହି ଅନୁମତି ଆଣିଲା । ସଙ୍ଗେ ସଙ୍ଗେ ଶିଳାବତୀ ସମ୍ଭ୍ରମରେ ହାତୀ ପାଖକୁ ଗଲା । ସେ ମନକୁ ମନ କହିଲା– ମୁଁ କେବେ ଯଦି ଏପରିକି ସ୍ୱପ୍ନରେ ମଧ୍ୟ ମୋର ସ୍ୱାମୀଙ୍କୁ ଛାଡି ଅନ୍ୟ ପୁରୁଷକୁ ଭାବି ନଥିବି, ତା'ହେଲେ ଏଇ ହାତୀଟି ଉଠି ଠିଆହେଉ । ତା'ପରେ ସେ ହାତୀଟିକୁ ଧୀରେ ଛୁଇଁଲା । ରାଜା ଓ ଉପସ୍ଥିତ ସବୁ ଲୋକଙ୍କୁ ଚକିତ କରି ହାତୀଟି ଉଠି ଠିଆହେଲା ଓ ସାଧାରଣ ଭାବରେ ବ୍ୟବହାର କଲା । ରାଜା ଖୁବ୍ ଖୁସିହୋଇ ଶିଳାବତୀକୁ ବହୁତ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ମୂଲ୍ୟବାନ ଉପହାରମାନ ଦେଲେ । କୃତଜ୍ଞତାରେ ରାଜା ବଣିକ ହର୍ଷଗୁପ୍ତକୁ ନଗରର ଗୋଟାଏ କୋଠାଘର ଦେଲେ ଓ ଜଣେ ସମ୍ମାନୀୟ ନାଗରିକ ଭାବେ ତାଙ୍କ ନଗରରେ ରହିବାକୁ ଅନୁରୋଧ କଲେ । ତା'ପରେ ସେ ତାଙ୍କ ରାଣୀମାନଙ୍କୁ ଛୁଇଁଲେ ମଧ୍ୟ ନାହିଁ । ସେ ସେମାନଙ୍କୁ ଖାଦ୍ୟପେୟ, ବସ୍ତ୍ର ଓ ଅଳଙ୍କାର ଦେଲେ ହେଲେ ସେମାନଙ୍କଠାରୁ ଦୂରରେ ରହିଲେ ।



କେତେ ଦିନପରେ ରାଜା ହର୍ଷଗୁପ୍ତକୁ ଭେଟିଲେ ଓ ତାଙ୍କ ଆଗରେ ଶିଳାବତୀକୁ ତା ବାପ-ମା'ଙ୍କର ଆଉ କେହି ଝିଅ ଅଛି କି ବୋଲି ପଚାରିଲେ । ତା' ଭଉଣୀ ରାଜଦତ୍ତା ତାମ୍ରଲିପ୍ତରେ ଅଛି ବୋଲି ସେ ରାଜାଙ୍କୁ ଉତ୍ତର ଦେଲା । ବିଳମ୍ବ ନ କରି ହର୍ଷଗୁପ୍ତ ଓ ଶିଳାବତୀଙ୍କୁ ସେଇ ହାତୀ ପିଠିରେ ବସାଇ ରାଜା ତାମ୍ରଲିପ୍ତ ଗଲେ । ଶିଳାବତୀ ତା'ର ଭଉଣୀ ରାଜଦତ୍ତାକୁ ଆଣି ରାଜାଙ୍କୁ ଭେଟ କରାଇଲା ଓ ରାଜା ସନ୍ତୁଷ୍ଟ ହେଲେ । ସେ ଶିଳାବତୀକୁ ସେମାନଙ୍କର ବାହାଘର ପାଇଁ ବନ୍ଦୋବସ୍ତ କରିବାକୁ କହିଲେ । ରାଜା ମଧ୍ୟ କେତେଜଣ ଜ୍ୟୋତିଷଙ୍କ ସହ ପରାମର୍ଶ କଲେ । ଜ୍ୟୋତିଷମାନେ କହିଲେ ତିନିମାସ ପରେ ବାହାଘର କଲେ ସମ୍ବନ୍ଧ ଉତ୍ତମ ଓ ସୁଖକର ହେବ । କିନ୍ତୁ ରାଜାଙ୍କର ଏତେଦିନ ଅପେକ୍ଷା କରିବାକୁ ଧୈର୍ଯ୍ୟ ନଥିଲା । ଶିଳାବତୀ ଦ୍ୱାରା ବଶହୋଇ ସେ ରାଜଦତ୍ତାକୁ ସେଇ ସ୍ଥାନରେ ସଙ୍ଗେ ସଙ୍ଗେ ବିବାହ କଲେ । ସମସ୍ତେ ରତ୍ନକୂଟକୁ ଫେରି ଆସିଲେ ।

ମଝି ସମୁଦ୍ରରେ ଥିବା ଗୋଟିଏ ଦ୍ୱୀପକୁ ରାଜା ରାଜଦତ୍ତାକୁ ନେଇଗଲେ । ସେଠାରେ ସୁନ୍ଦର ରାଜପ୍ରାସାଦଟିଏ ଥିଲା । ସେ ତାଙ୍କ ରାଣୀଙ୍କ ପାଇଁ ଅନେକଗୁଡିଏ ଚାକରାଣୀ ଖଞ୍ଜିଦେଲେ । ରାତିରେ ସେ ଦ୍ୱୀପରେ ରାଜଦତ୍ତା ସହିତ କଟାଉଥିଲେ ଓ ଦିନରେ ସେ ତାଙ୍କ ରାଜଧାନୀକୁ ରାଜକାର୍ଯ୍ୟ ବୁଝିବା ପାଇଁ ଚାଲିଯାଉଥିଲେ । କୌଣସି ବିଶେଷ ଘଟଣା ନ ଘଟି ବର୍ଷ ପରେ ବର୍ଷ ବିତିଗଲା । ରାଣୀଙ୍କ ଆବଶ୍ୟକ ପଦାର୍ଥ ତାଙ୍କ ପାଖକୁ କେବଳ ହାତୀ ସାହାଯ୍ୟରେ ପଠାଯାଉ ଥିଲା ।

ଦିନେ ରାଜା ଖରାପ ସ୍ୱପ୍ନଟିଏ ଦେଖି ଉଠି ପଡିଲେ । ଖରାପ ପ୍ରଭାବକୁ ଏଡାଇବା ପାଇଁ ସେ ପୂଜାପାଠ କରାଇଲେ । ସେ ଓ ତାଙ୍କ ରାଣୀ ରାଜଦତ୍ତା ମଧୁର ଫୁଲର ରସରୁ ଗୋଟିଏ ଢୋକ ପିଆଲା ପିଇଲେ । ରାଜଦତ୍ତାକୁ ସାମାନ୍ୟ ନିଶା ଧରିଥିଲା ଓ ସେ ରାଜାଙ୍କୁ ତା' ଆଲିଙ୍ଗନରୁ ମୁକୁଳିବାକୁ ଦେଲା ନାହିଁ । ରାଜା କୌଣସି ମତେ ରାଜଦତ୍ତାର ବନ୍ଧନରୁ ନିଜକୁ ମୁକୁଳାଇଲେ ଓ ତାକୁ ଶିଘ୍ର ଫେରି ଆସିବାର ପ୍ରତିଶ୍ରୁତି ଦେଇ ନିଜର ରାଜଧାନୀକୁ ଚାଲିଗଲେ ।

ରାଜା ଚାଲିଗଲା ପରେ ଚାକରାଣୀମାନେ ରାଜଦତ୍ତାକୁ ଏକୁଟିଆ ଛାଡିଦେଇ ସେମାନଙ୍କ ଦୈନନ୍ଦିନ କାର୍ଯ୍ୟ କରିବାକୁ ବାହାରିଗଲେ । ରାଜଦତ୍ତା ଲକ୍ଷହୀନ ଭାବରେ ତା' କୋଣୀରେ ବୁଲୁ ବୁଲୁ ଅଳିନ୍ଦକୁ ଆସିଲା । ସେ ଅଚାନକ ତଳକୁ ଚାହିଁ ଗୋଟିଏ ସୁନ୍ଦର ଯୁବକକୁ ଦେଖିଲା । ସେ କ୍ଳାନ୍ତହୋଇ ରାଜପ୍ରାସାଦର ପାହଚରେ ଭରାଦେଇ ବସିଥିଲା । ରାଜଦତ୍ତା କାମନାରେ ଜର୍ଜରିତ ହୋଇ ତା'ପାଖକୁ ଆସିଲା ଏବଂ ତା' ପରିଚୟ ଓ ସେ କେମିତି ଏଇ ଅଭେଦ୍ୟ ଦ୍ୱୀପକୁ ଆସିଲାବୋଲି ପଚାରିଲା ।

ଯୁବକ ଉତ୍ତର ଦେଲା– ହେ ସୁନ୍ଦରୀ । ମଥୁରା ନଗରୀର ବାସିନ୍ଦା, ଜଣେ ବଣିକଙ୍କର ମୁଁ ପୁଅ । ମୋ ନାଁ ପବନସେନ । ମୋ ବାପା ମରିଗଲେ ଓ ମୋର ଆତ୍ମୀୟମାନେ ମୋର ସମ୍ପତ୍ତିବାଡି ଠକିନେଲେ । ଅସହାୟ ହୋଇ ମୁଁ ଘରଛାଡି ବିଦେଶରେ ଅନ୍ୟମାନଙ୍କ ସେବାକରି ବଞ୍ଚୁଥିଲି । ଛୋଟ ଛୋଟ ବେପାର କରି ମୁଁ କିଛି ଟଙ୍କା ରୋଜଗାର କଲି । ମୁଁ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଉଥିଲାବେଳେ ବାଟ ଭୁଲିଗଲି ଓ ଡକାୟତମାନେ ମୋର ସବୁ ଜିନିଷପତ୍ର ଓ ଟଙ୍କା ପଇସା ଲୁଟ୍ କରିନେଲେ । କନକକ୍ଷେତ୍ରକୁ ଖଣିମାନଙ୍କରେ କାମ କରିବାକୁ ଯାଉଥିବା କେତେଜଣ ବାଟୋଇଙ୍କ ସହିତ ମୋର ଭେଟହେଲା ଓ ମୁଁ ସେମାନଙ୍କ ସହିତ ଗଲି । ରାଜାଙ୍କୁ ତାଙ୍କ ଅଂଶ ଦେବାକୁ ରାଜିହୋଇ ସୁନା ଓ ଅନ୍ୟ ମୂଲ୍ୟବାନ ପଥର ଖୋଳିବା ପାଇଁ ଆମେ ବିଭିନ୍ନ ସ୍ଥାନ ଖୋଳିଲୁ । ଆମ ଭିତରେ ଥିବା ଭାଗ୍ୟବାନ୍‌ମାନେ କିଛି ସମ୍ପଦ ପାଇଲେ କିନ୍ତୁ ବର୍ଷେକାଳ କଠିନ ପରିଶ୍ରମ କରିବା ପରେ ମଧ୍ୟ

ମୁଁ କିଛି ପାଇଲି ନାହିଁ । ହତାଶରେ ମୁଁ ସେଇ ସ୍ଥାନ ଛାଡ଼ି ଚାଲି ଆସିଲି ଓ ପୋଡ଼ିହୋଇ ମରିବାକୁ ଠିକ୍ କଲି । ଜୀବଦତ୍ତ ନାମରେ ଜଣେ ବଣିକ ସେଇବାଟେ ଆସୁଥିଲେ ଓ ମୋତେ ମୋର ଚେଷ୍ଟାରୁ ନିବର୍ତ୍ତାଇ ସାହାଯ୍ୟ କରିବାକୁ ଚାହିଁଲେ । ସେ ମୋତେ ତାଙ୍କ ସହିତ ସୁବର୍ଣ୍ଣ ଦ୍ୱୀପକୁ ନେଇଗଲେ । ଆମେ ପାଞ୍ଚଦିନ ଧରି ସମୁଦ୍ର ମଝିରେ ଜାହାଜରେ ଯାଇଥିଲୁ ଓ ହଠାତ୍ ଝଡ଼ ଆସି ଆମ ଜାହାଜକୁ ବୁଡ଼ାଇ ଦେଲା । ସ୍ରୋତରେ ଭାସି ଯାଇ ଯାଇ ମୋ ହାତରେ କାଠ ଗଡ଼ଟିଏ ଲାଗିଲା । ସେଇ କାଠଗଡ଼କୁ କୁଣ୍ଢେଇ ପହଁରି ପହଁରି କୌଣସି ମତେ ଏଇ କୂଳରେ ଆସି ପହଞ୍ଚିଲି । ଏବେ ତମେ ମୋତେ ତମ ଆଗରେ ଦେଖୁଛ ।

ଯୁବକଟିର କଥା ଶୁଣିଲା ପରେ ଅର୍ଦ୍ଧ-ମାତାଲ ଅବସ୍ଥାରେ ରାଜଦତ୍ତା ତାକୁ ତା ନିକଟକୁ ଟାଣି ଆଣି ଆଲିଙ୍ଗନକଲା ଓ ତା ସେଜ ଉପରକୁ ନେଇଗଲା ।

ରାଜା ରାଜକାର୍ଯ୍ୟ ବୁଝିଲାବେଳେ ତାଙ୍କ ମନ ଲାଗୁ ନଥିଲା । ରାଜଦତ୍ତାକୁ ଏକୁଟିଆ ଛାଡ଼ି ଆସି ସେ ଠିକ୍ କରିନାହାଁନ୍ତି ବୋଲି ଭାବୁଥିଲେ । ପର ମୁହୂର୍ତ୍ତରେ ଏପରି ଭାବିବା ତାଙ୍କର ଭୁଲ ବୋଲି ମନେକଲେ । ସେ ଭାବିଲେ– ଯେତେବେଳେ ପଞ୍ଚ ଅଗ୍ନି– ନାରୀତ୍ୱ, ମଦ୍ୟପ ଅବସ୍ଥା, ଏକାକୀତ୍ୱ, ଯୁବାବସ୍ଥାରେ ପୁରୁଷ ଓ ସ୍ୱାଧୀନତା– ମିଳିତ ହୁଅନ୍ତି, କୋମଳ ଘାସତୁଲ୍ୟ ସତୀତ୍ୱ କ'ଣ ଠିଆ ହୋଇପାରି ନାମ ଓ ଖ୍ୟାତି ରକ୍ଷା କରିପାରିବ ? ଜଣେ ବିଶୃଙ୍ଖଳିତା ନାରୀକୁ ରକ୍ଷା କରିବା ଅସମ୍ଭବ । ହାତରେ ଘେରି ଝଡ଼କୁ ଅଟକାଇ ହେବନାହିଁ । ଏହିପରି ଭାବି ଭାବି ସେ ତତକ୍ଷଣରେ ନିର୍ଜନ ଦ୍ୱୀପରେ ରାଜଦତ୍ତା ରହୁଥିବା ପ୍ରାସାଦକୁ ଫେରି ଆସିଲେ । ସେ ରାଜଦତ୍ତାର ବଖରାକୁ ପଶିଯାଇ ତାକୁ ଆଉ ଜଣେ ପୁରୁଷର ଆଲିଙ୍ଗନରେ ଦେଖିଲେ । ସେ ରାଗିଯାଇ ଖଣ୍ଡା ଉଠାଇଲେ । କିନ୍ତୁ ପର ମୁହୂର୍ତ୍ତରେ ତାଙ୍କର ଭୁଲ ଭାବି ନିଜକୁ ସମ୍ଭାଳି ନେଲେ । ସେ ସେଇ ଲୋକଟିକୁ ଜୀବନରେ ନମାରି ଛାଡ଼ିଦେଲେ ଓ ତାକୁ ସଙ୍ଗେ ସଙ୍ଗେ ଦ୍ୱୀପ ଛାଡ଼ି ଚାଲିଯିବାକୁ ଆଦେଶ ଦେଲେ । ଲୋକଟି ପ୍ରାସାଦରୁ ଯାଇ ସମୁଦ୍ର କୂଳରେ ପହଞ୍ଚିଲା ଓ ଯେଉଁ କାଠଗଡ଼ାକୁ ଭେଳାକରି କୂଳରେ ଲାଗିଥିଲା, ସେଇ କାଠ ଗଡ଼ାକୁ ସମୁଦ୍ରକୁ ଫିଙ୍ଗି ତା' ଉପରେ ଉଠାଦେଇ ସ୍ରୋତରେ ପହଁରିବାକୁ ଲାଗିଲା ।

ରାଜା କିଛି ସମୟ ଠିଆହୋଇ ରହିଲେ ଓ ଘଟଣାକୁ ବିଶ୍ଳେଷଣ କଲେ । ସେ ମନକୁ ମନ କହିଲେ– ମୁଁ ଜ୍ୟୋତିଷମାନଙ୍କ କଥା ଶୁଣିଲି ନାହିଁ । ବିଷ ଅମୃତର ଭଉଣୀ ବୋଲି ମୁଁ ଭୁଲିଗଲି । ତା'ପରେ ସେ ନିଜ ରାଗକୁ ସମ୍ଭାଳି ରାଜଦତ୍ତାକୁ ସାଙ୍ଗରେ ନେଇ ନିଜ ରାଜଧାନୀକୁ ଫେରିଗଲେ । ସେ ମନ୍ତ୍ରୀମାନଙ୍କୁ ଡାକି ସେମାନଙ୍କୁ ରାଜଦତ୍ତା ବିଷୟରେ କହିଲେ । ତାଙ୍କର ଜୀବନ ପ୍ରତି ମୋହ ତୁଟିଗଲା । ସେ ତାଙ୍କର ସବୁ ସମ୍ପତ୍ତି ଶିଳାବତୀ ଓ ଅଧେ ରାଜ୍ୟ ପ୍ରଭାଜନ ନାମକ ଜଣେ ଉତ୍ତମ ବ୍ରାହ୍ମଣକୁ ଦାନ କରିଦେଲେ । ତାଙ୍କ ମନ୍ତ୍ରୀମାନଙ୍କୁ କହିଲେ ଯେ, ସେ ବଣକୁ ଯାଇ ତପସ୍ୟା କରିବେ ।

ସମୁଦ୍ରର ସ୍ରୋତକୁ ଡେଇଁ ପଡ଼ିଥିବା ପବନସେନ କୂଳରୁ ବହୁ ଦୂରକୁ ଭାସିଗଲାବେଳେ ଗୋଟିଏ ଜାହାଜକୁ ଦେଖି ସାହାଯ୍ୟ ପାଇଁ ଡାକ ପକାଇଲା । ଜାହଜର ମାଲିକ କ୍ରୋଧବର୍ମା ତାକୁ ଜାହାଜ ଉପରକୁ ଉଠାଇ ନେଲା । କିନ୍ତୁ କ୍ରୋଧବର୍ମାର ଦୁର୍ଭାଗ୍ୟକୁ କ୍ରୋଧବର୍ମାର ସ୍ତ୍ରୀ ଏକୁଟିଆ ଥିଲାବେଳେ ପବନସେନକୁ ସଙ୍ଗମ ସୁଖର ଆନନ୍ଦ ଦେବାକୁ ପ୍ରବୃତ୍ତ କଲା । ଅପେକ୍ଷା ନକରି ସେ ପବନସେନକୁ ଆଲିଙ୍ଗନ କଲା ଓ ଠିକ୍ ସେଇ ସମୟରେ କ୍ରୋଧବର୍ମା ସେମାନଙ୍କୁ ଆଲିଙ୍ଗନବଦ୍ଧ ଅବସ୍ଥାରେ ଦେଖିଦେଲା । ରାଗରେ କ୍ରୋଧବର୍ମା ପବନସେନକୁ ଜାହାଜରୁ ସମୁଦ୍ରକୁ ପେଲିଦେଲା ଓ ପବନସେନ ବୁଡ଼ି ମରିଗଲା ।



ରତ୍ନାଧିପତି ଶେଷରେ ରାଜଧାନୀ ଛାଡ଼ି ଚାଲିଯିବାକୁ ଠିକ୍ କଲେ । ସେ ତାଙ୍କ ହାତୀକୁ ଡାକିଲେ ଓ ଯେତେବେଳେ ତା' ଉପରେ ଚଢ଼ିବାକୁ ଗଲେ ହାତୀଟି ସ୍ୱର୍ଗୀୟ ମଣିମୁକ୍ତାରେ ବିଭୂଷିତ ଗନ୍ଧର୍ବ ପାଲଟିଗଲା । ବିସ୍ମିତହୋଇ ରାଜା ତାକୁ ପଚାରିଲେ– ତମେ କିଏ ?

ସେଇ ଗନ୍ଧର୍ବ କହିଲା– ରାଜା ! ମାଳୟ ପର୍ବତାଞ୍ଚଳରେ ବାସ କରୁଥିବା ଆମେ ଦୁଇଭାଇ ଗନ୍ଧର୍ବ ଥିଲୁ । ମୁଁ ସୋମପ୍ରଭା ଓ ଭାଇ ଦେବପ୍ରଭା । ଦେବପ୍ରଭାର ରାଜବତୀ ନାମରେ ସ୍ତ୍ରୀ ଥିଲା ଓ ସେ ତାକୁ ବହୁତ ଭଲପାଉଥିଲା । ସେ ସବୁବେଳେ ତାକୁ କୋଳରେ ବସାଉଥିଲା । ଦିନେ ମୋ ଭାଇ ମୋ ସହିତ ତା ସ୍ତ୍ରୀକୁ ନେଇ ତୀର୍ଥସ୍ଥାନ ସିଦ୍ଧବାସକୁ ଗଲା । ସେଠାରେ କେଶବଙ୍କ ମନ୍ଦିରରେ ଆମେ ପୂଜାକଲୁ ଓ ଭଜନ ଗାଇଲୁ । ରାଜବତୀର ସ୍ୱର ଖୁବ୍ ମଧୁର ଥିଲା ଓ ସେ ଗାଉଥିବାବେଳେ ସେଠାରେ ଥିବା ଜଣେ ସିଦ୍ଧ ସଙ୍ଗୀତରେ ବିହ୍ୱଳ ହୋଇଗଲା ଓ ରାଜବତୀ ମୁହଁକୁ ଚାହିଁରହି ମୁଗ୍ଧ ହୋଇଗଲା । ତାକୁ ଭୁଲ ବୁଝି ଓ ତା'ପ୍ରତି ଈର୍ଷାପରାୟଣ ହୋଇ ମୋ ଭାଇ ରାଗିଗଲା ଓ ସିଦ୍ଧକୁ କହିଲା ଯେ, ସେ କାହିଁକି ସତ୍ ଆଚରଣ କରିବାକୁ ଭୁଲିଗଲା ଓ ପର ସ୍ତ୍ରୀକୁ ଏକ ଲୟରେ ଅନାଇଲା ? ସିଦ୍ଧ ହସିଦେଇ କହିଲା– ତମେ ମୂର୍ଖ ! ମୁଁ ତା'ର ଗୀତ ଗାଇବାରେ ମୁଗ୍ଧ ହୋଇଥିଲି । ତମେ ଯେହେତୁ ଈର୍ଷାନ୍ୱିତ, ତମେ ମଣିଷ ହୋଇ ପୃଥିବୀର ଜନ୍ମ ହୁଅ । ତମ ସ୍ତ୍ରୀ ମଧ୍ୟ ତମ ସଙ୍ଗରେ ଯାଇ ପୃଥିବୀରେ ମଣିଷ ରୂପରେ ଜନ୍ମହେବ । ସେ ତମର ସ୍ତ୍ରୀହେବ ଓ ତମ ଆଖି ଆଗରେ ଅନ୍ୟ ପୁରୁଷ ସହ ରମଣ କରିବ ।

ସିଦ୍ଧର କଥା ଶୁଣି ମୁଁ ରାଗିଗଲି ଓ ମାଟିରେ ଡିଆରି ଗୋଟିଏ ଧଳା ହାତୀରେ ପିଟିଲି । ସେ ମୋତେ ଧଳାହାତୀ ହୋଇ ଜନ୍ମ ହେବାକୁ ଓ ମୋ ଭାଇକୁ ମୋ ପିଠିରେ ବୋହିବାକୁ ଅଭିଶାପ ଦେଲା । ମୋ ଭାଇ ମନରେ ଚେତା ପଶିଲା ଓ ସେଇ ସିଦ୍ଧ ଗୋଡ଼ତଳେ ସାଷ୍ଟାଙ୍ଗ ପଡ଼ିଯାଇ ଅଭିଶାପରୁ ମୁକ୍ତହେବା ଉପାୟ ବତାଇବାକୁ କହିଲା । ସିଦ୍ଧର ମୋ ଭାଇ ଉପରେ ଦୟାହେଲା । ସେ କହିଲା– ଯଦିଚ ତମେ ମଣିଷ ରୂପରେ ଜନ୍ମହେବ, ତମେ ଜଣେ ରାଜା ହେବ । ତମର ଭାଇ ହାତୀ ହୋଇ ତମର ବାହନ ହେବ ।

ଏଇଭଳି ଅଭିଶାପ ପାଇ ଆମେ ମଣିଷହୋଇ ଜନ୍ମ ହୋଇଛୁ । ମୁଁ ବର୍ତ୍ତମାନ ମୋର ଗନ୍ଧର୍ବ ରୂପ ଫେରି ପାଇଛି ।

ସୋମପ୍ରଭାର କଥାଶୁଣି ରାଜାଙ୍କର ପୂର୍ବ ଜନ୍ମକଥା ମନେ ପଡ଼ିଗଲା । ସେ ଜାଣିଗଲେ ଯେ, ସେ ଦେବପ୍ରଭା ଓ ରାଜଦତ୍ତା ହେଉଛି ତାଙ୍କର ପ୍ରିୟ ରାଜବତୀ । ତାଙ୍କର ସେଇ ପୂର୍ବ ଜନ୍ମ କଥା ମନେପଡ଼ିବା କ୍ଷଣି ରାଜା ଓ ରାଜଦତ୍ତା ଗନ୍ଧର୍ବ ପାଲଟିଗଲେ ଓ ମାଳୟରେ ସେମାନଙ୍କର ପୂର୍ବ ବାସସ୍ଥାନକୁ ଫେରିଗଲେ । ଶିଳାବତୀ ତାକୁ ଦିଆ ଯାଇଥିବା ସମ୍ପତ୍ତି ନେଇ ତାମ୍ରଲିପ୍ତି ଚାଲିଗଲା ଓ ପୁଣ୍ୟ କାମକରି ଦିନ ବିତାଇଲା ।

କଥାଟି ଶୁଣାଇସାରି ରତ୍ନପ୍ରଭା ନରବାହନଦତ୍ତଙ୍କୁ କହିଲେ– ଯୁବରାଜ ! ଏଇଥି ପାଇଁ ମୁଁ କହୁଛି ଯେ, ପୁରୁଷ ଈର୍ଷା ଯୋଗୁ ବଳପୂର୍ବକ ତା'ର ସ୍ତ୍ରୀର ମର୍ଯ୍ୟାଦା ରକ୍ଷା ପାଇଁ ତାକୁ ସମସ୍ତଙ୍କଠୁଁ ଅଲଗା କରି ରଖେ, ତଥାପି ତା'ର ମର୍ଯ୍ୟାଦା ରକ୍ଷା ହୋଇପାରେ ନାହିଁ । କୁଳୀନ ସ୍ତ୍ରୀ ନିଜର ମର୍ଯ୍ୟାଦା ନିଜେ ହିଁ ରକ୍ଷା କରିଥାଏ ।

ରତ୍ନପ୍ରଭାଙ୍କ କାହାଣୀ ଶୁଣି ଗୋମୁଖ କହିଲେ– ଏକଥା ସତ ଯେ, ପୁରୁଷ ନିଜର ପୌରୁଷ ବଳରେ ସ୍ତ୍ରୀର ମର୍ଯ୍ୟାଦା ରକ୍ଷା କରିପାରେ । ନାରୀର ଚରିତ୍ର ବଡ଼ ରହସ୍ୟମୟ । ଏହି ବିଷୟରେ ମୁଁ ଆପଣମାନଙ୍କୁ କଥାଟିଏ ଶୁଣାଉଛି, ଶୁଣନ୍ତୁ ।

# ଅନୁରାଗପ୍ରଭା କଥା

ଏକଦା ବିଖ୍ୟାତ ଉଜ୍ଜୟିନୀ ନଗରରେ ନିଶ୍ଚୟଦତ୍ତ ନାମରେ ଜଣେ ଯୁବ ବଣିକ ରହୁଥିଲା । ଦୈନିକ ଜୁଆ ଖେଳି ସେ ଧନ ରୋଜଗାର କରୁଥିଲା । ଶିପ୍ରା ନଦୀର ପବିତ୍ର ଜଳରେ ଗାଧୋଇ ସାରି ସେ ମହାକାଳଙ୍କୁ ପୂଜା କରୁଥିଲା ଓ ଗରିବ ବ୍ରାହ୍ମଣମାନଙ୍କୁ ଦାନ ଦେଉଥିଲା । ତା'ର ଦୈନନ୍ଦିନ କାମ ସାରି ମହାକାଳଙ୍କ ମନ୍ଦିରରୁ ଫେରିଲାବେଳେ ସେ ଗୋଟିଏ ମଶାଣିକୁ ଯାଉଥିଲା । ସେଇ ମଶାଣିରେ ଗୋଟିଏ ପଥର ସ୍ତମ୍ଭ ଥିଲା । ସେ ଗୋଳା ଚନ୍ଦନକୁ ପଥର ସ୍ତମ୍ଭର ପାଦ ଦେଶରେ ରଖୁଥିଲା ଓ ଗୋଳା ଚନ୍ଦନକୁ ସ୍ତମ୍ଭର ଗୋଟିଏ ପାଖରେ ବୋଳି ତା ପିଠିକୁ ସେଥିରେ ଲୋକମାନଙ୍କ ଅଲକ୍ଷରେ ଘଷୁଥିଲା । କ୍ରମାଗତ ଘଷିବା ଫଳରେ ସ୍ତମ୍ଭର ସେଇ ପାଖଟି ଚିକ୍କଣ ହୋଇଗଲା ।

ଦିନେ ସେଇ ବାଟେ ଜଣେ ଚିତ୍ରକର ଓ ଜଣେ ମୂର୍ତ୍ତି ଖୋଦାଳୀ ଯାଉଥିଲେ । ସେମାନେ ସ୍ତମ୍ଭର ଚିକ୍କଣ ପାଖ ଦେଖିଲେ । ମୂର୍ତ୍ତି ଖୋଦାଳୀ ସେଇ ଚିକ୍କଣ ପାଖରେ ପାର୍ବତୀଙ୍କ ମୂର୍ତ୍ତି ଖୋଳିଦେଲା ଓ ଚିତ୍ରକର ସେଇ ମୂର୍ତ୍ତିରେ ରଙ୍ଗ ଦେଇଦେଲା । ପରେ ପରେ ମହାକାଳଙ୍କୁ ପୂଜା କରିବାକୁ ଆସିଥିବା ଜଣେ ବିଦ୍ୟାଧରୀ ପାର୍ବତୀଙ୍କ ସେଇ ନିଖୁଣ ମୂର୍ତ୍ତି ଦେଖିଲା । ପାର୍ବତୀ ସେଥିରେ ଉପସ୍ଥିତ ଥିବା ଭାବି ସେ ମାତା ପାର୍ବତୀଙ୍କୁ ପୂଜାକଲା ଓ ତା' ବିଦ୍ୟା ବଳରେ ସ୍ତମ୍ଭ ଭିତରେ ପଶିଯାଇ ବିଶ୍ରାମ ନେଲା ।

ପ୍ରତିଦିନ ପରି ନିଶ୍ଚୟଦତ୍ତ ସେଇ ସ୍ଥାନକୁ ଆସିଲା ଓ ପାର୍ବତୀଙ୍କ ମୂର୍ତ୍ତି ସେଠାକୁ କିପରି ଆସିଲା ଭାବି ବିସ୍ମିତ ହେଲା । ସେ ଗୋଳା ଚନ୍ଦନକୁ ପାର୍ବତୀଙ୍କ ପାଦତଳେ ରଖିଲା ଓ ଗୋଳା ଚନ୍ଦନରୁ ମୁଠାଏ ନେଇ ସ୍ତମ୍ଭର ଆର ପାଖରେ ବୋଳି ସେଥିରେ ତା'ର ପିଠି ଘଷିବାକୁ ଲାଗିଲା । ସ୍ତମ୍ଭ ଭିତରେ ବିଶ୍ରାମ କରୁଥିବା ବିଦ୍ୟାଧରୀ ନିଶ୍ଚୟଦତ୍ତକୁ ଓ ତା'ର କାଣ୍ଡ କାରଖାନାକୁ ଦେଖିଲା । ନିଶ୍ଚୟଦତ୍ତ ଦେଖିବାକୁ ସୁନ୍ଦର ଥିଲା ଓ ବିଦ୍ୟାଧରୀ ତା' ପ୍ରେମରେ ପଡ଼ିଗଲା । ସେ ମନେ ମନେ ଭାବିଲା– ଏଭଳି ସୁନ୍ଦର ଯୁବକର ପିଠି ଘଷି ଦେବାକୁ କେହି ନାହିଁ, ବଡ଼ ଦୁଃଖର କଥା । ମୁଁ ତା ପିଠି ଘଷି ଦେବି । ଏଇୟା ଭାବି ସେ ସ୍ତମ୍ଭ ଭିତରୁ ତା ହାତ ବଢ଼ାଇ ନିଶ୍ଚୟଦତ୍ତର ପିଠିରେ ଗୋଳା ଚନ୍ଦନକୁ ଧୀରେ ଧୀରେ ଲଗାଇବାକୁ ଲାଗିଲା । ଏମିତିକା ମଧୁର ସ୍ପର୍ଶ ପାଇ ଓ ଚୁଡ଼ିର ରୁଣୁଝୁଣୁ ଶବ୍ଦ ଶୁଣି, ନିଶ୍ଚୟଦତ୍ତ ହାତଟିକୁ ଧରି ପକାଇଲା । ବାହାରକୁ ନ ଆସି ବିଦ୍ୟାଧରୀ କହିଲା– ଭଦ୍ର ! ମୁଁ ଖରାପ ବ୍ୟବହାର କରିନାହିଁ । ମୋ ହାତ ଛାଡ଼ିଦିଅ ।

ନିଶ୍ଚୟଦତ୍ତ ଉତ୍ତର ଦେଲା– ଦୟାକରି ମୋ ସାମ୍ନାରେ ଠିଆହୁଅ ଓ ତମେ କିଏ ମୋତେ କୁହ, ତା'ହେଲେ ମୁଁ ତମ ହାତ ଛାଡ଼ିଦେବି ।

ବିଦ୍ୟାଧରୀ ସେଇୟା କରିବ ବୋଲି ପ୍ରତିଶ୍ରୁତି ଦେଲା ଓ ନିଶ୍ଚୟଦତ୍ତ ତା ହାତକୁ ଛାଡ଼ିଦେଲା ।

ଗୋଟିଏ ସୁନ୍ଦର ଓ କମନୀୟ ଯୁବତୀ ସ୍ତମ୍ଭ ଭିତରୁ ବାହାରି ଆସି ନିଶ୍ଚୟଦତ୍ତକୁ କାମପୂର୍ଣ୍ଣ ଚାହାଣୀରେ ଚାହିଁଲା ଓ ତା ପାଖରେ ବସିପଡ଼ି କହିଲା– ହିମାଳୟରେ ପୁଷ୍କରବତୀ ନାମରେ ନଗର ଅଛି । ବିଦ୍ୟାଧର ରାଜା ବିନ୍ଧ୍ୟପଦ ସେଇ ନଗରର ଶାସନକର୍ତ୍ତା । ମୁଁ ତାଙ୍କ ଝିଅ ଅନୁରାଗପ୍ରଭା । ମହାକାଳଙ୍କ ପୂଜାସାରି ମୁଁ ଏଇ ସ୍ତମ୍ଭରେ ବିଶ୍ରାମ କରୁଥିଲି । ସେତିକିବେଳେ ତମେ ଆସିଲ ଓ ମୋ ହୃଦୟରେ ପ୍ରବେଶ କଲ । ତା'ପରେ ତମେ ମୋ ହାତ ଧରିପକାଇଲ । ଏଇ ହାତର ସୌଭାଗ୍ୟ



ଯେ, ସେ ତୁମ ପିଠିରେ ଚନ୍ଦନ ବୋଳିଛି । ଯାପରେ କ'ଣ କରିବାକୁ ହେବ, ସେ କଥା ତମେ ଜାଣ ଓ ତମ ହୃଦୟ ଜାଣେ ।

ନିଶ୍ଚୟଦତ୍ତ କହିଲା– ଚତୁରୀ, ତମେ ମୋ ହୃଦୟ ଚୋରୀ କରିନେଇଛ, ତାକୁ ମୋତେ ନ ଫେରାଇ ପଳେଇବ କେମିତି ?

ବିଦ୍ୟାଧରୀ ପ୍ରେମ ଗଦ୍‌ଗଦ୍ ହୋଇ କହିଲା– ତମେ ମୋ ଘରକୁ ଆସ । ମୁଁ ତମର ହିଁ ହେବି । ତମ ପକ୍ଷରେ ଅସୁବିଧା ହେବନାହିଁ । ତମ ଇଚ୍ଛା ନିଶ୍ଚୟ ଫଳବତୀ ହେବ । ଚେଷ୍ଟାକଲେ କିଛି ଅସମ୍ଭବ ନୁହେଁ । ଏତକ କହି ସେ ଆକାଶକୁ ଉଠି ଅନ୍ତର୍ଦ୍ଧାନ ହୋଇଗଲା ।

ନିଶ୍ଚୟଦତ୍ତର ମନ ଅନୁରାଗପ୍ରଭାଙ୍କୁ ଅନୁସରଣ କଲା । ସେ ଘରକୁ ଶୂନ୍ୟ ମସ୍ତିଷ୍କରେ ଫେରିଲା । ସେ ଭାବିଲା– ଆହାଃ ! ଯଦିଓ ମୁଁ ପ୍ରିୟାର ହାତକୁ ଧରିଥିଲି, ମୁଁ ତାକୁ ପାଇପାରିଲି ନାହିଁ । ମୁଁ ପୁଷ୍କରବତୀ ଯିବି । ଚେଷ୍ଟାକଲେ ମୁଁ ମରିଯାଇପାରେ ଅଥବା ଭଗବାନ ମୋତେ ସାହାଯ୍ୟ କରିପାରନ୍ତି । ଏହିପରି ବିଚାର କରି ସେ ଭୋରରୁ ଉଠିପଡ଼ିଲା ଓ ଉତ୍ତର ଦିଗକୁ ଚାଲିଲା ।

ବାଟରେ ଉତ୍ତର ଦିଗକୁ ଯାଉଥିବା ତିନିଜଣ ବଣିକ ତା ସହିତ ଯୋଗଦେଲେ । ଗାଁ ପରେ ଗାଁ, ନଦୀ ପରେ ନଦୀ, ଜଙ୍ଗଲ ପରେ ଜଙ୍ଗଲ ଅତିକ୍ରମ କରି ସେମାନେ ପାହାଡ଼ି ଆଦିବାସୀ ରହୁଥିବା ଇଲାକାରେ ପହଞ୍ଚିଲେ । ସେମାନଙ୍କୁ ଜଣେ କ୍ରୀତଦାସ ବ୍ୟବସାୟୀ କାବୁକରି ଆଉ ଜଣକୁ ବିକିଦେଲା । ସେଇ ଲୋକ ସେମାନଙ୍କୁ ଜଣେ ମୁସଲମାନ ବେପାରୀକୁ ବିକିଦେଲା । ମୁସଲମାନ ବେପାରୀ ସେମାନଙ୍କୁ ତା ମାଲିକ ମୁରାବରକୁ ଦେଇଦେଲା । ଠିକ୍ ସେତିକିବେଳେ ମୁରାବର ମରିଗଲା ଓ ତା ପୁଅମାନେ ସେମାନଙ୍କୁ ମାରି ସେମାନଙ୍କ ବାପାଙ୍କ ସମାଧିରେ ପୋତି ଦେବେବୋଲି ଠିକ୍‌କଲେ ।

ବର୍ତ୍ତମାନ ପାଇଁ ସେମାନଙ୍କୁ ବନ୍ଦୀଶାଳରେ ରଖାଗଲା । ରାତିରେ ତା'ର ବନ୍ଧୁମାନଙ୍କୁ କାନ୍ଦୁଥିବାର ଦେଖି ନିଶ୍ଚୟଦତ୍ତ ସେମାନଙ୍କୁ ସାନ୍ତ୍ୱନା ଦେଇ କହିଲା– ବନ୍ଧୁମାନେ ! କାନ୍ଦି କିଛି ଲାଭନାହିଁ । ସାହସୀ ହୁଅ, ବିପଦ ଆମକୁ ଛାଡ଼ି ପଳେଇବ । ଦେବୀ ଦୁର୍ଗାଙ୍କୁ ସ୍ମରଣ କର, ସେ ଆମକୁ ଖଲାସ କରିଦେବେ ।

ବନ୍ଧୁମାନଙ୍କୁ ଏଇଭଳି ପରାମର୍ଶ ଦେଇ ସେ ଦୁର୍ଗା ମାତାଙ୍କୁ ପୂଜାକଲା । –ମା ! ମୁଁ ତମ ପାଦତଳେ ପଡ଼ୁଛି । ହେ ଅସୁର ରକ୍ତରେ ଧୌତ ସିନ୍ଦୂର ବର୍ଣ୍ଣ ପଦ୍ମପାଦ ସମ୍ପନ୍ନା, ତମେ ଶିବଙ୍କୁ ଅଶେଷ ସୁଖ ଦେଇଛ । ତିନିପୁର ତମଠୁଁ ଜୀବନ ପାଇଛି । ତମେ ମହିଷାସୁରକୁ ମାରି ତିନିପୁରକୁ ସ୍ୱାଧୀନତା ଦେଲ । ତମେ ତମ ଭକ୍ତଙ୍କୁ ଶ୍ରଦ୍ଧାକର । ଆମେ ତମର ଆଶ୍ରୟ ଚାହୁଁଛୁ । ଆମକୁ ରକ୍ଷାକର, ମା । ଏମିତି ପ୍ରାର୍ଥନା କରି ସେ କ୍ଳାନ୍ତହୋଇ ଢୁଳେଇ ପଡ଼ିଲା । ତା'ର ସେଇଭଳି ଅବସ୍ଥାରେ ଦେବୀ ଆବିର୍ଭୂତା ହୋଇ କହିଲେ– ତମେମାନଙ୍କ ଗୋଡ଼-ହାତରେ ଆଉ ଶିକୁଳି ନାହିଁ । ଉଠି ପଳାଅ । ତମମାନଙ୍କର କେହି କିଛି କରିପାରିବେ ନାହିଁ ।

ସେମାନେ ଉଠିପଡ଼ି ଦେଖିଲେ ଯେ, ସେମାନେ ବନ୍ଧନମୁକ୍ତ ଓ ବନ୍ଦୀଶାଳର ଦ୍ୱାର ମଧ୍ୟ ଖୋଲା । ସେମାନେ ବନ୍ଦୀଶାଳରୁ ପଳେଇଗଲେ ଓ ସକାଳ ହେଲାବେଳକୁ ବହୁ ଦୂରକୁ ଚାଲି ଯାଇଥିଲେ । ଦିନ ହୁଅନ୍ତେ ଅନ୍ୟ ତିନି ଯୁବକ ନିଶ୍ଚୟଦତ୍ତକୁ ସେମାନେ ଆଉ ଉତ୍ତରକୁ ଯିବାକୁ ନାରାଜ ବୋଲି କହିଲେ । ସେମାନେ କହିଲେ ଉତ୍ତର ହେଉଛି ତକାନ୍ତଦମାନଙ୍କ ଦେଶ । ସେମାନେ କହିଲେ ଯେ, ସେମାନେ ଦକ୍ଷିଣକୁ ଯିବେ ଓ ନିଶ୍ଚୟଦତ୍ତ ଚାହିଁଲେ ସେମାନଙ୍କ ସହିତ ଆସିପାରେ ବା ତା' ନିଜ ବାଟରେ ଯାଇପାରେ ।

ନିଶ୍ଚୟଦତ୍ତ ତା ବାଟ ବଦଳାଇଲା ନାହିଁ । ସେଇ ତିନି ଯୁବକ ଚାଲିଗଲା ପରେ ସେ ଉତ୍ତର ଦିଗକୁ ଚାଲିବାକୁ ଲାଗିଲା । ବାଟରେ ସେ ଚାରିଜଣ ସନ୍ନ୍ୟାସୀଙ୍କୁ ଭେଟିଲା । ସେ ସେମାନଙ୍କ ସହିତ

ଯୋଗଦେଲା ଓ ସେମାନେ ବିତସ୍ତା ନଦୀ ପାରହେଲେ । ସୂର୍ଯ୍ୟାସ୍ତ ସମୟରେ ସେମାନେ ଗୋଟିଏ ବଣରେ ପଶିଲେ । ଜଣେ କାଠୁରିଆ ଜଙ୍ଗଲରୁ ଫେରୁଥିଲା । ସେ ସେମାନଙ୍କୁ ପଚାରିଲା— ତମେମାନେ କୁଆଡ଼େ ଯାଉଛ ? ସୂର୍ଯ୍ୟଅସ୍ତ ହୋଇ ଗଲେଣି । ଆଗରେ ଗାଁ ଗଣ୍ଡା କିଛି ନାହିଁ । ବଣ ଭିତରେ ପରିତ୍ୟକ୍ତ ଶିବ ମନ୍ଦିରଟିଏ ଅଛି । ରାତିରେ ଯେ କେହି ସେଇ ମନ୍ଦିରରେ ବା ତା' ଆଖପାଖରେ ରହିବ, ସେ ବିପଦରେ ପଡ଼ିବ । ପ୍ରତିଦିନ ରାତି ଅଧରେ ସ୍ୱଂଗୋପ୍ରଭିନୀ ନାମରେ ଗୋଟିଏ ଯକ୍ଷିଣୀ ସେଠାକୁ ଆସେ । ଲୋକଙ୍କୁ ଦେଖିଲେ ସେ ତାକୁ ସ୍ଥିର ଦୃଷ୍ଟିରେ ଚାହିଁ ମନ୍ତ୍ର ପଢ଼େ ଓ ସେଇ ମନ୍ତ୍ର ବଳରେ ଲୋକଟିର ମୁଣ୍ଡ ଉପରେ ଶିଙ୍ଘ ଉଠେ । ସଙ୍ଗେ ସଙ୍ଗେ ସେଇ ଲୋକଟି ଚେତା ହରାଏ । ତା'ପରେ ସେଇ ଯକ୍ଷିଣୀ ତାକୁ ନିଆଁରେ ପୋଡ଼ି ଖାଏ ।

କାଠୁରିଆର କଥାକୁ ଖାତିର ନକରି ସେମାନେ ବଣ ଭିତରକୁ ଅଗେଇ ଚାଲିଲେ । ପ୍ରଥମ ପ୍ରହର ବେଳକୁ ସେମାନେ ମନ୍ଦିର ନିକଟରେ ପହଞ୍ଚିଲେ । ମନ୍ଦିର ଆଗରେ ସନ୍ନ୍ୟାସୀମାନେ ପାଉଁଶରେ ବଡ଼ ବୃତ୍ତଟିଏ କାଟିଲେ ଓ ସେଇ ବୃତ୍ତ ଭିତରେ ବଡ ଅଗିଟାଏ ଜଳାଇଲେ ଓ ଅଗି ସାମ୍ନାରେ ବସି କିଛି ଯାଦୁମନ୍ତ୍ର ବୋଲିବାକୁ ଲାଗିଲେ ।

ରାତି ଅଧରେ ମଣିଷ ହାଡ଼ରେ ତିଆରି ବାଜାକୁ ବଜାଇ ବଜାଇ ଯକ୍ଷିଣୀ ଆସିଲା ଓ ସନ୍ନ୍ୟାସୀ ତଳଙ୍କ ଠୁଁ ଅଳ୍ପ ଦୂରରେ ନାଚିବାକୁ ଲାଗିଲା । ସେ ଜଣେ ସନ୍ନ୍ୟାସୀ ଉପରେ ତା'ର ଦୃଷ୍ଟି ସ୍ଥିରକଲା ଓ କିଛି ମନ୍ତ୍ର ପଢ଼ିଲା । ସଙ୍ଗେ ସଙ୍ଗେ ସେ ସନ୍ନ୍ୟାସୀଟି ଚେତା ହରାଇ ମାଟିରେ ପଡ଼ିଗଲା ଓ ତା ମୁଣ୍ଡରେ ଶିଙ୍ଘ ଉଠିଗଲା । ଖୁବ୍ ଅଳ୍ପ ସମୟରେ ସେଇ ଲୋକଟି ଚେତା ପାଇ ଉଠିପଡ଼ିଲା ଓ ନାଚି ନାଚି ଅଗ୍ନିକୁ ଡେଇଁ ପଡ଼ିଲା । ଅନ୍ୟମାନେ ଆତଙ୍କିତ ହୋଇ ଚାହିଁଥିଲାବେଳେ ଲୋକଟିର ପୋଡ଼ିଯାଇଥିବା ଦେହକୁ ଅଗ୍ନିରୁ ଟାଣିଆଣି ଯକ୍ଷିଣୀ ତାକୁ ଖାଇଦେଲା । ସେଇଭଳି ସେ ଅନ୍ୟ ସନ୍ନ୍ୟାସୀ ଦୁଇଜଣଙ୍କୁ ମଧ୍ୟ ଖାଇଦେଲା । ବହୁତ ମାଂସ ଖାଇ ସେ ନିଜକୁ ସମ୍ଭାଳି ନ ପାରି ବୋକାମୀରେ ହାଡ଼ ବାଜାଟିକୁ ମାଟି ଉପରେ ରଖିଦେଲା । ନିଶ୍ଚୟଦତ୍ତ ସଙ୍ଗେ ସଙ୍ଗେ ଯନ୍ତ୍ରଟିକୁ ଝାମ୍ପିନେଲା । ଯକ୍ଷିଣୀ ପଢ଼ୁଥିବା ମନ୍ତ୍ର ସେ ଶୁଣିଥିଲା । ସେ ଏଥର ବାଜାଟିକୁ ବଜାଇ ମନ୍ତ୍ରକୁ ଶିଘ୍ର ଶିଘ୍ର ବୋଲିଲା ଓ ଯକ୍ଷିଣୀ ଉପରେ ଦୃଷ୍ଟି ସ୍ଥିର ରଖିଲା ।

ଧୀରେ ଧୀରେ ଯକ୍ଷିଣୀଟି ଚେତା ଫେରି ପାଇଲା ଓ ମରଯିବ ବୋଲି ବିକଳରେ କାନ୍ଦିବାକୁ ଲାଗିଲା । ସେ ବିକଳରେ ନିଶ୍ଚୟଦତ୍ତକୁ କହିଲା— ହେ ଶକ୍ତିମାନ । ମୁଁ ଅସହାୟା ସ୍ତ୍ରୀ ଲୋକଟିଏ ।

ତମେ ଦୟାକରି ମୋ ଜୀବନ ବଞ୍ଚାଅ । ଭଗବାନଙ୍କ ରାଣ, ସେଇ ମନ୍ତ୍ରକୁ ପଢ଼ ନାହିଁ । ମୋତେ ବଞ୍ଚାଅ । ମୁଁ ତମ ଇଚ୍ଛା କଥା ଜାଣେ । ମୁଁ ତମକୁ ଅନୁରାଗପ୍ରଭା ପାଖକୁ ନେଇଯିବି ।

ପ୍ରତିଶ୍ରୁତି ମୁତାବକ ଯକ୍ଷିଣୀ ନିଶ୍ଚୟଦତ୍ତକୁ କାନ୍ଧେଇ ଉତ୍ତର ଦିଗକୁ ଉଡ଼ିଗଲା । ଭୋର ବେଳକୁ ସେ ଗୋଟାଏ ବଣରେ ପହଞ୍ଚିଲା । ନିଶ୍ଚୟଦତ୍ତକୁ ଗୋଟାଏ ଗଛମୂଳେ ବସାଇଦେଇ ସେ କହିଲା— ସୂର୍ଯ୍ୟ ଉଦୟ ହେବେ । ଦିନବେଳା ମୋର ଆଉ ଆଗକୁ ଯିବାକୁ ଶକ୍ତିନାହିଁ । ଦିନ ବେଳାଟି ଏଇଠି କଟାଅ । ପାଖାପାଖି ବହୁତ ଫଳ ମିଳିବ ଓ ଝରଣାରୁ ପାଣି ପିଇବ । ତମେ ତାଜା ହୁଅ । ମୁଁ ବର୍ତ୍ତମାନ ଘରକୁ ଯାଉଛି ଓ ରାତିହେଲେ ଫେରି ଆସିବି । ତା'ପରେ ମୁଁ ଅନୁରାଗପ୍ରଭାର ବାସସ୍ଥାନ ହିମାଳୟର ପୁଷ୍କରବତୀକୁ ନେଇଯିବି । ଏତିକି କହି ସେ ନିଶ୍ଚୟଦତ୍ତକୁ ଛାଡ଼ି ଚାଲିଗଲା ।

ଯକ୍ଷିଣୀ ଚାଲିଗଲା ପରେ ନିଶ୍ଚୟଦତ୍ତ ଆଗକୁ ଯାଇ ଗଭୀର ହ୍ରଦଟିଏ ଦେଖିଲା । ହ୍ରଦଟିର ପାଣି ଯଦିଚ ଖୁବ୍ ନିର୍ମଳ ଥିଲା, ସେଥିରୁ ଗୋଟିଏ ଗନ୍ଧ ବାହାରୁ ଥିଲା ଓ ସେଇ ଗନ୍ଧଯୋଗୁ ହ୍ରଦର ପାଣି ବିଷାକ୍ତ ବୋଲି ଜଣା ପଡୁଥିଲା । ସୂର୍ଯ୍ୟଙ୍କ କିରଣ ସେଇ ପାଣିରେ ପଡ଼ି ଯେପରି କହୁଥିଲା— ହେ ପ୍ରେମିକ, ସାବଧାନ ! ଜଣେ ସ୍ତ୍ରୀଲୋକର ମନ ଏହି ହ୍ରଦଭଳି ।



ନିଶ୍ଚୟଦତ୍ତ ହ୍ରଦ ପାଖକୁ ଚାଲିଆସି ଗୋଟିଏ ପାହାଡ଼ର ପାଦ ଦେଶରେ ଫଳ ଓ ପାଣି ପାଇଁ ବୁଲିବାକୁ ଲାଗିଲା । ସେ ବୁଲିଲା ବେଳେ ଖୁଣ୍ଟିଲା ମାଟି ଗଦାଟିଏ ଦେଖିଲା । ସେଇ ମାଟି ଗଦାରୁ ଲାଲ ରଙ୍ଗର ମୁକ୍ତାଭଳି ଦୁଇଟି ଜ୍ୟୋତି ବାହାରୁ ଥିଲା । କୌତୂହଳୀ ହୋଇ ସେ ମାଟି କାଢ଼ି ପକାଇ ଗୋଟାଏ ଜୀବନ୍ତ ମାଙ୍କଡ଼ର ମୁଣ୍ଡ ଦେଖିଲା । ସେଇ ଜ୍ୟୋତି ମାଙ୍କଡ଼ର ଆଖିରୁ ବାହାରୁଥିଲା । ସେ ସେଇ ଦୃଶ୍ୟଟି ବିଷୟରେ ଭାବୁଥିଲା ବେଳେ ମାଙ୍କଡ଼ଟି ମଣିଷ ସ୍ୱରରେ କହିଲା— ହେ ଦୟାବନ୍ତ ! ମୁଁ ଜଣେ ବ୍ରାହ୍ମଣ, ମାଙ୍କଡ଼ ହୋଇଯାଇଛି ।

ମାଙ୍କଡ଼ କଥା ଶୁଣି ନିଶ୍ଚୟଦତ୍ତ ମାଟିକୁ କାଢ଼ି ତାକୁ ବାହାର କଲା । ମାଙ୍କଡ଼ ତା ପାଦତଳେ ସାଷ୍ଟାଙ୍ଗ ପଡ଼ିଯାଇ କହିଲା— ମହାଶୟ ! ତମେ କ୍ଳାନ୍ତ । ତମେ ମୋତେ ଜୀବନ ଦାନ ଦେଲ । ଫଳଖାଅ ଓ ପାଣି ପିଅ । ତମ ଦୟାଯୋଗୁ ମୁଁ ମଧ୍ୟ କିଛି ଖାଇବି । ମୋ ସାଙ୍ଗରେ ଆସ । ପାଖରେ ଝରଣାଟିଏ ଅଛି । ଆମର ଖାଇବାକୁ ପ୍ରଚୁର ଫଳ ମଧ୍ୟ ଅଛି । ମୁଁ ଯାଇ ସେଗୁଡ଼ିକ ତମ ପାଇଁ ତୋଳି ଆଣୁଛି । ଖାଇବା ଆସ ।

ମାଙ୍କଡ଼ ଗୁଡ଼ାଏ ଫଳ ଆଣିଲା ଓ ସେମାନେ ଗଛ ମୂଳେ ବସି ଖାଇଲେ । ତା'ପରେ ନିଶ୍ଚୟଦତ୍ତ ମାଙ୍କଡ଼କୁ ତା' ନିଜ କଥା କହିବାକୁ ଅନୁରୋଧ କଲା ।

ମାଙ୍କଡ଼ କହିଲା— ମୁଁ ମୋର ସବୁକଥା ତମକୁ ଶୁଣାଉଛି, ଶୁଣ ।

## ସୋମସ୍ୱାମୀ କଥା

କାଶୀ ନଗରରେ ଚନ୍ଦ୍ରସ୍ୱାମୀ ନାମରେ ଜଣେ ବ୍ରାହ୍ମଣ ରହୁଥିଲେ । ତାଙ୍କ ସ୍ତ୍ରୀଙ୍କ ନାମ ସୁବ୍ରତା ଓ ମୁଁ ସେମାନଙ୍କର ପୁଅ ସୋମସ୍ୱାମୀ । ଯୌବନ ଗର୍ବରେ ମୁଁ ଦିନେ କାଶୀର ରାଜ ରାସ୍ତାରେ ଯାଉଥିଲି । ନଗରରେ ଶ୍ରୀଗର୍ଭ ନାମରେ ଜଣେ ବଣିକ ଥିଲେ । ତାଙ୍କ ଝିଅ ନାଁ ବନ୍ଧୁଦତ୍ତା ଓ ସେ ମଥୁରାର ବରାହଦତ୍ତକୁ ବାହା ହୋଇଥିଲା । ଗୋଟିଏ ପର୍ବରେ ସେ ତା' ବାପା ଘରକୁ ଆସିଥିଲା । ପୂର୍ଣ୍ଣ ଯୌବନା ସେଇ ସୁନ୍ଦରୀ ଝରକା ବାଟେ ମୋତେ ଦେଖିଲା ଓ ମୋ ପ୍ରେମରେ ପଡ଼ିଗଲା । ସେ ମୋ ନାଁ ଜାଣିଗଲା ଓ ତା' ଚାକରାଣୀକୁ ମୋ ପାଖକୁ ପଠାଇଲା । ଚାକରାଣୀ ମୋ ପାଖକୁ ଆସି ତା ମାଲିକାଣୀ ମୋ ପ୍ରେମରେ ପଡ଼ି ଯାଇଥିବା କଥା ମୋତେ କହିଲା । ମୋ ସମ୍ମତି ନେଇ ବନ୍ଧୁଦତ୍ତାକୁ ମୋ ସହିତ ରାତିରେ ତା ନିଜ ଘରେ ଭେଟ କରାଇବାର ବ୍ୟବସ୍ଥା କଲା । ଚାକରାଣୀ ଘରେ ମୁଁ ଓ ବନ୍ଧୁଦତ୍ତା ଗୋପନରେ ଅନେକ ରାତି ସୁଖରେ କଟାଇଲୁ ।

କିଛି ଦିନ ପରେ ବରାହଦତ୍ତ ତା ସ୍ତ୍ରୀକୁ ଫେରାଇ ନେବାକୁ କାଶୀ ଆସିଲା । ବନ୍ଧୁଦତ୍ତା ତା'ର ଚାକରାଣୀକୁ କହିଲା ଯେ, ତା' ପ୍ରେମିକ ଠାରୁ ଅଲଗା ହୋଇ ରହିବା ତା' ପକ୍ଷରେ ଅସମ୍ଭବ ଓ ସେ ତାକୁ ମୋତେ ମଥୁରା ନେଇ ଯିବାକୁ ଉପାୟ ବତାଇବାକୁ କହିଲା । ଚାକରାଣୀ ତା' ବ୍ୟାକୁଳତାକୁ ଦୂରକରି କହିଲା— ମୁଁ ଦୁଇଟି ମନ୍ତ୍ର ଜାଣେ : ଗୋଟିଏ ମନ୍ତ୍ର ପଢ଼ି ସୂତାଟିଏ ହାତଟିରେ ଛୁଆଇ ଜଣେ ମଣିଷ ଗଳାରେ ବାନ୍ଧିଲେ ସେ ସଙ୍ଗେ ସଙ୍ଗେ ଛୋଟ ମାଙ୍କଡ଼ଟିଏ ହୋଇଯିବ, ଦ୍ୱିତୀୟ ମନ୍ତ୍ରଟି ପଢ଼ି ସୂତାଟିକୁ ଖୋଲି ଦେଲେ ସେ ସଙ୍ଗେ ସଙ୍ଗେ ପୁଣି ମଣିଷ ହୋଇଯିବ । ଯଦି ଚାହଁ ମୁଁ ତୁମକୁ ମନ୍ତ୍ର ଦୁଇଟି ଶିଖାଇ ଦେବି । ମୁଁ ସୋମସ୍ୱାମୀକୁ ମାଙ୍କଡ଼ କରି ଦେଉଛି । ତମେ ମାଙ୍କଡ଼ଟିକୁ ସାଙ୍ଗରେ ନେବକ ଖେଳିବା ପାଇଁ ନେଉଛ ବୋଲି ତମ ସ୍ୱାମୀଠୁଁ ଅନୁମତି ଆଣ । ରାତିରେ ତାକୁ ମଣିଷ କରି ତା' ସହିତ ସୁଖ କର ।

ବନ୍ଧୁଦତ୍ତା ତା' ଚାକରାଣୀର ପ୍ରସ୍ତାବରେ ରାଜି ହେଲା ଓ ସେଇ ଅନୁଯାୟୀ ଯୋଜନା କାର୍ଯ୍ୟକାରୀ ହେଲା । ବନ୍ଧୁଦତ୍ତା, ତା' ସ୍ୱାମୀ ଓ ସେମାନଙ୍କର ଚାକରମାନେ ମଥୁରାକୁ ଯିବାକୁ ବାହାରିଲେ । ଜଣେ ଚାକର ମାଙ୍କଡ଼ ରୂପରେ ଥିବା ସୋମସ୍ୱାମୀକୁ କାନ୍ଧେଇ ନେଉଥିଲା । ବାଟରେ ବହୁତ ମାଙ୍କଡ଼ ରହୁଥିବା ବଣଟିଏ ପଡ଼ିଲା । ବଣର ମାଙ୍କଡ଼ ଦଳ ଚାକର କାନ୍ଧରେ ଛୋଟ ମାଙ୍କଡ଼ଟିଏ ଦେଖି ତାକୁ ଘେରିଯାଇ କାମୁଡ଼ା କାମୁଡ଼ି କରି ତାକୁ ଖଣ୍ଡିଆ ଖାବରା କରିଦେଲେ । ଛାନିଆଁରେ ଚାକରଟି ମାଙ୍କଡ଼ଟିକୁ ତଳେ ରଖିଦେଇ ଦଉଡ଼ି ପଳାଇଲା । ମାଙ୍କଡ଼ ଦଳ ଛୋଟ ମାଙ୍କଡ଼ଟିକୁ ଟେକି ନେଇଗଲେ । ବରାହଦତ୍ତ, ବନ୍ଧୁଦତ୍ତା ଓ ତାଙ୍କର ଚାକରମାନେ ମାଙ୍କଡ଼ ଦଳକୁ ଗୋଡ଼ାଇଲେ କିନ୍ତୁ ସୋମସ୍ୱାମୀକୁ ଉଦ୍ଧାର କରିପାରିଲେ ନାହିଁ ।

ମାଙ୍କଡ଼ ଦଳ ସୋମସ୍ୱାମୀକୁ ରାମ୍ପି ପକାଇଲେ ଓ ତା' ଦେହକୁ ଟାଣିବଣି କଲେ । ସେ ତା' ମଣିଷ ବୁଦ୍ଧିକୁ ହରାଇ ନଥିଲା । କୌଣସି ମତେ ସେ ବଣର ଘଞ୍ଚ ଅଞ୍ଚଳକୁ ପଳାଇଲା । ମାଙ୍କଡ଼ ଦଳ ତାକୁ ଖୋଜି ନ ପାଇ ଫେରିଗଲେ ।

ମାଙ୍କଡ଼ ସୋମସ୍ୱାମୀ ଭଗବାନ ଶିବଙ୍କ ନାମ ଜପି ଜପି ବଣକୁ ବଣ ବୁଲିଲା । ସେ ତା' ପ୍ରେମିକାକୁ ହରାଇଥିଲା ଓ ମାଙ୍କଡ଼ ହୋଇଯାଇଥିଲା । ହଠାତ୍ ହାତୀଟିଏ ତାକୁ ଟେକିନେଇ ବର୍ଷାରେ ଓଦା ଓ ନରମ ହୋଇଥିବା ଗୋଟିଏ ଛଇ ହୁଙ୍କା ଭିତରକୁ ପୁରାଇ ଦେଇ ପୋତିଦେଲା ।

ମୁଁ ହେଉଛି ସେଇ ସୋମସ୍ୱାମୀ । ପର ସ୍ତ୍ରୀ ଉପଭୋଗର ପାପ ମୁଁ ଏଇ ଜନ୍ମରେ ଭୋଗୁଛି । ମୋର ମଣିଷ ବୁଦ୍ଧି ଥିବାରୁ ମୁଁ ଶିବଙ୍କ ପବିତ୍ର ନାମ ଜପୁଛି, ଯାହା ଫଳରେ ଭୋକ ଓ ଶୋଷ ଏପର୍ଯ୍ୟନ୍ତ ମୋତେ ବାଧୁ ନାହିଁ । ମଣିଷ ରୂପ ଫେରିବାକୁ ମୋର କୌଣସି କ୍ଷମତା ନାହିଁ । ଜଣେ ଯୋଗିନୀ ହିଁ ମୋତେ ମଣିଷ କରିଦେଇ ପାରିବ । ଏଇ ଅଗମ୍ୟ ବଣକୁ ଏ ପର୍ଯ୍ୟନ୍ତ କେହି ମଣିଷ ଆସି ନାହିଁ, କେବଳ ତମ ଛଡ଼ା । ତମେ କାହିଁକି ଏଇ ବଣକୁ ଆସିଛ, ସେଇ ବିଷୟରେ ମୋତେ କୁହ ।

ସୋମସ୍ୱାମୀ ତା' କଥା କହିଥିଲା ଓ ତା'ର ଅନୁରୋଧରେ ନିଶ୍ଚୟଦତ୍ତ ତା' ନିଜ କଥା କହିଲା । ବିସ୍ମିତ ହୋଇ ମାଙ୍କଡ଼ ସୋମସ୍ୱାମୀ କହିଲା– ଗୋଟିଏ ସ୍ତ୍ରୀଲୋକ ଯୋଗୁଁ ତମେ ବି ବିପଦରେ ପଡ଼ିଛ । ସ୍ତ୍ରୀ ଓ ସମ୍ପତ୍ତି କେବେ ଚିରସ୍ଥାୟୀ ନୁହନ୍ତି । ସନ୍ଧ୍ୟା ପୂର୍ବରୁ ସୂର୍ଯ୍ୟଙ୍କ ଲାଲ କିରଣ ପରି ସ୍ତ୍ରୀଲୋକମାନେ ଅଳ୍ପ ସମୟ ପାଇଁ ଲାଲ ରହନ୍ତି । ବିଜୁଳି ପରି ସେମାନେ ଚଞ୍ଚଳ । ତମେ ପ୍ରେମ କରୁଥିବା ସେଇ ବିଦ୍ୟାଧରୀ ଅନୁରାଗପ୍ରଭା ତା' ନିଜ ଜାତିର କେଉଁ ଟୋକା ପାଇଲେ ତମକୁ ଛାଡ଼ି ଦେଇପାରେ । ଆଉ ସେଇ ବାଟରେ ଯାଅ ନାହିଁ । ସେ ଗୋଟିଏ ବିଷାକ୍ତ ଫଳ । ମାଙ୍କଡ଼ ରୂପରେ ମୁଁ ତପକରି ଦିବ୍ୟଜ୍ଞାନ ଲାଭ କରିଛି । ସେଇ ଦିବ୍ୟଜ୍ଞାନ ମୋତେ କହୁଛି ଯେ, ସେ ମାଇକିନିଆଁ ସ୍ଥିରହୋଇ ରହିବ ନାହିଁ । ଅନୁରାଗପ୍ରଭାର ବାସସ୍ଥାନ ପୁଷ୍କରବତୀକୁ ଯାଅ ନାହିଁ । ବନ୍ଧୁ ! ମୋ କଥା ଶୁଣ । ତମ ଦେଶକୁ ଫେରିଯାଇ ସୁଖରେ ରୁହ । ମୁଁ ବହୁତ ଦିନ ପୀଡ଼ା ପାଇଛି । ମୁଁ ମୋ ବନ୍ଧୁ ଭାବଶର୍ମାର ଉପଦେଶ ଶୁଣି ନଥିଲି । ଭାବଶର୍ମା ନିଜେ ଜଣେ ଧୂର୍ତ୍ତ ସ୍ତ୍ରୀଲୋକ ଦ୍ୱାରା ପ୍ରଭାବିତ ହୋଇଥିଲା । ତା' କଥା କହୁଛି ଶୁଣ :

## ଭାବଶର୍ମା କଥା

କାଶୀ ନଗରରେ ସୋମଦା ନାମରେ ଜଣେ ସୁନ୍ଦରୀ ବ୍ରାହ୍ମଣ ଯୁବତୀ ଥିଲା । ସେ ଦୁଶ୍ଚରିତ୍ରା ଥିଲା । କିନ୍ତୁ ଡାହାଣୀ ବିଦ୍ୟା ଜାଣିଥିଲା । ଭାଗ୍ୟ ମୋତେ ତା' ସଂସ୍ପର୍ଶରେ ଆଣିଲା । ଥରେ



ଆମେ ଅନ୍ତରଙ୍ଗ ଭାବରେ ଏକାଠି ଥାଇ ଗୋପନରେ କଥା ହେଉଥିଲା ବେଳେ ମୁଁ ରାଗିଯାଇ ତାକୁ ଖେଳରେ ଖେଳରେ ଗୋଇଠାଟିଏ ମାରିଲି । ସେତେବେଳେ ସେ ନିଜ ରାଗକୁ ସମ୍ଭାଳି ନେଲା । ତା' ପରଦିନ, ସେମିତି କୌତୁକରେ ସେ ମୋ ଗଳାରେ ସୂତାଖିଏ ବାନ୍ଧିଦେଲା ଓ ମୁଁ ସଙ୍ଗେ ସଙ୍ଗେ ଗୋଟିଏ ବଳଦକୁ ପରିବର୍ତ୍ତିତ ହୋଇଗଲି । କିଛି ଟଙ୍କା ନେଇ ସେ ମୋତେ ଜଣେ ଓଟ ବେପାରୀକୁ ବିକିଦେଲା । ମୁଁ ଦୁଃଖରେ ତା' ବୋଝ ବୋହି ଚାଲିଲି । ବନ୍ଧୁ ମୋଚନିକା ନାମରେ ଯୋଗିନୀଟିଏ ସେଇ ବାଟେ ଯାଉଥିଲାବେଳେ ମୋତେ ଦେଖିଲା । ସେ ତା' ବିଦ୍ୟା ବଳରେ ମୋର ପରିଚୟ ଜାଣିଗଲା ଓ ମୋ ମାଲିକ ନଥିବାବେଳେ ମୋ ଗଳାରୁ ସୂତା ଖିଅଟିକୁ ଫିଟାଇ ଦେଲା । ମୁଁ ମଣିଷ ରୂପ ଫେରିପାଇଲି । ମୋ ମାଲିକ ଭାବିଲା ମୁଁ ପଳେଇଛି । ମୁଁ ଓ ଯୋଗିନୀ ଯାଉଥିଲାବେଳେ ସୋମଦା ଆମକୁ ଦେଖି ଦେଲା ଓ ରାଗିଯାଇ ଯୋଗିନୀ ବନ୍ଧୁ ମୋଚନିକାକୁ କହିଲା– ତୁ ଏଇ ପଶୁକୁ ମୁକୁଳେଇଲୁ କାହିଁକି ? ତୋ କାମର ଫଳ ତୁ ଶିଘ୍ର ପାଇବୁ । ଆସନ୍ତା କାଲି ମୁଁ ତମ ଦୁହଁଙ୍କୁ ମାରି ଦେବି । ସାବଧାନ ! – ସେ ଏତକ କହି ଚାଲିଗଲା ।

ବିପଦରୁ ମୁକୁଳିବାକୁ ବନ୍ଧୁ ମୋଚନିକା ଉପାୟଟିଏ ପାଞ୍ଚିଲା । ସେ ମୋତେ କହିଲା– ବନ୍ଧୁ, ସେଇ ଡାହାଣୀ କାଲି ଗୋଟାଏ କଳା ଠେକୁଆ ହୋଇ ମୋ ଘରକୁ ଆସିବ । ସୁଯୋଗ ଦେଖି ତମେ ତାକୁ ଖଣ୍ଡାରେ ଚୋଟେ ହାଣିବ । ତା'ପରେ ମୁଁ ତାକୁ ସହଜରେ ମାରିଦେବି ।

ତା'ପରେ ଆମେ ନିଜ ନିଜ ଘରକୁ ଚାଲିଗଲୁ ।

ତା'ପରଦିନ ସକାଳେ ଖଣ୍ଡାଧରି ଯୋଗିନୀ ଘରକୁ ଯାଇ ମୁଁ ଅଗଣା କାନ୍ଥ ପାଖରେ ଲୁଚି ରହିଲି । ଅଳ୍ପ ସମୟ ପରେ ସୋମଦା ଗୋଟାଏ କଳା ଠେକୁଆ ହୋଇ ଆସିଲା ଓ ଯୋଗିନୀ ଗୋଟାଏ ନାଲି ଠେକୁଆ ହୋଇ ତାକୁ ଆକ୍ରମଣ କଲା । ଲୁଚିବା ଜାଗାରୁ ବାହାରି ଆସି ମୁଁ ସୋମଦାକୁ ଖଣ୍ଡାରେ ଚୋଟେ ମାରିଲି ଓ ବନ୍ଧୁ ମୋଚନିକା ତାକୁ ସହଜରେ ମାରି ପକାଇଲା । ଏହିପରି ମୁଁ ଭୟ ଓ ଆତଙ୍କରୁ ବଞ୍ଚିଗଲି । ଅସ୍ଥିରତା, ସାହସ ଓ ଗୁଣ୍ଡାମିହିଁ ଜଣେ ସ୍ତ୍ରୀଲୋକର ହତିଆର । ବନ୍ଧୁ, ସାବଧାନ ! ବନ୍ଧୁଦତ୍ତା ଗୋଟେ ଡାହାଣୀ । ତା' ସ୍ୱାମୀ ଠାରେ ତା'ର କୌଣସି ପ୍ରେମ ନାହିଁ । ସେ କେମିତି ତମର ଅନୁରକ୍ତା ହେବ ? ନିଜକୁ ସମ୍ଭାଳ ।

ମୁଁ ମୋ ବନ୍ଧୁର ଉପଦେଶ ଶୁଣି ନଥିଲି, ତେଣୁ ଏଇ ବିପଦରେ ପଡ଼ିଲି । ତେଣୁ ମୁଁ ପୁଣି କହୁଛି– ଅନୁରାଗପ୍ରଭା ପ୍ରତି ତମ ପ୍ରେମକୁ ତମେ ତ୍ୟାଗ କର । ତା' ନିଜ ଜାତିର ପ୍ରେମିକଟିଏ ତାକୁ ମିଳିଗଲେ ବିନା ଦ୍ୱିଧାରେ ସେ ତମକୁ ଛାଡ଼ିଦେବ । ମହୁ ମାଛିଟିଏ ଫୁଲରୁ ଫୁଲକୁ ଉଡ଼ିଲାପରି ଯୁବତୀ ସ୍ତ୍ରୀଲୋକ ସବୁବେଳେ ନୂଆ ନୂଆ ଟୋକାଙ୍କ ପଛରେ ଗୋଡ଼ାଏ । ମୋ ଭଳି ତମେ ବିପଦରେ ପଡ଼ିପାର ।– ଏତକ କହି ମାଙ୍କଡ଼ ସୋମସ୍ୱାମୀ ତା' ବନ୍ଧୁ ନିଶ୍ଚୟଦତ୍ତର ମୁହଁକୁ ଚାହିଁଲା । ଅଳ୍ପ ସମୟ ପରେ ସୂର୍ଯ୍ୟ ଅସ୍ତହେଲେ ।

ରାତି ହେବାରୁ ସଂଗୋପ୍ତଦିନୀ କହିଥିବା ମୁତାବକ ସେଠାକୁ ଆସିଲା । ସୋମସ୍ୱାମୀ ନିଶ୍ଚୟଦତ୍ତକୁ ଆଉ ନ ଆଗେଇବାକୁ ଅନୁରୋଧ କରିବା ସତ୍ତ୍ୱେ ସେ ସଂଗୋପ୍ତଦିନୀ ସାହାଯ୍ୟରେ ପୁଷ୍କରବତୀକୁ ଗଲା । ଅନୁରାଗପ୍ରଭା ତା' ବିଦ୍ୟା ବଳରେ ନିଶ୍ଚୟଦତ୍ତ ଆସିଯାଇଥିବା ଜାଣି ପାରିଲା ଓ ତାକୁ ବାହୁମେଳି ସ୍ୱାଗତ କଲା । ନିଶ୍ଚୟଦତ୍ତକୁ ଅନୁରାଗପ୍ରଭା ପାଖରେ ଛାଡ଼ି ଦେଇ ଯକ୍ଷିଣୀ ଅନ୍ତର୍ଦ୍ଧାନ ହୋଇଗଲା । ଗନ୍ଧର୍ବ ରୀତି ଅନୁଯାୟୀ ସେମାନେ ବାହାହେଲେ ଓ ଅନେକ ରାତି ଏକାଠି ସୁଖରେ କଟାଇଲେ । ବାଟରେ ଘଟିଥିବା ଘଟଣାସବୁ ବିଷୟରେ ନିଶ୍ଚୟଦତ୍ତ ଅନୁରାଗପ୍ରଭାକୁ କହିଲା । ଦୁର୍ଭାଗ୍ୟକୁ ମାଙ୍କଡ଼ ହୋଇ ରହିଥିବା ସୋମସ୍ୱାମୀକୁ ସେ କିପରି ସମାଧିରୁ ଉଦ୍ଧାର କରିଥିଲା ଓ ସେମାନେ କିପରି ବନ୍ଧୁହେଲେ– ସେଇସବୁ କଥା ସେ ତା' ସ୍ତ୍ରୀକୁ କହିଲା । ଯଦି ସମ୍ଭବ ହୁଏ,

ଅନୁରାଗପ୍ରଭା ସୋମସ୍ୱାମୀକୁ ମଣିଷ କରିଦେବାକୁ ସେ ତାକୁ ଅନୁରୋଧ କଲା । ଅନୁରାଗପ୍ରଭା ଉତ୍ତର ଦେଲା ଯେ, ତା'ର ସେ କ୍ଷମତା ନାହିଁ । କିନ୍ତୁ ପ୍ରତିଶ୍ରୁତି ଦେଲା ଯେ ତା' ବନ୍ଧୁ ଯୋଗିନୀ ବୁଦ୍ଧରୂପା ସାହାଯ୍ୟରେ ତା' ବନ୍ଧୁକୁ ସାହାଯ୍ୟ କରିବ ।

ଦିନେ ସକାଳେ ନିଶ୍ଚୟଦତ୍ତ ତା'ର ବନ୍ଧୁ ମାଙ୍କଡ଼ ସୋମସ୍ୱାମୀକୁ ଭେଟିବାକୁ ତା' ସାଙ୍ଗରେ ଯିବାକୁ ଅନୁରାଗପ୍ରଭାକୁ କହିଲା । ଅନୁରାଗପ୍ରଭା ରାଜି ହୋଇ ତା'ର ସ୍ୱାମୀକୁ କୋଳରେ ଧରି ସୋମସ୍ୱାମୀ ରହୁଥିବା ସ୍ଥାନକୁ ଉଡ଼ିଗଲା । ସେମାନେ ସୋମସ୍ୱାମୀକୁ ନମସ୍କାର କରି ତାକୁ କୁଶଳ ପୃଚ୍ଛା କଲେ । ସେ ଉତ୍ତର ଦେଲା : ତମେ ଓ ତମ ସ୍ତ୍ରୀ ଆସିଥିବାରୁ ମୁଁ ଖୁସି । ତା'ପରେ ସେ ଅନୁରାଗପ୍ରଭାକୁ ଆଶୀର୍ବାଦ ଦେଲା । ଗୋଟାଏ ପଥର ଉପରେ ବସି ସେମାନେ ବିଭିନ୍ନ ବିଷୟରେ ଗପସପ ହେଲେ । ତା'ପରେ ସୋମସ୍ୱାମୀ ଠୁଁ ବିଦାୟ ନେଇ ରାତିର ପ୍ରଥମ ପ୍ରହରରେ ସେମାନେ ପୁଷ୍କରବତୀକୁ ଫେରି ଆସିଲେ ।

ପରଦିନ ସକାଳେ ନିଶ୍ଚୟଦତ୍ତ ତା' ସ୍ତ୍ରୀକୁ ସୋମସ୍ୱାମୀ ପାଖକୁ ତା' ସହିତ ଯିବାକୁ କହିଲା । କିନ୍ତୁ ଅନୁରାଗପ୍ରଭା ସେଦିନ ଯାଇ ପରିବ ନାହିଁ କହି ତାକୁ ଉଡ଼ିବା ଓ ଓହ୍ଲାଇବା ମନ୍ତ୍ର ଶିଖାଇ ଦେଲା । ସେଇ ଶକ୍ତି ବଳରେ ନିଶ୍ଚୟଦତ୍ତ ଉଡ଼ିଯାଇ ସୋମସ୍ୱାମୀ ପାଖରେ ପହଞ୍ଚିଲା ଓ ଦିନଟି ତା' ସହିତ ସୁଖରେ କଟାଇଲା ।

ସୋମସ୍ୱାମୀ ପାଖକୁ ନିଶ୍ଚୟଦତ୍ତ ଚାଲିଯିବା ପରେ ଅନୁରାଗପ୍ରଭା ତା' ପ୍ରମୋଦ ଉଦ୍ୟାନକୁ ଗଲା । ଜଣେ ବିଦ୍ୟାଧର ଯୁବକ ଉଡ଼ି ଯାଉଯାଉ ତାକୁ ଦେଖି ତା' ପ୍ରେମରେ ପଡ଼ିଗଲା । ବିଦ୍ୟାଧର ତା' ବିଦ୍ୟା ବଳରେ ଜାଣିଗଲା ଯେ ସେଇ ସ୍ତ୍ରୀଲୋକଟି ତା' ଜାତିର ଓ ଜଣେ ମଣିଷକୁ ବାହା ହୋଇଛି । ସେ ଓହ୍ଲାଇ ଅନୁରାଗପ୍ରଭାକୁ ଭେଟିଲା ଓ କହିଲା– ଦେବୀ ! ମୁଁ ଜଣେ ବିଦ୍ୟାଧର ଓ ମୋ ନାଁ ରାଜଭଞ୍ଜନ । ମୁଁ ତମକୁ ଦେଖି ତମ ସୌନ୍ଦର୍ଯ୍ୟରେ ମୁଗ୍ଧ । ତମେ କାହିଁକି ଜଣେ ମଣିଷ ପ୍ରେମରେ ମାତିଛ ? ତମ ବାପା ଏକଥା ଜାଣିଲେ ତମେ ବିପଦରେ ପଡ଼ିବ । ଡେରିହେବା ପୂର୍ବରୁ ମୋତେ ବିବାହ କର । ମୁଁ ତମ ଜାତିର ।

ଅନୁରାଗପ୍ରଭା ତାକୁ ଚାହିଁ ଭାବିଲା ଯେ ସେ ତାକୁ ଠିକ୍ ମାନିବ । ସେ ତା' ସ୍ତ୍ରୀ ହୋଇଗଲା । ଯେତେବେଳେ ଦୁଇଟି ମନ ପ୍ରେମରେ ଏକ ହୋଇଯାଏ, କାମଦେବଙ୍କୁ ତାଙ୍କ କାମ କରିବାରେ ଆଉ ବାଧା କ'ଣ ?

ଦିନରେ କିଛି ସମୟ ଅନୁରାଗପ୍ରଭା ସହିତ କଟାଇ ବିଦ୍ୟାଧର ଚାଲିଗଲା । ସଞ୍ଜ ହେବା ପୂର୍ବରୁ ନିଶ୍ଚୟଦତ୍ତ ସୋମସ୍ୱାମୀ ଠାରୁ ବିଦାୟ ନେଇ ଅନ୍ଧାର ହେବା ପୂର୍ବରୁ ଅନୁରାଗପ୍ରଭା ପାଖକୁ ଫେରି ଆସିଲା । ସେଦିନ ରାତିରେ ମୁଣ୍ଡ ବିନ୍ଧିବା ବାହାନା କରି ଅନୁରାଗପ୍ରଭା ତାକୁ ଏଡ଼ାଇଗଲା । ତା' ଅପରାଧ ବିବେକ ନିଶ୍ଚୟଦତ୍ତଠୁଁ ସଙ୍ଗସୁଖ ନେବାକୁ ତାକୁ ଯେପରି ବାରଣ କଲା । ନିଶ୍ଚୟ ଦତ୍ତ ତା' ମୁଣ୍ଡ ବିନ୍ଧା ବାହାନାକୁ ବିଶ୍ୱାସ କରି ରାତିଟି ଏକାକୀ ଦୁଃଖରେ କଟାଇଲା । ତା'ପରଦିନ ସକାଳେ ସେ ତା' ସହିତ କିଛି ସମୟ କଟାଇଲା ଓ ତା' ଦେହ କଥା ପଚାରି ଓ ସେ ଶିଘ୍ର ଭଲ ହୋଇଯିବ କହି ତା'ଠାରୁ ବିଦାୟ ନେଇ ସୋମସ୍ୱାମୀ ପାଖକୁ ଉଡ଼ି ଚାଲିଗଲା ।

ନିଶ୍ଚୟଦତ୍ତ ଚାଲି ଯିବାର କିଛି ସମୟ ପରେ ବିଦ୍ୟାଧର ଅନୁରାଗପ୍ରଭା ପାଖକୁ ଆସିଲା । ସେ ଗତ ରାତି ଅନିଦ୍ରାରେ ଛଟପଟ ହୋଇ କଟାଇଥିଲା । ତା' ପ୍ରେମିକାକୁ ଭେଟି ସେ ଖୁସି ହେଲା । ଦୁଇଜଣଯାକ ଦିନଟିକୁ ସୁଖରେ କାଟିଲେ । କ୍ଲାନ୍ତ ହୋଇଥିବା ଯୋଗୁଁ ବିଦ୍ୟାଧର ଅନୁରାଗପ୍ରଭା କୋଳରେ ଶୋଇ ପଡ଼ିଲା । ଅନୁରାଗପ୍ରଭା ବିଦ୍ୟା ବଳରେ ତାକୁ ତା' କୋଳରେ ଲୁଚାଇ ଦେଲା ଓ ନିଜେ ଶୋଇ ପଡ଼ିଲା ।



ସେଇ ସମୟରେ ନିଶ୍ଚୟଦତ୍ତ ସୋମସ୍ୱାମୀ ପାଖରେ ଥିଲା, କିନ୍ତୁ ସେ ପୂର୍ବପରି ପ୍ରସନ୍ନ ଦେଖାଯାଉ ନଥିଲା । ନିଜର ଜ୍ଞାନ ବଳରେ ସୋମସ୍ୱାମୀ ଘଟଣା କ'ଣ ଘଟିଛି ଜାଣିପାରିଲା । ସେ ତା' ବନ୍ଧୁକୁ ରକ୍ଷା କରିବାକୁ ଠିକ୍ କଲା । ସେ ତାକୁ ଉଡ଼ି ଉଡ଼ି ଫେରିଯାଇ ଶୋଇଥିବା ଅନୁରାଗପ୍ରଭାକୁ କୋଳରେ ବସାଇ ପୁଣି ଫେରି ଆସିବାକୁ ଅନୁରୋଧ କଲା । ନିଶ୍ଚୟଦତ୍ତ ଖୁବ୍ ଅଳ୍ପ ସମୟ ଭିତରେ ସୋମସ୍ୱାମୀ କହିବା ମୁତାବକ କଲା । ଯୋଗ ବଳରେ ସୋମସ୍ୱାମୀ ତା' ବନ୍ଧୁକୁ ଅନ୍ତର୍ଦୃଷ୍ଟି ଦେଲା ଓ ସେଇ ଅନ୍ତର୍ଦୃଷ୍ଟିରେ ନିଶ୍ଚୟଦତ୍ତ ତା' ସ୍ତ୍ରୀ କୋଳରେ ବିଦ୍ୟାଧରଟିଏ ଶୋଇଥିବା ଦେଖି ପାରିଲା । ସେ ରାଗି ନିଆଁବାଣ ହୋଇଯାଇ ଚିତ୍କାର କଲାରୁ ବିଦ୍ୟାଧର ନିଦରୁ ଉଠିପଡ଼ି ଉଡ଼ି ପଳାଇଲା । ଅନୁରାଗପ୍ରଭା ମଧ୍ୟ ନିଦରୁ ଉଠିଲା ଓ ତା' କୁକର୍ମ ଧରାପଡ଼ି ଯାଇଛି ଜାଣି ଲାଜରେ ମୁଣ୍ଡକୁ ତଳକୁ କରି ଠିଆହୋଇ ରହିଲା । ନିଶ୍ଚୟଦତ୍ତ ତା ମନକଥା କହିଲା– ପାପୀ ମାଇକିନିଆଁ । ବିଶ୍ୱାସରେ ମୁଁ ତୋତେ ପାଇଥିଲି । ତୁ ମୋତେ ଠକିଲୁ କାହିଁକି ? ଆରେ, ସତୀ ସ୍ତ୍ରୀ ପାଇବା ଏ ପୃଥିବୀରେ ଅସମ୍ଭବ ।

ଅନୁରାଗପ୍ରଭା କିଛି ଉତ୍ତର ଦେଲା ନାହିଁ । ସେ କାନ୍ଦି କାନ୍ଦି ତା' ଘରକୁ ଉଡ଼ି ପଳାଇଲା ।

ଅନୁରାଗପ୍ରଭା ଚାଲିଗଲା ପରେ ସୋମସ୍ୱାମୀ ତା' ବନ୍ଧୁକୁ କହିଲା– ମୁଁ ତମକୁ ସାବଧାନ କରିବା ସତ୍ତ୍ୱେ ତମେ ସେଇ ସ୍ତ୍ରୀଲୋକ ପଛରେ ଗୋଡ଼ାଇଲ । ତମର ଅନିୟନ୍ତ୍ରିତ ଓ ଭୁଲ ପ୍ରେମର ଫଳ ହେଉଛି ଏଇ ଦୁଃଖ । ସମ୍ପତ୍ତି ଓ ସ୍ତ୍ରୀଲୋକଙ୍କୁ ବିଶ୍ୱାସ କରିବା ଅନୁଚିତ କାରଣ ଉଭୟ ଚଞ୍ଚଳ । ଆଉ ଦୁଃଖ କର ନାହିଁ । ସହିଯାଅ । ବ୍ରହ୍ମା ମଧ୍ୟ ଭାଗ୍ୟବଳରୁ ମୁକୁଳି ପାରି ନାହାଁନ୍ତି ।

ବନ୍ଧୁ କଥା ଶୁଣି ନିଶ୍ଚୟଦତ୍ତର ଜୀବନରେ ଆଉ କୌଣସି କଥାରେ ଆଗ୍ରହ ରହିଲା ନାହିଁ । ସେ ଶିବଙ୍କ ପୂଜା କରିବାକୁ ପ୍ରତିଜ୍ଞା କଲା । ସେ ମାଙ୍କଡ଼ ସୋମସ୍ୱାମୀର ସଙ୍ଗ ଛାଡ଼ିଲା ନାହିଁ । ସ୍ଥାନ ଯୋଗୁଁ ସୋମସ୍ୱାମୀ ଶିବଙ୍କ ମନ୍ତ୍ର ଜପିଲା । ଦିନେ ମୋକ୍ଷଦା ନାମରେ ଜଣେ ଯୋଗିନୀ ସେଇ ବାଟେ ଯାଉଥିଲା । ମଣିଷ ଓ ମାଙ୍କଡ଼ର ଏଭଳି ବନ୍ଧୁତା ଦେଖି ସେ ନିଶ୍ଚୟଦତ୍ତକୁ ପଚାରିଲା ଯେ, ଗୋଟିଏ ମାଙ୍କଡ଼ କେମିତି ତା'ର ବନ୍ଧୁ ହେଲା । ନିଶ୍ଚୟଦତ୍ତ ସେଇ ଯୋଗିନୀକୁ ତା' ନିଜ ବିଷୟରେ ଓ ମାଙ୍କଡ଼ଟି ବିଷୟରେ ସବୁକଥା କହି ସେ ଯଦି ପାରିବ, ତା'ହେଲେ ସୋମସ୍ୱାମୀକୁ ତା' ମଣିଷ ରୂପ ଦେବ ବୋଲି ଅନୁରୋଧ କଲା ।

ଯୋଗିନୀ ବିପଦରେ ପଡ଼ିଥିବା ଜୀବଜନ୍ତୁଙ୍କ ପ୍ରତି ଖୁବ୍ ଦୟାବତୀ ଥିଲା । କିଛି ମନ୍ତ୍ର ପଢ଼ି ମାଙ୍କଡ଼ଟିର ଗଳାରୁ ସେ ସୂତାଟିକୁ ଫିଟାଇ ଦେଲା । ସଙ୍ଗେ ସଙ୍ଗେ ସୋମସ୍ୱାମୀ ମଣିଷ ରୂପ ଫେରିପାଇଲା । ସେମାନେ ତାକୁ କୃତଜ୍ଞତା ଜଣାଇବା ପୂର୍ବରୁ ଯୋଗିନୀଟି ଅନ୍ତର୍ଦ୍ଧାନ ହୋଇଗଲା ।

ଉଭୟ ସୋମସ୍ୱାମୀ ଓ ନିଶ୍ଚୟଦତ୍ତ କଠିନ ତପସ୍ୟା କରି ମୁକ୍ତି ପାଇଲେ ।

କଥା ଶୁଣାଇ ସାରି ଗୋମୁଖ କହିଲେ– ଏଥିପାଇଁ ମୁଁ କହୁଛି ଯେ ଯଦି ସ୍ତ୍ରୀର ମନ ଚଞ୍ଚଳ ହୁଏ ତା'ହେଲେ କୌଣସି ପୁରୁଷ ତାକୁ ବଶ କରିପାରିବ ନାହିଁ ।

ଗୋମୁଖଙ୍କ କଥା ଶୁଣି ମରୁଭୂତି କହିଲେ– ତମର ଏପରି କହିବା ମୋତେ ଠିକ୍ ଲାଗୁନାହିଁ । ଏମିତି ବେଶ୍ୟାମାନେ ବି ଅଛନ୍ତି, ଯେଉଁମାନେ ସଦାଚାରିଣୀ । ଏଇ ବିଷୟରେ ମୁଁ ଗପଟିଏ କହୁଛି, ଶୁଣ ।

# ବିକ୍ରମାଦିତ୍ୟ ଓ ମଦନମାଳା କଥା

ପାଟଳୀପୁତ୍ର ନଗରରେ ପରମ ପ୍ରତାପୀ ବିକ୍ରମାଦିତ୍ୟ ରାଜତ୍ୱ କରୁଥିଲେ । ଅଶ୍ୱପତି ଓ ଗଜପତି ନାମରେ ଦୁଇଜଣ ରାଜା ତାଙ୍କର ବନ୍ଧୁଥିଲେ । ଅଶ୍ୱପତିଙ୍କ ପାଖରେ ବିରାଟ ଅଶ୍ୱାରୋହୀ

ସେନା ବାହିନୀ ଥିଲା ଓ ଗଜପତିଙ୍କ ପାଖରେ ସେହିପରି ହାତୀ-ଆରୋହୀ ସେନାବାହିନୀ ଥିଲା । ପୃଥିବୀର ସବୁରାଜା ବିକ୍ରମାଦିତ୍ୟଙ୍କ ଅଧୀନରେ ଥିଲେ, କେବଳ ପ୍ରତିଷ୍ଠାନପୁରର ରାଜା ନରସିଂହ ତାଙ୍କ ଅଧୀନତାକୁ ସ୍ୱୀକାର କରୁ ନ ଥିଲେ । ରାଜା ନରସିଂହ ମଧ୍ୟ ବୀର ଓ ଶକ୍ତିଶାଳୀ ଥିଲେ । ଥରେ ରାଜା ବିକ୍ରମାଦିତ୍ୟ ତାଙ୍କର ବନ୍ଧୁ ଗଜପତି ଓ ଅଶ୍ୱପତିଙ୍କ ଭରସାରେ ଆବେଗରେ ପ୍ରତିଜ୍ଞା କଲେ ଯେ ସେ ପ୍ରତିଷ୍ଠାନପୁରର ରାଜା ନରସିଂହଙ୍କ ଉପରେ ଏପରି ବିଜୟ ହାସଲ କରିବେ ଯେ ବନ୍ଦୀ ଓ ଭାଟମାନଙ୍କ ଦ୍ୱାରା ତାଙ୍କ ନାମ ଘୋଷଣା କରାଇ ତାଙ୍କୁ ତାଙ୍କ ସାମନାରେ ହାଜର କରାଇବେ ।

ତା'ପରେ ସେ ଗଜପତି ଓ ଅଶ୍ୱପତିଙ୍କ ସେନାବାହିନୀ ସହିତ ନିଜ ସେନା ନେଇ ପ୍ରତିଷ୍ଠାନପୁର ଆକ୍ରମଣ କରିବାକୁ ବାହାରିଲେ ।

ରାଜା ବିକ୍ରମାଦିତ୍ୟ ସେନାବାହିନୀ ନେଇ ଆସୁଛନ୍ତି ଶୁଣି ପ୍ରତିଷ୍ଠାନପୁରର ରାଜା ନରସିଂହ ତାଙ୍କ ସେନାବାହିନୀ ଧରି ତାଙ୍କ ସହିତ ଲଢ଼ିବାକୁ ନଗର ବାହାରକୁ ଆସିଲେ । ଦୁହିଁଙ୍କ ମଧ୍ୟରେ ଘମାଘୋଟ ଯୁଦ୍ଧ ହେଲା । ନରସିଂହଙ୍କ ପାଖରେ ଏକକୋଟି ସେନା ଥିଲେ । ସେମାନେ ବିକ୍ରମାଦିତ୍ୟଙ୍କ ସେନାମାନଙ୍କୁ ଧ୍ୱସ୍ତ ବିଧ୍ୱସ୍ତ କରିଦେଲେ । ରାଜା ବିକ୍ରମାଦିତ୍ୟ ପାଟଳୀପୁତ୍ର ପଳାଇ ଆସିଲେ ଓ ତାଙ୍କର ଦୁଇ ସହାୟକ ଅଶ୍ୱପତି ଓ ଗଜପତି ନିଜ ନିଜ ସେନାଙ୍କୁ ନେଇ ନିଜ ନିଜ ରାଜ୍ୟକୁ ଫେରିଗଲେ ।

ରାଜା ବିକ୍ରମାଦିତ୍ୟ ଏଥର ଭାବିଲେ ଯେ ପରାକ୍ରମ ଦ୍ୱାରା ନରସିଂହଙ୍କୁ ପରାସ୍ତ କରିବା ସମ୍ଭବ ନୁହେଁ । ସେମିତି ହେଲ ବୁଦ୍ଧିବଳରେ ତାଙ୍କୁ ତାଙ୍କର ପ୍ରତିଜ୍ଞା ପୂରଣ କରିବାକୁ ହେବ । ଏହା ଚିନ୍ତାକରି ରାଜକାର୍ଯ୍ୟ ଭାର ମନ୍ତ୍ରୀମାନଙ୍କୁ ଦେଇ ଛଦ୍ମବେଶରେ ତାଙ୍କ ସାଥୀରେ ଶହେ ସେନା ଓ ପାଞ୍ଚଜଣ ଅଙ୍ଗରକ୍ଷୀ ନେଇ ପ୍ରତିଷ୍ଠାନପୁରରେ ପହଞ୍ଚିଲେ । ପ୍ରତିଷ୍ଠାନପୁରରେ ମଦନମାଳା ନାମରେ ଜଣେ ବେଶ୍ୟା ଘରେ ରହିଲେ । ମଦନମାଳାର ଘର କୌଣସି ରାଜନଅରଠୁଁ କମ୍ ନଥିଲା । ତା' ଘରର ପୂର୍ବ ଦ୍ୱାରରେ କୋଡ଼ିଏ ହଜାର ସୈନ୍ୟ ପହରା ଦେଉଥିଲେ ଓ ଅନ୍ୟ ତିନି ଦ୍ୱାରରେ ଦଶ ହଜାର ଲେଖାଏଁ ସୈନ୍ୟ ପହରା ଦେଉଥିଲେ । ହାତୀ, ଘୋଡ଼ା, ଅସ୍ତ୍ର-ଶସ୍ତ୍ର ଓ ମୂଲ୍ୟବାନ ଅଳଙ୍କାର ଆଦି ଭଣ୍ଡାର ଘରେ ଥିଲା । ତା' ଘରର ସାତଟାଯାକ ଉଚ୍ଚ ପାଚେରୀକୁ ଡେଇଁ ବିକ୍ରମାଦିତ୍ୟ ତାଙ୍କୁ ଭେଟିଲେ । ମଦନମାଳା ତାଙ୍କ ରାଜକୀୟ ଠାଟ ଦେଖି ତାଙ୍କୁ ଉପଯୁକ୍ତ ସମ୍ମାନ ଦେଇ ଯୋଗ୍ୟ ଆସନରେ ବସାଇଲା । ରାଜା ବି ତା' ରୂପ-ଲାବଣ୍ୟ ଓ ବିନୟରେ ମୁଗ୍ଧ ହୋଇଗଲେ । ଆଉ ମଦନମାଳା ମଧ୍ୟ ରାଜାଙ୍କ ପ୍ରକୃତ ରୂପକୁ ନ ଚିହ୍ନି ନିଜ ଘରର ସବୁ ଐଶ୍ୱର୍ଯ୍ୟ ଅର୍ପଣ କରିଦେଲା ଏପରିକି, ନିଜକୁ ମଧ୍ୟ ଅର୍ପଣ କରିଦେଲା ।

ରାଜା ବିକ୍ରମାଦିତ୍ୟ କିଛି ଦିନପାଇଁ ମଦନମାଳା ଘରେ ରହିଲେ । ତାଙ୍କର ନିୟମ ଥିଲା ପ୍ରତିଦିନ ଦାନଦେବା । ମଦନମାଳା ନିଜେ ପ୍ରତିଦିନ ସକାଳୁ ରାଜାଙ୍କ ଦାନ ଦେବାପାଇଁ ତା' ଭଣ୍ଡାରରୁ ଅନେକ ସୁନା ଓ ମୁଦ୍ରା କାଢ଼ି ଅଲଗା କରି ଦେଉଥିଲା । ସେ ରାଜାଙ୍କୁ ନିଜ ପାଖରୁ ଖର୍ଚ୍ଚ କରିବାକୁ ଦେଉ ନଥିଲା । ରାଜା ବିକ୍ରମାଦିତ୍ୟଙ୍କ ପ୍ରତି ମଦନମାଳାର ପ୍ରେମ ଏମିତି ସୀମାରେ ପହଞ୍ଚି ଯାଇଥିଲା ଯେ ସେ ଅନ୍ୟ ପୁରୁଷଙ୍କୁ ଆଖି ଉଠାଇ ଚାହିଁବା ବନ୍ଦକରି ଦେଲା । ଏପରିକି ସମୟ ସମୟରେ ତା' ପାଖକୁ ଆସୁଥିବା ପ୍ରତିଷ୍ଠାନପୁର ରାଜା ନରସିଂହଙ୍କୁ ମଧ୍ୟ ଆସିବାକୁ ସେ ବାହାନା କରି ବନ୍ଦ କରିଦେଇଥିଲା ।

ରାଜା ବିକ୍ରମାଦିତ୍ୟ ଭାବିବାକୁ ଲାଗିଲେ ଯେ ସେ ମଦନମାଳାର ଏମିତିକା ଛଳହୀନ ପ୍ରେମ ଓ ଉପକାରର ଋଣକୁ କେମିତି ସୁଝିବେ । ତାଙ୍କୁ ନିଜ ପ୍ରତିଜ୍ଞା ପୂରଣ କରିବାକୁ ହେବ ଓ ମଦନମାଳା ପାଇଁ ଏପରି କିଛି କରିବାକୁ ହେବ ଯାହା ତା' ପ୍ରେମର ଅନୁରୂପ ହେବ । ରାଜା ତାଙ୍କ ସହିତ ଆସିଥିବା



ମନ୍ତ୍ରୀ ବୁଦ୍ଧିବରଙ୍କ ସହିତ ପରାମର୍ଶ କଲେ । ବୁଦ୍ଧିବର କହିଲେ— ମହାରାଜା ! ଭିକ୍ଷୁ ପ୍ରଚଣ୍ଡ ବୁଦ୍ଧଙ୍କ ଠାରୁ ଯେଉଁ ରତ୍ନ ଆପଣ ପାଇଥିଲେ, ତାକୁ ମଦନମାଳାକୁ ଉପହାର ଦିଅନ୍ତୁ ।

ରାଜା କହିଲେ— ସେଇ ସବୁଯାକ ରତ୍ନ ଦେଲ ମଧ୍ୟ ମଦନମାଳାର ପ୍ରେମ ଓ ଉପକାରର ଋଣ ଶୁଝି ହେବନାହିଁ । ପ୍ରଚଣ୍ଡ ବୁଦ୍ଧ ମୋତେ ବଳୀ ଦେବାକୁ ଚାହିଁଥିଲା, ଓଲଟା ମୁଁ ତାକୁ ବଳି ଚଢ଼େଇ ଦେଲି । ସେଥିରେ ଦେବତାମାନେ ମୋ ଉପରେ ପ୍ରସନ୍ନ ହୋଇଥିଲେ ଓ କୁବେର ମୋତେ ବର ଦେଇଥିଲେ । ବର୍ତ୍ତମାନ ମୁଁ ସେ ବରର ଉପଯୋଗ କରିବି ।

ଏତିକି କହି ରାଜା ମନ୍ତ୍ରୀ ବୁଦ୍ଧିବର ଓ ସୈନ୍ୟମାନଙ୍କୁ ପାଟଳୀପୁତ୍ରକୁ ପଠାଇ ଦେଲେ ଓ ତା'ପରଦିନ ଏକାକୀ ପୂଜା କରିବାକୁ ମନ୍ଦିରକୁ ଗଲେ । ସେଠାରେ ସେ କୁବେରଙ୍କୁ ଆରାଧନା କରି ପ୍ରାର୍ଥନା କଲେ— ହେ ଦେବ ! ଆପଣ ମୋତେ ଯେଉଁ ବର ଦେଇଥିଲେ, ସେଇ ବର ଅନୁଯାୟୀ ମୋତେ ସୁନାର ପାଞ୍ଚୋଟି ଅକ୍ଷୟ ପୁରୁଷ ଦିଅନ୍ତୁ, ଯାହାର କୌଣସି ଅଙ୍ଗ କଟାଗଲେ, ସେଇ ସ୍ଥାନରେ ସୁନାର ସେଇ ଅଙ୍ଗ ପୁଣି ବାହାରିବ ।

କୁବେର ରାଜାଙ୍କ ସମ୍ମୁଖରେ ଆବିର୍ଭୂତ ହୋଇ 'ତଥାସ୍ତୁ' କହି ଅନ୍ତର୍ଦ୍ଧାନ ହୋଇଗଲେ । ତାଙ୍କର ଅନ୍ତର୍ଦ୍ଧାନ ହୋଇଯିବା ମାତ୍ରେ ରାଜା ମନ୍ଦିର ଭିତରେ ପାଞ୍ଚୋଟି ସୁନାର ପୁରୁଷ ଦେଖିଲେ । ତା'ପରେ ସେ ସେଗୁଡ଼ିକୁ ସେଇଠାରେ ଛାଡ଼ିଦେଇ ନିଜର ସିଦ୍ଧି ବଳରେ ଆକାଶ ମାର୍ଗରେ ପାଟଳୀପୁତ୍ର ଫେରିଗଲେ ।

ଏଣେ ମଦନମାଳା ରାଜା ମନ୍ଦିରରୁ ଫେରିବା ବହୁତ ବିଳମ୍ବ ହେବା ଦେଖି ତାଙ୍କୁ ଡାକି ଆଣିବାକୁ ନିଜେ ମନ୍ଦିରକୁ ଗଲା । ମନ୍ଦିରରେ ରାଜାଙ୍କୁ ନପାଇ ପାଞ୍ଚୋଟି ସୁନାର ପୁରୁଷଙ୍କୁ ଦେଖିଲା । ସେ ଦୁଃଖୀ ହୋଇ ଭାବିଲା ମୋର ପ୍ରିୟ ଦେବତା ବା ଗନ୍ଧର୍ବ ଅଟନ୍ତି । ସେ ମୋତେ ଏଇ ସୁନାର ପୁରୁଷ ଦେଇ ଅନ୍ତର୍ଦ୍ଧାନ ହୋଇ ଯାଇଛନ୍ତି । କିନ୍ତୁ ତାଙ୍କ ବିନା ସୁନାର ପୁରୁଷ ତ ମୋ ପାଇଁ ତୁଚ୍ଛ, ସେଗୁଡ଼ାକ ନେଇ ମୁଁ କ'ଣ କରିବି ?

ପ୍ରିୟଙ୍କ ସ୍ମୃତିରେ ମଦନମାଳାର ଦାନ ଓ ପୁଣ୍ୟ ଆହୁରି ବଢ଼ିଗଲା । ସେ ପ୍ରିୟଙ୍କ ଦ୍ୱାରା ଉପହାର ଦିଆଯାଇଥିବା ସୁନାର ପୁରୁଷ ମୂର୍ତ୍ତିମାନଙ୍କର ଗୋଟିଏ ଗୋଟିଏ ହାତ କାଟି ଯାଚକମାନଙ୍କୁ ଦାନ କରିଦେଲା । କିନ୍ତୁ ସେଇ କଟା ହାତ ସ୍ଥାନରୁ ପୁଣି ନୂଆ ସୁନାର ହାତ ବାହାରିଲା । ଯେଉଁ ବ୍ରାହ୍ମଣ ଯେତୋଟି ବେଦ ଜାଣିଥିଲେ, ମଦନମାଳା ତାଙ୍କୁ ସେତିକିଟି ସୁନାର ହାତ ଦାନ ଦେଲେ । ତା'ର ଅଦ୍ଭୁତ ଦାନର କଥା ଧୀରେ ଧୀରେ ସାରା ସଂସାରରେ ବ୍ୟାପିଗଲା । ପାଟଳୀପୁତ୍ରରୁ ମଧ୍ୟ ବ୍ରାହ୍ମଣମାନେ ନିଜ ନିଜ ବେଦଜ୍ଞାନ ପ୍ରଦର୍ଶନ କରି ସୁନାର ହାତ ନେବାକୁ ପହଞ୍ଚିଲେ । ସେମାନଙ୍କ ଭିତରେ ଚାରିବେଦ ଜାଣିଥିବା ବ୍ରାହ୍ମଣ ସଂଗ୍ରାମଦତ୍ତ ମଦନମାଳା ଠାରୁ ଚାରୋଟି ସୁନା ହାତ ଦାନରେ ପାଇଲା ଓ ମଦନମାଳାର ଦୁଃଖୀ ପରିବାର ଲୋକମାନେ ମଦନମାଳାର ବିରହ ବ୍ୟଥା ଓ ପ୍ରତିଜ୍ଞା କଥା ତାକୁ କହିଲେ । ତା'ପରେ ସେଇ ବ୍ରାହ୍ମଣ ମଦନମାଳା ଦେଇଥିବା ସୁନାର ଚାରୋଟି ହାତ ଓଟ ଉପରେ ଲଦି ପାଟଳୀପୁତ୍ର ଫେରି ଆସିଲା ।

ପାଟଳୀପୁତ୍ର ଫେରି ଆସି ସେଇ ବ୍ରାହ୍ମଣ ଭାବିଲା ଯେ ଏତେ ସୁନା ଘରେ ରଖିବା ଠିକ୍ ନୁହେଁ, ତେଣୁ ସେ ସେଇ ସୁନାର ହାତଗୁଡ଼ିକୁ ଓଟ ଉପରେ ଲଦି ରାଜା ବିକ୍ରମାଦିତ୍ୟଙ୍କ ପାଖରେ ପହଞ୍ଚିଲା ଓ ତାଙ୍କୁ କହିଲା— ମହାରାଜ ! ମୁଁ ଆପଣଙ୍କ ରାଜ୍ୟର ଜଣେ ଗରୀବ ବ୍ରାହ୍ମଣ । ମୁଁ ପ୍ରତିଷ୍ଠାନପୁରର ବେଶ୍ୟା ମଦନମାଳାର ଦାନକଥା ଶୁଣି ପ୍ରତିଷ୍ଠାନପୁର ଯାଇଥିଲି । ସେଠାରେ ମଦନମାଳା ମୋର ଚାରି ବେଦର ଜ୍ଞାନ ପରୀକ୍ଷାକରି ମୋତେ ଚାରୋଟି ସୁନାର ହାତ ଦେଲା । ମହାରାଜ, ମୁଁ ସେଗୁଡ଼ିକୁ ରଖିବାକୁ ଅକ୍ଷମ, ତେଣୁ ଆପଣ ସେଗୁଡ଼ିକୁ ରଖନ୍ତୁ । ମଦନମାଳା ପାଖରେ

ତାରୋଟି ସୁନାର ପୁରୁଷ ମୂର୍ତ୍ତି ଅଛି । ଯେଉଁଥିରୁ ସେ ପ୍ରତିଦିନ ଦାନ ଦିଏ । କିନ୍ତୁ ସେ ସୁଖୀ ନୁହେଁ । ଜଣେ ଦିବ୍ୟପୁରୁଷ ତାକୁ ସେଇ ଅକ୍ଷୟ ମୂର୍ତ୍ତିଗୁଡ଼ିକ ଦେଇ ଚାଲିଗଲେ । ସେ ତାକୁ ନିଜ ଜୀବନଠୁଁ ଅଧିକ ଭଲପାଏ । ସେ ପ୍ରତିଜ୍ଞା କରିଛି ଯେ ଛଅମାସ ପୂରିଗଲା ପରେ ଯଦି ସେଇ ପ୍ରିୟ ତାକୁ ଦେଖା ନ ଦିଅନ୍ତି ତା'ହେଲେ ସେ ଜୀବନ ହାରିଦେବ । ବର୍ତ୍ତମାନ ଛଅମାସ ପୂରା ହେବାକୁ ଯାଉଛି ଓ ତା' ପ୍ରିୟର କୌଣସି ପତ୍ତା ନାହିଁ । ତେଣୁ ମଦନମାଳା ମରିବା ପୂର୍ବରୁ ଓ ଅଧିକ ପୁଣ୍ୟ ଅର୍ଜିବା ପାଇଁ ଅଧିକରୁ ଅଧିକ ଦାନ କରିବାରେ ଲାଗିଛି । ମହାରାଜ, ସେ ଦେଇଥିବା ଏଇ ଚାରୋଟି ସୁନାହାତ ମୁଁ ଆପଣଙ୍କ ପାଖକୁ ଏଥିପାଇଁ ଆଣିଛି ଯେ ମୁଁ ଏଥିରେ ଧର୍ମଶାଳା ତିଆରିକରି ଧର୍ମକାର୍ଯ୍ୟ କରିବାକୁ ଚାହୁଁଛି । ଆପଣ ମୋତେ ସାହାଯ୍ୟ କରନ୍ତୁ ।

ରାଜା ସଙ୍ଗେ ସଙ୍ଗେ ବ୍ରାହ୍ମଣଙ୍କ ଇଚ୍ଛା ମୁତାବକ କାର୍ଯ୍ୟ କରିବାକୁ ଆଦେଶ ଦେଲେ । ପୁଣି ମଦନମାଳାର ଖବର ଶୁଣି ଚିନ୍ତାରେ ବ୍ୟାକୁଳହୋଇ ରାଜକାର୍ଯ୍ୟ ମନ୍ତ୍ରୀମାନଙ୍କ ଉପରେ ଛାଡ଼ି ମଦନମାଳାକୁ ଭେଟିବାକୁ ପ୍ରତିଷ୍ଠାନପୁର ଚାଲିଗଲେ । ସେ ପ୍ରତିଷ୍ଠାନପୁରରେ ପହଞ୍ଚିବା ମାତ୍ରେ ମଦନମାଳା ଘରକୁ ଚାଲିଗଲେ ।

ଅଚାନକ ରାଜାଙ୍କୁ ସମ୍ମୁଖରେ ଦେଖି ମଦନମାଳା ଚକିତ ହୋଇଗଲା । ତା' ମୁହଁରୁ କଥା ବାହାରିଲା ନାହିଁ । ପୁଣି ସେଇଠି ରାଜାଙ୍କୁ ତା' ବାହୁପାଶରେ ଭିଡ଼ି ଧରିଲା ଓ କାନ୍ଦି କାନ୍ଦି କହିଲା– ହେ ନିଷ୍ଠୁର ! ମୋତେ ଛାଡ଼ି କହିଁକି ଚାଲି ଯାଇଥିଲ ?

ରାଜା ତାକୁ ବୁଝାଇ ସୁଝାଇ ଶାନ୍ତକଲେ । ତା'ପରେ ଏକାନ୍ତରେ ନେଇ ନିଜର ପରିଚୟ ଦେଲେ ଓ ତାଙ୍କ ପ୍ରତିଜ୍ଞା କଥା କହିଲେ । ସେ କହିଲେ– ପ୍ରିୟେ ! ପୃଥିବୀ ଉପରେ ସୈନ୍ୟବାହିନୀ ସହ ଯୁଦ୍ଧକଲେ ବି ରାଜା ନରସିଂହ ମୋଠୁଁ ଅଜେୟ । ଆକାଶ ବାଣୀ ହେତୁ ମୁଁ ତାକୁ ଏମିତି ଖେଳୁ ଖେଳୁ ମାରି ଦେଇପାରେ, କିନ୍ତୁ ମୁଁ ଅଧର୍ମ ଯୁଦ୍ଧ କରିବାକୁ ଚାହେଁ ନାହିଁ । ମୋର ପ୍ରତିଜ୍ଞା ପୂରଣ କରିବାରେ ତମେ ମୋତେ ସାହାଯ୍ୟ କର । ତମ ଘରକୁ ତ ରାଜା ନରସିଂହ କେବେ କେବେ ଆସେ । ସେ ଯେମିତି ଆସିବ, ଦ୍ୱାରପାଳ ଦ୍ୱାରା ମୋତେ ସୂଚନା ଦେବ ।

ମଦନମାଳା କହିଲା– ଯଦି ମୁଁ ଆପଣଙ୍କର କିଛି କାମରେ ଲାଗିପାରିବି, ତା'ହେଲେ ମୋର ଏ ଜୀବନକୁ ଧନ୍ୟ ମନେକରିବି ।

ରାଜା ମଦନମାଳାର ଘରେ କିଛିଦିନ ସୁଖରେ ରହିଲେ ।

ରାଜା ନରସିଂହ କେତେଦିନ ହେଲା ଭାବୁଥିଲେ ଯେ ବେଶ୍ୟା ମଦନମାଳା ଘରେ ଥିବା ସୁନାର ଅକ୍ଷୟ ପୁରୁଷ କେମିତିକା ସେ ଦେଖନ୍ତେ । ଦିନେ ସେ ମଦନମାଳା ଘରେ ପହଞ୍ଚିଲେ । ମଦନମାଳା ପୂର୍ବରୁ ଦ୍ୱାରପାଳମାନଙ୍କୁ ରାଜାଙ୍କ ବିଷୟରେ ବୁଝାଇ ଦେଇଥିଲା । ତେଣୁ କୌଣସି ଦ୍ୱାରପାଳ ଦ୍ୱାରରେ ରାଜାଙ୍କୁ ଅଟକାଇଲେ ନାହିଁ ଓ ରାଜା ଘର ଭିତରକୁ ଚାଲିଲେ । ଭିତର ଘର ପର୍ଯ୍ୟନ୍ତ ରାଜା ଆସିଲା ମାତ୍ରେ ମଦନମାଳାର ବନ୍ଦୀମାନେ ଉଚ୍ଚ ସ୍ୱରରେ ଘୋଷଣା କରିବାକୁ ଲାଗିଲେ : ମହାରାଜ ! ପ୍ରତିଷ୍ଠାନପୁରର ମହାରାଜା ନରସିଂହ ଆପଣଙ୍କ ଦର୍ଶନ ପାଇଁ ଉପସ୍ଥିତ । ସେ ଆପଣଙ୍କୁ ଭକ୍ତି କରନ୍ତି ।

ଏଇସବୁ ଶୁଣି ରାଜା ନରସିଂହ ରାଗିଗଲେ ଓ ତାଙ୍କର ଆଶଙ୍କା ମଧ ହେଲା । ସେ ପଚାରିଲେ– ଭିତରେ କିଏ ଅଛି ? ବନ୍ଦୀମାନେ ଜଣାଇଲେ ଯେ ପାଟଳୀପୁତ୍ରର ମହାରାଜା ବିକ୍ରମାଦିତ୍ୟ ଅଛନ୍ତି ।

ରାଜା ନରସିଂହ ଭାବିଲେ– ରାଜା ବିକ୍ରମାଦିତ୍ୟ ଏଇଭଳି ଭାବରେ ନିଜର ପ୍ରତିଜ୍ଞା ପୂରଣ କରିନେଲେ । ସତରେ ସେ ବୁଦ୍ଧିମାନ ଓ ତେଜସ୍ୱୀ । ଏଇକ୍ଷିଣି ମୋର ପଛକୁ ପାଦ ପକାଇବା ଠିକ୍ ହେବନାହିଁ । ଭିତରକୁ ଯାଇ ତାଙ୍କୁ ଭେଟିବା ଉଚିତ୍ ।



ଏହା ଚିନ୍ତାକରି ରାଜା ନରସିଂହ ବିକ୍ରମାଦିତ୍ୟ ରହୁଥିବା ଘର ଭିତରକୁ ପଶିଗଲେ । ତାଙ୍କୁ ଦେଖିବା ମାତ୍ରେ ବିକ୍ରମାଦିତ୍ୟ ଉଠିଆସି ତାଙ୍କୁ ଆଲିଙ୍ଗନ କଲେ ।

ରାଜା ନରସିଂହ ସୁନାର ପୁରୁଷମାନଙ୍କ ବିଷୟରେ ପଚାରିଲେ । ବିକ୍ରମାଦିତ୍ୟ ଭିକ୍ଷୁ ପ୍ରପଞ୍ଚ ବୁଦ୍ଧ ତାଙ୍କୁ ଧୋକା ଦେବାର ଚେଷ୍ଟା ଓ ସେ ତାକୁ ମାରି ଦେବାରୁ କୁବେର ତାଙ୍କୁ ବରଦେବା କଥା ଶୁଣାଇଲେ । ବିକ୍ରମାଦିତ୍ୟଙ୍କ ପ୍ରତାପ ବିଷୟରେ ଶୁଣି ରାଜା ନରସିଂହ ତାଙ୍କ ପ୍ରତି ଆହୁରି ପ୍ରଭାବିତ ଓ ସନ୍ତୁଷ୍ଟ ହେଲେ । ସେ ତାଙ୍କୁ ତାଙ୍କ ରାଜ ପ୍ରାସାଦକୁ ଆମନ୍ତ୍ରଣ କରି ଭଲଭାବେ ସମ୍ମାନିତ କଲେ ।

ବିକ୍ରମାଦିତ୍ୟ ଆଉ କିଛି ଦିନ ପ୍ରତିଷ୍ଠାନପୁରରେ ରହିଲେ ଓ ତା'ପରେ ମଦନମାଳାକୁ ରାଣୀ କରିନେଇ ପାଟଳୀପୁତ୍ର ଚାଲିଗଲେ ।

କଥାଟି ଶୁଣାଇ ମରୁଭୂତି କହିଲେ– ଯଦି ବେଶ୍ୟାମାନେ ଏପରି ପବିତ୍ର ଆଚରଣ କରିପାରନ୍ତି, ତା'ହେଲେ କୁଳୀନ ସ୍ତ୍ରୀମାନଙ୍କ କଥା କ'ଣ କହିବା ?

ତା'ପରେ ସେନାପତି ହରିଶିଖ ନରବାହନଦତ୍ତଙ୍କୁ କହିଲେ– ରାଜକୁମାର ! ମରୁଭୂତି ସତ କଥା କହୁଛି । କୁଳୀନ ସ୍ତ୍ରୀ ନିଜ ସ୍ୱାମୀକୁ ସବୁ ବିପଦରୁ ବଞ୍ଚାଇଥାଏ । ଏହି ବିଷୟରେ ମୁଁ ମଧ ଆପଣଙ୍କୁ କଥାଟିଏ ଶୁଣଉଛି, ଶୁଣନ୍ତୁ ।

## ଗୁଣବତୀ ଦେବୀ କଥା

ବର୍ଦ୍ଧମାନ ନଗରରେ ସତ୍ୟନିଷ୍ଠ ରାଜା ବିରାଜବାହୁ ରାଜତ୍ୱ କରୁଥିଲେ । ତାଙ୍କର ଶହେ ରାଣୀ ଥିଲେ, କିନ୍ତୁ ଗୁଣବତୀ ରାଜାଙ୍କର ସବୁଠୁଁ ପ୍ରିୟ ଥିଲେ । ଦୁର୍ଭାଗ୍ୟକୁ ରାଜାଙ୍କର ଶହେ ରାଣୀଙ୍କ ଭିତରୁ କାହାରି ପୁଅଟିଏ ହେଲା ନାହିଁ । ରାଜା ତାଙ୍କ କବିରାଜ ଶ୍ରୁତିବର୍ଦ୍ଧନଙ୍କୁ ଡକାଇ ଏମିତି ଗୋଟିଏ ଔଷଧ ପ୍ରସ୍ତୁତ କରିବାକୁ କହିଲେ, ଯାହାକୁ ଖାଇଲେ ତାଙ୍କ ରାଣୀମାନେ ଗର୍ଭବତୀ ହେବେ । କବିରାଜ ଏଥିରେ ସମ୍ମତ ହେଲେ ଓ ଗୋଟିଏ ବଣୁଆ ଛେଳି ଆବଶ୍ୟକ କଲେ । ତାଙ୍କୁ ଗୋଟିଏ ବଣୁଆ ଛେଳି ଯୋଗାଇ ଦିଆଗଲା ଓ ସେ ସେଥିରୁ ରସ ପ୍ରସ୍ତୁତ କଲେ । ରସ ପ୍ରସ୍ତୁତ ବେଳେ କେବଳ ଗୁଣବତୀଙ୍କ ବ୍ୟତୀତ ସମସ୍ତେ ଉପସ୍ଥିତ ଥିଲେ । ସେତେବେଳେ ରାଜା ପୂଜାରେ ବସିଥିଲେ ଓ ସେ ତାଙ୍କ ପାଖରେ ଥାଇ ସାହାଯ୍ୟ କରୁଥିଲେ ।

କବିରାଜ ରସ ପ୍ରସ୍ତୁତ କରି ଉପସ୍ଥିତ ଥିବା ସମସ୍ତଙ୍କୁ ଦେଲେ । ରାଣୀମାନେ ଜାଣି ଜାଣି ଗୁଣବତୀ ନଥିବା କଥା କହିଲେ ନାହିଁ ଓ କବିରାଜ ବି ତାଙ୍କ ଅନୁପସ୍ଥିତ ଲକ୍ଷ୍ୟ କରି ନଥିଲେ । ରାଜା ପୂଜାସାରି ଗୁଣବତୀଙ୍କ ସହ ଆସି ଦେଖିଲେ ଯେ ରସ ଶେଷ ହୋଇ ଯାଇଛି । ରାଜା ରାଗିଗଲେ କିନ୍ତୁ ନିଜକୁ ସମ୍ଭାଳି ନେଇ ପଚାରିଲେ– କ'ଣ ଟିକିଏ ବି ରସ ନାହିଁ ? ଚାକରମାନେ କହିଲେ ଯେ ଛେଳି ଶିଙ୍ଘ ଦୁଇଟି କେବଳ ଅଛି । କବିରାଜ ଖୁସି ହୋଇ ଶିଙ୍ଘରେ ରସ ତିଆରି କରି ରାଣୀ ଗୁଣବତୀଙ୍କୁ ଦେଲେ ।

ସମୟ କ୍ରମେ ସବୁ ରାଣୀମାନଙ୍କର ପୁଅଟିଏ ହେଲା ଓ ଆଉ ଅଳ୍ପ କେତେ ଦିନପରେ ଗୁଣବତୀଙ୍କର ମଧ ପୁଅଟିଏ ହେଲା । ରାଜା ଗୁଣବତୀଙ୍କର ପୁଅର ନାମ ଶୃଙ୍ଗଧ୍ୱଜ ରଖିଲେ, ଯେହେତୁ ସେ ଶିଙ୍ଘର ରସରୁ ଜନ୍ମ ହୋଇଥିଲା । ଶୃଙ୍ଗଧ୍ୱଜ ବଡ଼ହୋଇ ସବୁ ପୁଅଙ୍କ ଠାରୁ ଶକ୍ତି, ସୌନ୍ଦର୍ଯ୍ୟ ଓ ଗୁଣରେ ଶ୍ରେଷ୍ଠ ହେଲା । ଆୟାସଲେଖା ନାମରେ ଜଣେ ରାଣୀ ଖଳ ପ୍ରକୃତିର ଥିଲା । ସେ ଅନ୍ୟ ରାଣୀମାନଙ୍କ ସହିତ ମିଶି ଗୁଣବତୀଙ୍କୁ ମାରିବା ପାଇଁ ଯୋଜନା କଲା । ଗୁଣବତୀଙ୍କ ଅନ୍ତଃପୁରର ଜଣେ ଯୁବ ସେବକ ସୁରକ୍ଷିତ ସହିତ ରାଣୀ ଗୁଣବତୀ ଗୋପନରେ ମିଳନ୍ତି ବୋଲି ଗୋଟାଏ ଦୁର୍ନାମ

ପ୍ରଚାର କରାଗଲା । ରାଜା ତାଙ୍କ ରାଣୀମାନଙ୍କୁ ଜଣ ଜଣ କରି ଏଇ ଦୁର୍ନାମ ବିଷୟରେ ପଚାରନ୍ତେ ସେମାନେ ଦୁର୍ନାମ ସତ ବୋଲି କହିଲେ । ରାଜାଙ୍କୁ ବୁଝାଗଲା ଯେ ଘଟଣା ସତ ଓ ଭୟରେ ତାଙ୍କୁ କେହି ସେଇ ବିଷୟରେ ଜଣାଇ ନଥିଲେ ।

ରାଜା ନିଜ ରାଗକୁ ସମ୍ଭାଳି ମନେ ମନେ ଭାବିଲେ– ଏଇ ଦୁର୍ନାମ ପଛରେ କିଛି ରହସ୍ୟ ଥାଇପାରେ । ଏମିତିକା ଘଟଣା କେବେ ଘଟି ନ ପାରେ । ମୋତେ ଲକ୍ଷ୍ୟ କରିବାକୁ ହେବ । କିଛି ବାହାନା କରି ମୁଁ ସୁରକ୍ଷିତଙ୍କୁ ଦୂରକୁ ପଠାଇ ଦେବି ଓ ଗୁଣବତୀଙ୍କୁ ଗୋଟିଏ କୋଠରୀରେ ଅଟକ ରଖିବି ।

ପରଦିନ ସକାଳେ ସେ ସୁରକ୍ଷିତଙ୍କୁ ଡକାଇ କହିଲେ– ଜାଣିବାକୁ ପାଇଲି ଯେ ତମେ ଜଣେ ବ୍ରାହ୍ମଣକୁ ମାରି ଦେଇଛ । ଆଉ ମୁଁ ତମକୁ ମୋ ସେବାରେ ରଖି ପାରିବି ନାହିଁ । ଯାଅ ଏବଂ ନିଜକୁ ଶୁଦ୍ଧ କରି ପାରିଲେ ଫେରି ଆସିବ । ମୋ ସାମନାରୁ ଏବଂ ଏଇ ନଗରରୁ ସଙ୍ଗେ ସଙ୍ଗେ ଚାଲିଯାଅ ।

ସୁରକ୍ଷିତ ଅବିଚଳିତ ଓ ଶାନ୍ତ ଭାବରେ ଉତ୍ତର ଦେଲା– ମହିମା ! କେବେବେଳେ ଏବଂ କେଉଁଠି ମୁଁ ଜଣେ ବ୍ରାହ୍ମଣକୁ ମାରିଛି ? ଆଉ ସେ ବ୍ରାହ୍ମଣ କିଏ ?

ରାଜା କହିଲେ– ଅଭଦ୍ର ଭଳି ବ୍ୟବହାର କରନାହିଁ । କାଶ୍ମୀର ଚାଲିଯାଅ । ଚକ୍ରପାଣି ଭଗବାନ ବିଷ୍ଣୁଙ୍କ ଦ୍ୱାରା ପବିତ୍ର କ୍ଷେତ୍ର ବିଜୟା, ସେଠି ନନ୍ଦୀ ଓ ବର୍ଷାରେ ସ୍ନାନ କର । ସେଠାରେ ପବିତ୍ର ଗଙ୍ଗା ନଦୀ ବିତସ୍ତା ବହି ଯାଉଛନ୍ତି । ମାଧବ କ୍ଷେତ୍ରର ମାନସରୋବରକୁ ପାର ହୋଇ ତାଙ୍କ ମାଥ । ଶୁଦ୍ଧ ହୁଅ ଓ ତା'ପରେ ଫେରିଆସ ମୋତେ ଦେଖାକର ।– ଏହିପରି ହୁକୁମ ଦେଇ ରାଜା ତାଙ୍କୁ ଦୂରକୁ ପଠାଇଦେଲେ ।

ସ୍ନେହ, ରାଗ ଓ ଆନ୍ତରିକତା ମିଶ୍ରିତ ଅନୁଭୂତିରେ ରାଜା ରାଣୀ ଗୁଣବତୀଙ୍କ ଅନ୍ତଃପୁରକୁ ଗଲେ । ରାଜାଙ୍କୁ ଦେଖି ରାଣୀ ଗୁଣବତୀ ଉଠି ଠିଆ ହେଲେ ଓ ରାଜାଙ୍କ ମୁଖଭଙ୍ଗୀ ଲକ୍ଷ୍ୟକରି କହିଲେ– ହେ ମୋର ଜୀବନର ଜୀବନ ! ଆପଣ କାହିଁକି ଏକି ହତାଶ ଦେଖା ଯାଉଛନ୍ତି ?

ରାଜା କୋମଳ ସ୍ୱରରେ ଉତ୍ତର ଦେଲେ– ଦେବୀ ! ଆଜି ସକାଳେ ଜଣେ ପଣ୍ଡିତ ମୋ ଦରବାରକୁ ଆସି ତମକୁ ଗୋଟିଏ ବନ୍ଦ କୋଠରୀରେ ରଖିବାକୁ ଉପଦେଶ ଦେଲେ । ମୋର ବ୍ରହ୍ମଚାର୍ଯ୍ୟ ପାଳନ କରିବା ଉଚିତ, ନ ହେଲେ ମୋ ରାଜ୍ୟ ଚାଲିଯିବ । ମୋତେ ଏଇ ଆଗତ ବିପଦ କଥା ଜଣାଇ ସେ ଚାଲିଗଲେ । ତେଣୁ ମୋ ମନ ଭଲ ନାହିଁ ।

ରାଣୀ ଶଙ୍କିତା ହୋଇ କହିଲେ– ପ୍ରଭୁ ! ଆଉ ଡେରି କାହିଁକି କରୁଛନ୍ତି ? ମୋତେ ଏଇ ସଙ୍ଗେ ସଙ୍ଗେ ବନ୍ଦ କୋଠରୀରେ ରଖନ୍ତୁ । ମୁଁ ଯଦି ମୋ ଜୀବନ ଦେଇ ଆପଣଙ୍କୁ ସାହାଯ୍ୟ କରିପାରିବି, ସେଇ ମୋର ଭାଗ୍ୟ । ମୋର ମରଣ ହେଉ, କିନ୍ତୁ ଆପଣଙ୍କୁ କିଛି ବିପଦ ନପଡୁ । ଜଣେ ନିଷ୍ଠାବତୀ ସ୍ତ୍ରୀ ପାଇଁ ତା'ର ସ୍ୱାମୀ ଏଇ ଜୀବନରେ ଓ ପରଜନ୍ମରେ ସବୁ କିଛି ।

ରାଣୀ ଗୁଣବତୀଙ୍କର କଥା ଶୁଣି ରାଜାଙ୍କ ଆଖିରୁ ଲୁହ ଗଡ଼ିପଡ଼ିଲା ଓ ସେ ଭାବିଲେ– ରାଣୀ ନିଶ୍ଚୟ ଦୋଷଶୂନ୍ୟ । ମୋ କଥା ଶୁଣି ସେ କେବଳ ଅବିଚଳିତ ଓ ଶାନ୍ତ ଥିଲା । ତଥାପି ମୋତେ ଦୁର୍ନାମର ସତ୍ୟତା ବିଷୟରେ ଜାଣିବାକୁ ହେବ ।

ସେ ରାଣୀଙ୍କୁ କହିଲେ– ପ୍ରିୟେ ! ଏଇଠି ଗୋଟିଏ ବନ୍ଦ କୋଠରୀ ତିଆରି କରିବାକୁ ମୋତେ ଅନୁମତି ଦିଅ । ଗୁଣବତୀ ସମ୍ମତି ଦେଲେ ଓ ରାଜା ଗୋଟିଏ ବନ୍ଦ କୋଠରୀ ତିଆରି କରି ତାଙ୍କୁ ତା' ଭିତରେ ରଖାଇଲେ । ଏଇ ସମୟରେ ତାଙ୍କ ପୁଅ ଶୃଙ୍ଗର୍ଧ୍ୱଜ ଏକଥା ଜାଣି ତା' ବାପାଙ୍କ ପାଖକୁ କାନ୍ଦି କାନ୍ଦି ଦଉଡ଼ିଗଲା । ରାଜା ତାକୁ ସେଇ କାହାଣୀ ବୁଝାଇଲେ, ଯାହା ରାଣୀ ଗୁଣବତୀଙ୍କୁ ବୁଝାଇ ଥିଲେ ଓ ତାକୁ ସାନ୍ତ୍ୱନା ଦେଲେ । ଗୁଣବତୀ ବନ୍ଦ କୋଠରୀରେ ରହି ମଧ୍ୟ ଖୁସି ହେଲେ, ସେ ଭାବିଲେ



ଯେ ସେ ଏପରି ରହିବା ଦ୍ୱାରା ତାଙ୍କ ସ୍ୱାମୀଙ୍କ ଠାରୁ ବିପଦ ଦୂରେଇ ଯିବ । ରାଜା ତାଙ୍କ ରାଜ୍ୟରେ ସୁଖରେ ରହିବେ । ରାଣୀ ଜାଣିଥିଲେ ରାଜାଙ୍କ ସୁଖରେ ହିଁ ତାଙ୍କର ସୁଖ ।

ଅୟସଲେଖା ଓ ଅନ୍ୟ ରାଣୀମାନଙ୍କର ଚକ୍ରାନ୍ତ ମୁତାବକ ସବୁ ଘଟଣା ଘଟୁଥିଲା । ଅୟସଲେଖାର ନିର୍ଯ୍ୟାସଭୁଜ ନାମରେ ପୁଅଟିଏ ଥିଲା । ସେ ତା ମା'ପରି ଖଳ ଥିଲା । ଅୟସଲେଖା ତାକୁ ଡକାଇ କହିଲା– ଦେଖ, ଆମେ ଗୁଣବତୀଙ୍କୁ ବନ୍ଦ କୋଠରୀରେ ରଖାଇବାରେ ସଫଳ ହୋଇଛୁ । ତୁ ଗୋଟାଏ କିଛି ବାହାନା କରି ଶୃଙ୍ଗର୍ଧ୍ୱଜକୁ ବହୁତ ଦୂରକୁ ପଠାଇ ଦେ ।

ନିର୍ଯ୍ୟାସଭୁଜ ତା' ମା' କଥା ଶୁଣି ଖୁସିହେଲା ଓ ମା', ପାଖରୁ ତା'ର ଅନ୍ୟ ଭାଇମାନଙ୍କ ପାଖକୁ ଶୃଙ୍ଗର୍ଧ୍ୱଜକୁ ଦୂରକୁ ପଠାଇବା ପାଇଁ ଯୋଜନା କରିବାକୁ ଚାଲିଗଲା ।

ଦିନେ ସକାଳେ ଗୋଟିଏ କୁତ୍ସିତ ପ୍ରକାଣ୍ଡ ବଗ ଉଡ଼ିଆସି ରାଜ ପ୍ରାସାଦର ଦ୍ୱାରରେ ବସିଗଲା । ସେତିକି ବେଳେ ଜଣେ ବୌଦ୍ଧ ସନ୍ନ୍ୟାସୀ ସେଇ ବାଟେ ଯାଉଥିଲେ । ଯେତେବେଳେ ଅନ୍ୟସବୁ ଭାଇମାନେ ପକ୍ଷୀଟିକୁ ଦେଖୁଥିଲେ, ସେ ମନ୍ତବ୍ୟ ଦେଲେ– ସେଇ ପକ୍ଷୀ ଅଗ୍ନିଶିଖା ନାମକ ରାକ୍ଷସ । ଏହା ପକ୍ଷୀ ଭାବରେ ଅନେକ ନଗର ଧ୍ୱଂସ କରୁଛି । ତମମାନଙ୍କ ଭିତରୁ ଜଣେ ତାକୁ ଶର ମାରି ଆଘାତ କର । ସେ ଉଡ଼ି ପଳାଇବ ।

ରାଜକୁମାରମାନେ ଜଣକ ପରେ ଜଣେ ତାକୁ ଶର ମାରିଲେ କିନ୍ତୁ କେହି ଲକ୍ଷ୍ୟ ଭେଦ କରିପାରିଲେ ନାହିଁ । ବୌଦ୍ଧ ସନ୍ନ୍ୟାସୀ କହିଲେ– ଶୃଙ୍ଗର୍ଧ୍ୱଜ ଚେଷ୍ଟା କରନ୍ତୁ । ସେ ହୁଏତ ସଫଳ ହୋଇପାରନ୍ତି ।

ସନ୍ନ୍ୟାସୀଙ୍କ କଥା ଶୁଣି ଜଣେ ରାଜକୁମାର ଦଉଡ଼ିଯାଇ ରାଜାଙ୍କ ସୁନାରେ ତିଆରି ଧନୁ ଓ ଶର ଆଣି ଶୃଙ୍ଗର୍ଧ୍ୱଜକୁ ଦେଲା । ସୁନାର ଶରରେ ମଣି ମୁକ୍ତା ଖଞ୍ଜା ଯାଇଥିଲା । ଶୃଙ୍ଗର୍ଧ୍ୱଜ ଧନୁ ଓ ଶର ନେଲା ଓ ଧନୁରେ ଶର ଯୋଖି ମାରିଲା । ତା'ର ଲକ୍ଷ୍ୟ ନିର୍ଭୁଲ ଥିଲା ଓ ଶରଟି ପକ୍ଷୀ ଦେହରେ ଗଳିଗଲା । ପକ୍ଷୀ ଦେହରୁ ରକ୍ତ ଗଡ଼ି ତଳେ ପଡ଼ିଲା ଓ ତୀର ସହିତ ପକ୍ଷୀଟି ଉଡ଼ି ପଳାଇଲା । ଭାଇମାନେ ଡରିବା ଛଳନା କରି ଏକ ସ୍ୱରରେ ଶୃଙ୍ଗର୍ଧ୍ୱଜକୁ କହିଲେ– ସୁନା ଶରଟି ହଜି ଯିବାରୁ ବାପା ଆମମାନଙ୍କ ଉପରେ ରାଗିବେ । ଆମେ ଏଇକ୍ଷଣି କ'ଣ କରିବା ?

ଶୃଙ୍ଗର୍ଧ୍ୱଜ ସେମାନଙ୍କୁ କହିଲା– ଶର ପାଇଁ ବ୍ୟତିବ୍ୟସ୍ତ ହୁଅନାହିଁ । ମୁଁ ରାକ୍ଷସକୁ ଅନୁସରଣ କରି ଯାଉଛି, ତାକୁ ମାରି ଶର ଫେରାଇ ଆଣିବି । ଏତକ କହି ସେ ରକ୍ତଦାଗକୁ ଦେଖି ଦେଖି ପକ୍ଷୀ ଉଡ଼ି ଯାଇଥିବା ଦିଗରେ ଦଉଡ଼ିଲା । ଅନ୍ୟ ରାଜକୁମାରମାନେ ଖୁସିହୋଇ ସେମାନଙ୍କ ମାଆମାନଙ୍କୁ ସବୁକଥା କହିଲେ । ରାଣୀମାନେ ଆନନ୍ଦିତ ହେଲେ ।

ବଗର ବାଟ ଅନୁସରଣ କରି ଶୃଙ୍ଗର୍ଧ୍ୱଜ ବହୁତ ଦୂର ବନାଞ୍ଚଳକୁ ଚାଲିଗଲା ଓ ସେଠାରେ ଗୋଟିଏ ନଗର ଦେଖିଲା । ସେଇ ନଗରର ପ୍ରମୋଦ ଉଦ୍ୟାନରେ ପହଞ୍ଚି କିଛି ସମୟ ବିଶ୍ରାମ କଲା । ଜଣେ ଅତି ସୁନ୍ଦରୀ ଯୁବତୀ ଉଦ୍ୟାନକୁ ଆସି ସ୍ନେହଭରା ଦୃଷ୍ଟିରେ ତା'ପାଖକୁ ଆସିଲା । ଟିକେ ଦୂରରୁ ଯୁବତୀଟିକୁ ଦେଖି ଶୃଙ୍ଗର୍ଧ୍ୱଜ ତାକୁ କହିଲା– ହେ ମୃଗନୟନୀ ! ଏଇ ସୁନ୍ଦର ନଗରର ନାଁ କ'ଣ ଓ ଏହାର ଶାସକ କିଏ ? ତମେ କିଏ ଓ ଏଠାକୁ କାହିଁକି ଆସିଛ ?

ଲଜ୍ଜାଶୀଳା ଯୁବତୀଟି ତଳକୁ ଚାହିଁ ଉତ୍ତର ଦେଲା– ଏଇ ନଗରର ନାଁ ଧୂମପୁର । ରାକ୍ଷସରାଜ ଅଗ୍ନିଶିଖା ଏଠାରେ ରାଜତ୍ୱ କରନ୍ତି । ମୁଁ ତାଙ୍କ ଝିଅ ରୂପଶିଖା । ତମର ଅସାମାନ୍ୟ ସୌନ୍ଦର୍ଯ୍ୟରେ ଆକର୍ଷିତ ହୋଇ ମୁଁ ଏଠାକୁ ଆସିଛି । ଦୟାକରି ମୋତେ କୁହ ତମେ କିଏ ଓ ଏଠାକୁ କାହିଁକି ଆସିଛ ?

ଶୃଙ୍ଗର୍ଧ୍ୱଜ ରୂପଶିଖାକୁ ତା' ନିଜ ବିଷୟରେ ସବୁକଥା କହି ତା' ନାଁ ଶୃଙ୍ଗର୍ଧ୍ୱଜ ବୋଲି କହିଲା । ଯୁବତୀଟି ବିସ୍ମୟରେ କହିଲା– ମୋ ବାପାଙ୍କୁ ମାତ୍ର ଗୋଟିଏ ଶରରେ ଆଘାତ କରିଥିବାରୁ ନିଶ୍ଚୟ

ତମ ସମାନ ଧନୁର୍ଦ୍ଧର ଆଉ କେହି ନାହାନ୍ତି । ମୁଁ ଶିକାର କରିବା ପାଇଁ ଶରଟି ନେଇ ରଖିଛି । ମନ୍ତ୍ରୀ ମହାଦ୍ଭୁତ ବିଶଲ୍ୟକରଣୀ ଲଗାଇ ମୋ ବାପାଙ୍କ କ୍ଷତକୁ ଭଲ କରି ଦେଇଛନ୍ତି । ମୁଁ ବର୍ତ୍ତମାନ ଯାଉଛି ଓ ବାପାଙ୍କ ଅନୁମତି ନେଇ ତମକୁ ତାଙ୍କ ନିକଟକୁ ନେଇ ଯିବି । ମୁଁ ତମର ।– ଏତକ କହି ସେ ତା' ବାପା ପାଖକୁ ଦଉଡ଼ିଯାଇ କହିଲା– ବାପା ! ଜଣେ ଦିବ୍ୟ ପୁରୁଷ, ଜଣେ ରାଜକୁମାର ଆମ ନଗରକୁ ଆସିଛନ୍ତି । ମୋ ସହିତ ତାଙ୍କର ବିବାହ କର । ନହେଲେ ମୁଁ ମରିଯିବି ।

ଅଗ୍ନିଶିଖା ଉତ୍ତର ଦେଲା– ଝିଅ ! ମଣିଷମାନେ ଆମର ଖାଦ୍ୟ । ତେବେ ତୋର ଇଚ୍ଛା ପୂରଣ କରାଯିବ । ତୁ ଯଦି ଠିକ୍ କରିଛୁ, ଯା ତାକୁ ନେଇଆ ।

ରୂପଶିଖା ସଙ୍ଗେ ସଙ୍ଗେ ଯାଇ ରାଜକୁମାରଙ୍କୁ ତା' ବାପା ପାଖକୁ ନେଇ ଆସିଲା । ଅଗ୍ନିଶିଖାକୁ ସମ୍ମାନ ଜଣାଇ ରାଜକୁମାର ତା' ସମ୍ମୁଖରେ ଠିଆ ହେଲା । ଅଗ୍ନିଶିଖା କହିଲା– ରାଜକୁମାର ! ତମେ ଯଦି ମୋ କଥା ମାନିବ, ତା'ହେଲେ ରୂପଶିଖାକୁ ପାଇବ ।

ରାଜକୁମାର ଶୃଙ୍ଗଭୁଜ ଉତ୍ତର ଦେଲା– ତିଳେମାତ୍ର ବି ମୁଁ ଆପଣଙ୍କ କଥାରୁ ବାହାରି ଯିବି ନାହିଁ ।

ରାକ୍ଷସ କହିଲା– ଠିକ୍ ଅଛି, ଯାଇ ସ୍ନାନକରି ଫେରିଆସ ।

ରାଜାଙ୍କ ଚାକରମାନେ ଶୃଙ୍ଗଭୁଜକୁ ସ୍ନାନ କରିବା ସ୍ଥାନକୁ ନେଇଗଲେ । ରାଜକୁମାର ଚାଲିଗଲାପରେ ରାଜା ଝିଅକୁ କହିଲା– ଯା, ତୋ ସବୁ ଭଉଣୀମାନଙ୍କୁ ଡାକି ଆଣ ।

ବାଟରେ ରୂପଶିଖା ଶୃଙ୍ଗଭୁଜକୁ ଭେଟି ଉପଦେଶ ଦେଲା– ପ୍ରିୟ ! ଆମେ ଶହେ ଭଉଣୀ । ବର୍ତ୍ତମାନ ଆମେ ସମସ୍ତେ ତମ ସାମ୍ନାରେ ଠିଆ ହେବୁ । ଆମେ ସମସ୍ତେ ଦେଖିବାକୁ ଏକାଭଳି ଓ ସମସ୍ତଙ୍କର ଏକାଭଳି ହାର ଅଛି । ମୋ ମଥାରେ ଥିବା ହାରକୁ ଦେଖି ତମେ ମୋତେ ଚିହ୍ନିପାରିବ । ମୋ ବାପାଙ୍କର ବୁଦ୍ଧି କମ୍ । ସେ ତମକୁ ଯାହା କରିବାକୁ କହିବେ, ତମେ ଆସି ମୋତେ କହିବ । ମୁଁ ତମ ପାଇଁ ସବୁ କରିଦେବି । ଏଇକ୍ଷଣି ତମେ ଯାଅ ।

ଶୃଙ୍ଗଭୁଜ ସ୍ନାନସାରି ଦରବାର କକ୍ଷକୁ ଫେରିଆସିଲା । ତା' ସାମ୍ନାରେ ଶହେଜଣଯାକ ଭଉଣୀ ଠିଆ ହୋଇଥିଲେ ଓ ସେମାନେ ସମସ୍ତେ ଏକାଭଳି ଦେଖା ଯାଉଥିଲେ । ଅଗ୍ନିଶିଖା ଶୃଙ୍ଗଭୁଜକୁ ଫୁଲ ମାଳଟିଏ ଦେଇ ତା'ର ପ୍ରେମିକାକୁ ପିନ୍ଧାଇବାକୁ କହିଲା । ପୂର୍ବ ଯୋଜନା ମୁତାବକ ସେ ରୂପଶିଖାକୁ ଚିହ୍ନି ତା' ବେକରେ ଫୁଲମାଳ ପିନ୍ଧାଇ ଦେଲା । ରାଜା ଦୁଇଜଣଙ୍କୁ କହିଲେ– ତମେମାନେ ବର୍ତ୍ତମାନ ଯାଅ । କାଲି ତମମାନଙ୍କର ବାହାଘର ହେବ ।–ଏତକ କହି ସେ ତା'ର ଝିଅମାନଙ୍କୁ ନିଜ ନିଜ କକ୍ଷକୁ ଓ ଶୃଙ୍ଗଭୁଜକୁ ତା' କକ୍ଷକୁ ପଠାଇ ଦେଲା ।

କିଛି ସମୟ ପରେ ରାକ୍ଷସ ରାଜକୁମାରକୁ ଡକାଇ ଆଦେଶ ଦେଲା– ଏଇ ହଳେ ବଳଦଙ୍କୁ ନେଇ ନଗର ବାହାରେ ଥିବା କ୍ଷେତକୁ ଯାଅ । ସେଠି ତମେ ଗଦାଏ ସୋରିଷ ମଞ୍ଜି ପାଇବ । ସେଗୁଡ଼ିକୁ କ୍ଷେତରେ ବୁଣି ଦେବ ।

ରାଜକୁମାର ତା'କକ୍ଷକୁ ଫେରିଆସି ଏକଥା ତା' ପ୍ରେମିକାକୁ ଜଣାଇଲା । ରୂପଶିଖା ତାକୁ ବଳଦ ନେଇ କ୍ଷେତକୁ ଯିବାକୁ ଓ ବାକିତକ କାମକୁ ସେ ଦେଖିବ ବୋଲି କହିଲା । ରୂପଶିଖା ସାହାଯ୍ୟରେ ସେ କ୍ଷେତରେ ମଞ୍ଜିତକ ଖୁବ୍ କମ୍ ସମୟରେ ବୁଣିଦେଲା ଓ ରାଜାଙ୍କୁ ଆସି ଜଣାଇଲା । ରାଜା କହିଲା– ଯାଇ ମଞ୍ଜିଗୁଡ଼ାକ ପୁଣି ଗଦା କରିଦିଅ । ରୂପଶିଖା ତା' ଯାଦୁବଳରେ ଲକ୍ଷ ଲକ୍ଷ ପିମ୍ପୁଡ଼ି ସୃଷ୍ଟି କରାଇଲା ଓ ପିମ୍ପୁଡ଼ିମାନେ ଗୋଟି ଗୋଟି କରି ସୋରିଷ ମଞ୍ଜି ଗୋଟାଇ ନେଇ ଗଦା କରିଦେଲେ । ରାଜକୁମାର ରାଜାଙ୍କୁ ଦେଖାକରି ସୋରିଷ ଗଦାକରି ଦେଇଥିବା କଥା ଜଣାଇଲା ।



ରାକ୍ଷସ ତଥାପି ବାଧା ସୃଷ୍ଟିକରି ଚାଲିଥିଲା, ଯେହେତୁ ସେ ରାଜକୁମାରକୁ ମାରିଦେବାକୁ ଚାହୁଁଥିଲା । ସେ ତାକୁ କହିଲା– ବହୁତ ଦୂରରେ, ଦକ୍ଷିଣ ଆଡ଼କୁ, ଜଙ୍ଗଲରେ ଶିବ ମନ୍ଦିରଟିଏ ଅଛି । ସେଇଠିକୁ ଯାଇ ମନ୍ଦିର ଆଗରେ ଠିଆହୋଇ କହିବ, ହେ ଧୂମଶିଖା ! ରୂପଶିଖା ଆସନ୍ତା କାଲି ସକାଳେ ବାହାହେବ । ମୁଁ ତମକୁ ତମ ଦଳବଳ ନେଇ ବାହାଘରକୁ ଆସିବାକୁ ନିମନ୍ତ୍ରଣ କରୁଛି । ଅଗ୍ନିଶିଖା ତମକୁ ନିମନ୍ତ୍ରଣ କରିବା ପାଇଁ ମୋତେ ପଠାଇଛନ୍ତି– ଏଇ ଖବର ଦେଇ ଆଜି ହିଁ ଫେରି ଆସିବ । କାଲି ମୁଁ ତମ ସହିତ ମୋ ଝିଅର ବିବାହ ଉତ୍ସବ ପାଳନ କରିବି ।

ରାଜକୁମାର ରାକ୍ଷସ କଥାରେ ରାଜି ହେଲା ଓ ରୂପଶିଖାକୁ ସବୁକଥା ଜଣାଇଲା । ରୂପଶିଖା ତାକୁ ତା' ଘୋଡ଼ା, ମୁଠାଏ ମାଟି, ଢାଳେ ପାଣି, କିଛି କଣ୍ଟା ଓ କିଛି ନିଆଁ ଦେଇ କହିଲା– ଏଇ ଘୋଡ଼ା ଉପରେ ଚଢ଼ି ଯାଅ ଓ ତମକୁ ଯେପରି ଆଦେଶ ଦିଆଯାଇଛି, ସେପରି କର । ଡାକରା ଦେଇ ସଙ୍ଗେ ସଙ୍ଗେ ଘୋଡ଼ା ଉପରେ ଚଢ଼ି ପଳେଇ ଆସିବ । ସବୁବେଳେ ପଛକୁ ଚାହିଁ ଦେଖୁଥିବ । ଯଦି ଧୂମଶିଖା ତମକୁ ଗୋଡ଼ାଏ, ତା' ବାଟରେ ଏଇ ମାଟି ମୁଠାକ ଫିଙ୍ଗିଦେବ । ପୁଣି ଯଦି ସେ ଗୋଡ଼ାଏ, ଏଇ ପାଣି ଢାଳକ ଢାଳିଦେବ । ତମେ ଯଦି ଦେଖ ସେ ପୁଣି ତୁମକୁ ଗୋଡ଼ାଉଛି, ଏଇ କଣ୍ଟାଗୁଡ଼ାକ ଫୋପାଡ଼ିବ । ତଥାପି ସେ ଯଦି ଆସେ ଏଇ ନିଆଁକୁ ଫୋପାଡ଼ିବ ଓ ମୋ ବିଦ୍ୟା ଦେଖିବ ।

ପ୍ରେମିକା କହିବା ମୁତାବକ ଶୃଙ୍ଗଭୁଜ ଯାଇ ଖୁବ୍ ଶିଘ୍ର ମନ୍ଦିର ପାଖରେ ପହଞ୍ଚିଗଲା । ସେ ମନ୍ଦିରରେ ଶିବ, ତାଙ୍କ ବାମ ପାଖରେ ପାର୍ବତୀ ଓ ଡାହାଣ ପାଖରେ ବିନାୟକଙ୍କ ମୂର୍ତ୍ତିକୁ ଦେଖିଲା । ସେ ସବୁ ଦେବତାଙ୍କୁ ସାଷ୍ଟାଙ୍ଗ ପ୍ରଣାମ କଲା ଓ ଧୂମଶିଖାକୁ ଡାକରା ଦେଇ ଘୋଡ଼ା ଉପରେ ଚଢ଼ି ଘୋଡ଼ାଟିକୁ ଛୁଟାଇ ଦେଲା । ସେ ପଛକୁ ଚାହିଁ ଦେଖିଲା ଯେ ଧୂମଶିଖା ତା' ପଛରେ ଗୋଡ଼ାଉଛି । ସେ ବାଟ ଉପରେ ମାଟି ମୁଠାକ ଫିଙ୍ଗି ଦେଲା ଓ ମାଟି ମୁଠାକ ଖୁବ୍ ଉଚ୍ଚ ପର୍ବତ ହୋଇଗଲା । ଧୂମଶିଖା କିନ୍ତୁ ପର୍ବତକୁ ଡେଇଁ ପୁଣି ତାକୁ ଗୋଡ଼ାଇଲା । ଶୃଙ୍ଗଭୁଜ ପାଣି ଢାଳକ ଢାଳି ଦେଲା ଓ ପାଣିତକ ବଡ଼ ଖରସ୍ରୋତା ଓ ଲହଡ଼ି ଭାଙ୍ଗୁଥିବା ନଈଟିଏ ହୋଇଗଲା । ଧୂମଶିଖା ସେଇ ନଦୀକୁ ନିମିଷକେ ପହଁରି ପାରିହୋଇ ଶୃଙ୍ଗଭୁଜକୁ ପୁଣି ଗୋଡ଼ାଇଲା । ରାଜକୁମାର ଏଥର କଣ୍ଟା ଗୁଡ଼ାକ ଛାଟି ଦେଲା ଓ ଘଞ୍ଚ କଣ୍ଟା ଜଙ୍ଗଲଟିଏ ସୃଷ୍ଟି ହୋଇଗଲା । ତଥାପି ଧୂମଶିଖା ସେଇ ଜଙ୍ଗଲକୁ ପାରିହୋଇ ରାଜକୁମାର ପାଖାପାଖି ଆସିଗଲା । ଶେଷରେ ଶୃଙ୍ଗଭୁଜ ନିଆଁତକ ଫିଙ୍ଗିଦେଲା ଓ ନିଆଁତକ ଗୋଟାଏ ବିରାଟ ଜଳନ୍ତା ବଣ ପାଲଟିଗଲା । ଧୂମଶିଖା ଏଥର ବଣଟିକୁ ପାରିହେବାକୁ ଅକ୍ଷମ ହୋଇ ଫେରିଗଲା । ରୂପଶିଖାର ବିଦ୍ୟା ବଳରେ ଧୂମଶିଖା ତା' ଆକାଶରେ ଉଡ଼ିବା ଶକ୍ତିକୁ ଭୁଲିଗଲା ଓ ପାଦରେ ଚାଲି ଚାଲି ଫେରିଗଲା । ରାଜକୁମାର ଧୂମପୁରକୁ ଆନନ୍ଦରେ ଫେରିଆସି ରୂପଶିଖାକୁ ସବୁକଥା କହିଲା ଓ ତାକୁ ତା' ଘୋଡ଼ାଟିକୁ ଫେରାଇ ଦେଲା । ତା'ପରେ ସେ ରାଜାଙ୍କୁ ଭେଟି ଖବର ଦେଇ ଆସିଥିବା କଥା ଜଣାଇଲା । ରାଜା ତାକୁ ମନ୍ଦିର ବିଷୟରେ ବିଶଦ ବିବରଣୀ ଦେବାକୁ କହିଲା । ରାଜକୁମାର ମନ୍ଦିରରେ ଶିବଙ୍କ ବାମ ପାଖରେ ପାର୍ବତୀ ଓ ଡାହାଣ ପାଖରେ ବିନାୟକଙ୍କ ମୂର୍ତ୍ତି ଦେଖିଥିବା କଥା ଜଣାଇଲା ।

ଅଗ୍ନିଶିଖା ଏଥର ସନ୍ତୁଷ୍ଟ ହେଲା ଓ ମନେ ମନେ ଭାବିଲା– ଏଇ ରାଜକୁମାର ମରଶରୀରଧାରୀ ମଣିଷ ନୁହେଁ, ଯେହେତୁ ସେ ମୋ ଭାଇ କବଳରୁ ବର୍ତ୍ତିଯାଇଛି । ସେ ନିଶ୍ଚୟ ଜଣେ ଦିବ୍ୟପୁରୁଷ ହୋଇଥିବ, ତେଣୁ ସେ ମୋ ଝିଅର ଯୋଗ୍ୟ ।–ଏଇୟା ଭାବି ସେ ରାଜକୁମାରକୁ ତା' ଝିଅ ପାଖକୁ ପଠାଇ ଦେଲା । ସେ ମୁହୂର୍ତ୍ତକ ପାଇଁ ଭାବି ପାରିଲା ନାହିଁ ଯେ ତା' ଝିଅ ହିଁ ସବୁ

କାମ କରିଛି । ସେ ଗୋଟାଏ ବୋକା ଥିଲା । ସେଦିନ ରାତିରେ ରାଜକୁମାର ରୂପଶିଖା ସହିତ ପାନ ଓ ଭୋଜନ କରି ରାତିଟି ସୁଖରେ କଟାଇଲା । ପରଦିନ ସକାଳେ ଅଗ୍ନିଶିଖା ତା' ଝିଅର ବାହାଘର ରାଜକୁମାର ସଙ୍ଗରେ ଖୁବ୍ ଆଡ଼ମ୍ବରରେ କଲା । ଜଣେ ମଣିଷ ଜଣେ ରାକ୍ଷସ– ଝିଅକୁ ବାହାହେବା ସତରେ କେତେ ଅଦ୍ଭୁତ ! ଭାଗ୍ୟର କରାମତି ରହସ୍ୟମୟ । ପଙ୍କରୁ ଜନ୍ମ ନେଇଥିବା ପଦ୍ମନାଡ଼କୁ ହଂସ ଉପଭୋଗ କଲାଭଳି ପାପୀ ରାକ୍ଷସ ପରିବାରରେ ଜନ୍ମିଥିବା ରାକ୍ଷସକୁମାରୀକୁ ରାଜକୁମାର ଉପଭୋଗ କଲା ।

ଅଗ୍ନିଶିଖାର ସିଦ୍ଧ ବିଦ୍ୟା ବଳରେ ଶୃଙ୍ଗଧ୍ୱଜ ଓ ରୂପଶିଖା ଧୂମପୁରରେ କେତେ ଦିନ ବଡ଼ ସୁଖରେ କଟାଇଲେ । ଦିନେ ଶୃଙ୍ଗଧ୍ୱଜ ତା' ପ୍ରିୟାକୁ କହିଲା– ଚାଲ ମୋ ରାଜଧାନୀ ବର୍ଦ୍ଧମାନପୁରକୁ ଯିବା । ମୋ ଭାଇମାନେ ଛଳକରି ମୋତେ ତଡ଼ିଦେବା କଥାକୁ ମୁଁ ଆଦୌ ସହ୍ୟ କରିପାରୁ ନାହିଁ । ମୋ ଭଳି ଲୋକ ପକ୍ଷରେ ଆତ୍ମସମ୍ମାନ ଜୀବନଠାରୁ ବେଶୀ ମୂଲ୍ୟବାନ । ମୋ ପାଇଁ ତମକୁ ତମ ଘର, ତମ ବାପା ଓ ଭଉଣୀମାନଙ୍କୁ ସମସ୍ତଙ୍କୁ ଛାଡ଼ି ଯିବାକୁ ହେବ । ତମ ବାପାଙ୍କ ଠାରୁ ବିଦାୟ ନେଇ ଆସ ଓ ସାଙ୍ଗରେ ସେଇ ମୁକ୍ତାଖଚିତ ସୁନାର ଶରଟି ଆଣ ।

ରୂପଶିଖା ଉତ୍ତର ଦେଲା– ମୋ' ପ୍ରିୟ ! ମୋର ଜୀବନ ! ତମେ ହୁକୁମ କର । ଜନ୍ମସ୍ଥାନ ! ଆତ୍ମୀୟ ! ମୋ ପାଇଁ ତମେ ହେଉଛ ସବୁକିଛି । ଅନୁରକ୍ତା ସ୍ତ୍ରୀପାଇଁ ସ୍ୱାମୀ ହିଁ ସର୍ବସ୍ୱ । ଆମେ ବାପାଙ୍କୁ ଜଣାଇବା ନାହିଁ । ସେ ଆମକୁ ଯିବାକୁ ଅନୁମତି ଦେବେ ନାହିଁ । ତାଙ୍କ ଅଜ୍ଞାତରେ ଆମେ ଚାଲିଯିବା । ସେ ଯଦି ତାଙ୍କ ଚାକରମାନଙ୍କ ଠାରୁ ଆମ ଚାଲିଯିବା ବିଷୟରେ ଜାଣି ଆମ ପଛରେ ଆସନ୍ତି, ଆସନ୍ତୁ । ମୁଁ ମୋ ବିଦ୍ୟା ବଳରେ ତାଙ୍କୁ ଠକି ଦେବି ।

ରାଜକୁମାର ରୂପଶିଖାର କଥା ଶୁଣି ବହୁତ ଆନନ୍ଦିତ ହେଲା ।

ପରଦିନ ରୂପଶିଖା ଅଳଙ୍କାର ଓ ମୂଲ୍ୟବାନ ପଥର ଭର୍ତ୍ତି ଗୋଟିଏ ବାକ୍ସ ଓ ସୁନାଶର ହାତରେ ଧରି ସ୍ୱାମୀ ସହ ତା' ନିଜ ଘୋଡ଼ା ଉପରେ ଚଢ଼ି ବାହାରିଲା । ସେମାନେ ପଳାବେଳେ ଚାକରମାନଙ୍କୁ କହିଗଲେ ଯେ ସେମାନେ ବୁଲିଯାଉଛନ୍ତି । ସେମାନେ ଦୂରକୁ ଚାଲିଗଲା ପରେ ଅଗ୍ନିଶିଖା ଜାଣି ପାରିଲା ଯେ ସେମାନେ ତା' ରାଜ୍ୟ ଛାଡ଼ି ପଳାଇ ଯାଉଛନ୍ତି । ରାଗରେ ସେ ସଙ୍ଗେ ସଙ୍ଗେ ଆକାଶ ମାର୍ଗରେ ବାହାରିଗଲା । ତା' ବାପା ସେମାନଙ୍କୁ ଫେରାଇ ନେବାକୁ ଆସୁଛି ବୋଲି ରୂପଶିଖା ଜାଣିଗଲା । ସେ ତା' ସ୍ୱାମୀକୁ ଭୟ ନ କରିବାକୁ କହିଲା– ମୋ ବିଦ୍ୟା ଦ୍ୱାରା ବାପା ତମକୁ ଦେଖି ପାରିବେ ନାହିଁ । ତା' ପରେ ସେ ନିଜକୁ ଜଣେ ପୁରୁଷକୁ ପରିବର୍ତ୍ତିତ କରିଦେଲା । ପାଖରେ ଜଣେ କାଠୁରିଆ କାଠ ହାଣୁଥିଲା । ସେ ତା'ଠାରୁ କୁରାଢ଼ୀଟି ନେଇ ଗୋଟାଏ ରାକ୍ଷସ ଆସୁଛି ଓ ସେ ଚୁପ୍‌ହୋଇ ଠିଆ ହେବାକୁ ତାକୁ କହିଲା । ଭୟରେ କାଠୁରିଆଟି ତା' କଥା ମାନି ଚୁପ୍‌ଚାପ୍ ଠିଆ ହେଲା । ଏଇ ସମୟରେ ଅଗ୍ନିଶିଖା ସେଠାରେ ପହଞ୍ଚି ପୁରୁଷ ରୂପୀ ରୂପଶିଖାକୁ ପଚାରିଲା ପୁରୁଷ-ସ୍ତ୍ରୀ ସେଇବାଟେ ଯାଇଥିବା ସେ ଦେଖିଛି କି ? ନିଜକୁ ଶୋକାତୁର ହେବାର ବାହାନା କରି ସେ ଉତ୍ତର ଦେଲା– ମହାଭାଗ ! ଆମେ ଖୁବ୍ ଥକା ହେଇଯାଇଛୁ । ଏବାଟେ କେହି ଯିବା ଆମେ ଦେଖି ନାହୁଁ । ରାଜା ଅଗ୍ନିଶିଖା ମରିଯାଇଛନ୍ତି ଓ ଆମେ ତାଙ୍କ ସଂସ୍କାର ପାଇଁ କାଠ ହାଣୁଛୁ ।

ପୁରୁଷ ରୂପୀ ରୂପଶିଖା କଥାକୁ ଅଗ୍ନିଶିଖା ବିଶ୍ୱାସ କରିଯାଇ ମନେମନେ କହିଲା– ମୋ ଝିଅ ଯଦି ଯାଉଚି ଯାଉ । ମୁଁ ଘରକୁ ଯାଇ ମୋ ଚାକରମାନଙ୍କଠୁଁ ବୁଝେ ମୁଁ ମରିଛି କି ନାହିଁ ।

ଅଗ୍ନିଶିଖା ଚାଲିଗଲାପରେ ସ୍ୱାମୀ-ସ୍ତ୍ରୀ ଦୁହେଁ ଖୁବ୍ ହସିଲେ ଓ ପୁଣି ଘୋଡ଼ା ଉପରେ ଚଢ଼ି ଚାଲିଲେ । ରାଜଧାନୀକୁ ଫେରି ରାଜା ଚାକରମାନଙ୍କ ଠୁଁ ପଚାରି ବୁଝିଲା ଯେ ସେ ଜୀବିତ । ସେ



ଖୁବ୍ ଖୁସିହେଲା, କିନ୍ତୁ ତା' ଝିଅ-ଜ୍ୱାଇଁଙ୍କୁ ଧରିବା ପାଇଁ ସେ ପୁଣି ଆକାଶମାର୍ଗରେ ଧାଇଁଲା । ଏଥର ରୂପଶିଖା ନିଜକୁ ଜଣେ ଡାକପିଅନକୁ ପରିବର୍ତ୍ତିତ କରିଦେଇ ହାତରେ ଚିଠିଟିଏ ଧରି ଠିଆହେଲା । ଅଗ୍ନିଶିଖା ତା' ପାଖକୁ ଆସି ସେଇ ଏକା ପ୍ରଶ୍ନ ପଚାରିଲା । ସେ ଉତ୍ତରଦେଲା– ମହାଭାଗ ! ମୁଁ ଏଇ ଚିଠି ଦେବାକୁ ଧାଇଁଆସି କାହାକୁ ପାଉନାହିଁ । ଅଗ୍ନିଶିଖା ଯୁଦ୍ଧ ଭୂମିରେ ଆହତ ହୋଇ ପଡ଼ିଗଲେ ଓ ତାଙ୍କ ଶେଷ ସମୟ ଆସି ପହଞ୍ଚିଯାଇଥିଲା । ସେ ମୋତେ ଏଇ ଚିଠି ଦେଇ ତାଙ୍କ ଭାଇ ଧୂମଶିଖାଙ୍କ ପାଖକୁ ପଠାଇଛନ୍ତି । ମୁଁ ସେଇ ଚିଠି ନେଇ ତାଙ୍କ ପାଖକୁ ଯାଉଛି । ରାକ୍ଷସ ବିବ୍ରତ ହୋଇପଡ଼ି ଭାବିଲା– ସତରେ କ'ଣ ମୋ ଶତ୍ରୁମାନେ ମୋତେ ମାରିଦେଲେ ? ମୁଁ ଯାଇ ମୋ ଚାକରମାନଙ୍କୁ ଠୁଁ ବୁଝେ । –ମୁହୂର୍ତ୍ତିକ ପାଇଁ ବି ସେ ଚିନ୍ତା ବା ଅପେକ୍ଷା ନକରି ପୁଣିଥରେ ତା' ରାଜଧାନୀ ଆଡ଼କୁ ସେ ଦଉଡ଼ିଲା । ତା' ଚାକରମାନଙ୍କୁ ଡକାଇ ସେମାନଙ୍କୁ ପଚାରିଲା ଯେ ଯୁଦ୍ଧ ଭୂମିରେ ସେ ମରିଯାଇଥିବା କଥା ସତ କି ? ସେମାନେ ହସିଲେ ଓ ସେ ଜୀବିତ ବୋଲି ତାଙ୍କୁ ଆଶ୍ୱସ୍ତ କଲେ । ସେ ଖୁସିହେଲା ଓ ଏଥର ରୂପଶିଖା କଥା ଭୁଲିଯାଇ ତା' ଘରେ ସୁଖରେ ରହିଲା ।

ଏହିପରି ରୂପଶିଖା ତା' ବାପାକୁ ଠକି ତା' ସ୍ୱାମୀ ପଛରେ ଘୋଡ଼ା ଉପରେ ବସିଲା ଓ ସେମାନେ ବର୍ଦ୍ଧମାନପୁର ଅଭିମୁଖେ ଆଗେଇ ଚାଲିଲେ । ନିଷ୍ଠାବତୀ ସ୍ତ୍ରୀଲୋକମାନେ କେବଳ ସେମାନଙ୍କ ସ୍ୱାମୀମାନଙ୍କ ମଙ୍ଗଳ କଥା ଭାବନ୍ତି ଓ ଅନ୍ୟ କିଛି ଭାବନ୍ତି ନାହିଁ । ସେମାନଙ୍କ ସ୍ୱାମୀମାନଙ୍କୁ ଆନନ୍ଦ ଦେବା ପାଇଁ ଯେ କୌଣସି ସ୍ତରକୁ ଯାଇପାରନ୍ତି ଓ ଯେ କୌଣସି କାମ କରିପାରନ୍ତି ।

ଅଳ୍ପ ସମୟ ଭିତରେ ଶୃଙ୍ଗଧ୍ୱଜ ଓ ରୂପଶିଖା ବର୍ଦ୍ଧମାନ ନଗରରେ ପହଞ୍ଚିଲେ । ସେମାନଙ୍କ ପହଞ୍ଚିବା ରାଜାଙ୍କୁ ଜଣାଇ ଦିଆଗଲା ଓ ରାଜା ଆନନ୍ଦରେ ଉଚ୍ଛୁଳି ଉଠିଲେ । ପାତ୍ର-ମନ୍ତ୍ରୀମାନଙ୍କୁ ସଙ୍ଗରେ ନେଇ ସେ ତାଙ୍କ ପୁଅ ଓ ବୋହୂକୁ ବାହୁରେ ସ୍ୱାଗତ କଲେ । ପୁଅ ବୋହୂକୁ ଦେଖି ତାଙ୍କ ମାନସ ଚକ୍ଷୁରେ ଶ୍ରୀକୃଷ୍ଣ ଓ ସତ୍ୟଭାମାଙ୍କ ରୂପ ଭାସିଗଲା । ହରାଇ ଥିବା ରାଜ୍ୟକୁ ଫେରି ପାଇଥିବା ଭଳି ସେ ସୁଖ ଅନୁଭବ କଲେ ।

ତାଙ୍କ ବାପା ଓ ପାତ୍ର-ମନ୍ତ୍ରୀ ଆସିବା ଦେଖି ଶୃଙ୍ଗଧ୍ୱଜ ତା' ସ୍ତ୍ରୀ ସହିତ ଘୋଡ଼ାରୁ ଓହ୍ଲେଇ ପଡ଼ି ରାଜାଙ୍କ ପାଦତଳେ ସାଷ୍ଟାଙ୍ଗ ପଡ଼ିଗଲା । ଲୁହଭରି ଆଖିରେ ସେ ସେମାନଙ୍କୁ ପ୍ରାସାଦ ଭିତରକୁ ନେଇଗଲେ । ଶୃଙ୍ଗଧ୍ୱଜ ତା' ବାପାଙ୍କୁ ସବୁ ଘଟଣା ଜଣାଇଲା ଓ ତା' ଭାଇମାନଙ୍କୁ ଡକାଇ ସେମାନଙ୍କ ସମ୍ମୁଖରେ ତା' ବାପାଙ୍କୁ ସୁନା ଶରଟି ଦେଲା । ସେ ସେଇ ନିର୍ଦ୍ଦିଷ୍ଟ ଘଟଣାଟି ବିସ୍ତାରିତ ଭାବରେ କହିଲା ଓ ତାହା ଶୁଣି ରାଜାଙ୍କର ତାଙ୍କ ଅନ୍ୟ ସବୁ ପୁଅମାନଙ୍କ ଉପରୁ ସ୍ନେହ ଓ ଶ୍ରଦ୍ଧା ତୁଟିଗଲା । ସେ ଶୃଙ୍ଗଧ୍ୱଜକୁ ତାଙ୍କର ଏକମାତ୍ର ପୁଅ ବୋଲି ବିଚାର କଲେ । ସେ ଆହୁରି ମଧ୍ୟ ଭାବିଲେ ଯେ ଶୃଙ୍ଗଧ୍ୱଜକୁ ରାଜ୍ୟ ବାହାରକୁ ପଠାଇବା ଚକ୍ରାନ୍ତ ଭଳି ତାଙ୍କ ରାଣୀମାନେ ମଧ ରାଣୀ ଗୁଣବତୀଙ୍କ ବିରୁଦ୍ଧରେ ପାପକାର୍ଯ୍ୟ କରିଛନ୍ତି ।

ଭାବନାଗ୍ରସ୍ତ ହୋଇ ରଜା ଅୟସଲେଖା ମହଲକୁ ଗଲେ । ଅୟସଲେଖା ରାଜାଙ୍କ ସଙ୍ଗ ପାଇ ବହୁତ ଖୁସିହେଲା, କାରଣ ସେମିତିକା ସୁଯୋଗ ତାକୁ ଖୁବ୍ କମ୍ ମିଳୁଥିଲା । ରାଜା ତାକୁ ମଦ ପିଆଇ ନିଶାଗ୍ରସ୍ତା କରିଦେଲେ, କିନ୍ତୁ ନିଜେ ସଜାଗ ରହିଲେ । ନିଶାଗ୍ରସ୍ତା ଅବସ୍ଥାରେ ଅୟସଲେଖା ଉଦ୍‌ଭ୍ରାନ୍ତ ହସ ହସି କହିଲା– ଦେବ ! ମୁଁ ଯଦି ଗୁଣବତୀ ଚରିତ୍ର ବିଷୟରେ ମିଛ ଦୁର୍ନାମ ଭିଆଇ ନଥାନ୍ତି, ମୋ ସ୍ୱାମୀ ମୋ ପାଖକୁ ଆସି ନଥାନ୍ତେ ।

ରାଜା ଅୟସଲେଖାର କଥା ଶୁଣି ସବୁ ବୁଝି ପାରିଲେ ଓ ରାଗରେ ସେଠାରୁ ଚାଲିଗଲେ । ତା'ପରେ ସେ ଦାସୀମାନଙ୍କୁ ଗୁଣବତୀଙ୍କୁ ବନ୍ଦ କୋଠରୀରୁ ବାହାର କରି ସ୍ନାନ କରାଇବାକୁ ଓ

ରାଜକୀୟ ଖାଦ୍ୟ ଖୁଆଇବାକୁ ଆଦେଶ ଦେଲେ । ସେମାନେ ରାଜାଙ୍କ ଆଦେଶ ପାଳନ କଲେ । ରାଜା ଗୁଣବତୀଙ୍କୁ ଅତି ଆଦରରେ ଗ୍ରହଣ କଲେ ଓ ରାତିଟି ତାଙ୍କ ସାଥିରେ ସୁଖରେ କଟାଇଲେ । ରାଜା ତାଙ୍କୁ ଶୃଙ୍ଗଧ୍ୱଜର ଅଲୌକିକ ବୀରତ୍ୱ ଓ ରୂପଶିଖା ସହିତ ବିବାହ ବିଷୟରେ ଜଣାଇଲେ । ତା'ପରଦିନ ବଡ଼ି ସକାଳେ ସେ ତାଙ୍କ ପୁଅ ଓ ବୋହୂଙ୍କୁ ଡକାଇଲେ । ପୁଅ-ବୋହୂ ଆସି ଗୁଣବତୀଙ୍କ ପାଦତଳେ ସାଷ୍ଟାଙ୍ଗ ପ୍ରଣାମ କଲେ । ରାଣୀ ସେମାନଙ୍କୁ ଦେଖି ଭାରି ଖୁସିହୋଇ ସେମାନଙ୍କୁ ଆଶୀର୍ବାଦ ଦେଲେ ଓ କହିଲେ— ପୁଅ, ତୋ' ସ୍ତ୍ରୀ ତା' ପାରୁପର୍ଯ୍ୟନ୍ତ କରିଛି । ସେ ତା'ର ବାପା, ଆତ୍ମୀୟ, ଘର ଛାଡ଼ିଛି । ତା' ଜୀବନକୁ ବିପଦରେ ପକାଇଛି । ତୋ' ପାଇଁ ସେ ଦେବୀ ରୂପରେ ଜନ୍ମ ନେଇଛି । ସେ ତା'ର ସତୀତ୍ୱ ଓ ନିଷ୍ଠାରେ ସବୁ ସ୍ତ୍ରୀଙ୍କୁ ବଳିଯାଇଛି ।

ରାଜା ରାଣୀଙ୍କ କଥାରେ ଆନନ୍ଦରେ ଉଚ୍ଛୁଳି ଉଠିଲେ ଓ ରୂପଶିଖା ତା'ର ଶାଶୁଙ୍କ ପ୍ରଶଂସାରେ ଲାଜକାଜ ହୋଇ ତଳକୁ ଚାହିଁ ମୃଦୁ ହସିଲା ।

ସେଇଦିନ ସୁରକ୍ଷିତ ତୀର୍ଥଯାତ୍ରାରୁ ଫେରିଆସିଲା । ରାଜାଙ୍କ ଆଦେଶରେ ସେ ପବିତ୍ର ଗଙ୍ଗା ଓ ବିତସ୍ତାରେ ସ୍ନାନ କରିଥିଲା । ତା'ର ଆସିବା କଥା ରାଜାଙ୍କୁ ଜଣାଇ ଦିଆଗଲା ଓ ରାଜା ତାକୁ ସ୍ୱାଗତ କରିବାକୁ ବହୁତ ଆନନ୍ଦିତ ହେଲେ । ସୁରକ୍ଷିତ ଆସି ରାଜାଙ୍କୁ ସାଷ୍ଟାଙ୍ଗ ପ୍ରଣାମ କଲା ଓ ରାଜା ତାକୁ ଆଦର ସମ୍ଭାଷଣ କଲେ ।

ପରଦିନ ରାଜା ସୁରକ୍ଷିତଙ୍କୁ ତାଙ୍କର ଅନ୍ୟ ସବୁ ରାଣୀଙ୍କୁ ବନ୍ଦୀକରି ଅନ୍ଧାର ଜେଲଖାନାରେ ରଖିବାକୁ ହୁକୁମ ଦେଲେ । ଯେହେତୁ ସେମାନେ ରାଣୀ ଗୁଣବତୀଙ୍କ ବିରୁଦ୍ଧରେ ପାପକାର୍ଯ୍ୟ କରିଛନ୍ତି । କିନ୍ତୁ ରାଣୀ ଗୁଣବତୀ ଏଇ ଆଦେଶକୁ ସହ୍ୟ କରିପାରିଲେ ନାହିଁ । ତାଙ୍କ ଯୋଗୁଁ ରାଣୀମାନଙ୍କୁ ଏଭଳି ଅବସ୍ଥାରେ ପକାଇବାକୁ ତାଙ୍କ ମନ ବଳିଲା ନାହିଁ । ସେ ତାଙ୍କ ସ୍ୱାମୀଙ୍କୁ ସେମାନଙ୍କୁ ଖରାପ ବ୍ୟବହାର ନ କରିବାକୁ ମିନତି କଲେ । ରାଣୀମାନେ ସେମାନଙ୍କର ଭୁଲ ବୁଝିପାରିଲେ ଓ ଗୁଣବତୀଙ୍କର ସାଥୀ ହୋଇଗଲେ । ସେମାନେ ଗୁଣବତୀଙ୍କୁ ନିଷ୍ଠା ସହକାରେ ସେବା କରିବେ ବୋଲି ଶପଥ କଲେ ।

ତା'ପରେ ରାଜା ତାଙ୍କର ଅନ୍ୟ ପୁଅମାନଙ୍କୁ ଡକାଇ ଶୃଙ୍ଗଧ୍ୱଜର ସମ୍ମୁଖରେ ସେମାନଙ୍କୁ କହିଲେ— ତମେମାନେ ସମସ୍ତେ ଜଣେ ପର୍ଯ୍ୟଟକ ଓ ଜଣେ ବଣିକଙ୍କୁ ମାରିଛ, ତେଣୁ ତମେମାନେ ଆଉ ଏଠାରେ ରହିବାକୁ ଯୋଗ୍ୟ ନୁହେଁ । ତୀର୍ଥସ୍ଥାନମାନଙ୍କୁ ଯାଇ ତମେମାନେ ଶାପମୁକ୍ତ ହୁଅ । ସଙ୍ଗେ ସଙ୍ଗେ ରାଜ୍ୟ ଛାଡ଼ି ଚାଲିଯାଅ ।

ରାଜାଙ୍କ ରାଗ ଯାହା ଉପରେ, ତାକୁ ବା କିଏ ରକ୍ଷା କରିବ ? ଭାଇମାନଙ୍କ ଦୁଃଖ ଦେଖି ଶୃଙ୍ଗଧ୍ୱଜ ତା' ବାପାଙ୍କୁ ନିର୍ଦ୍ଦୟ ନ ହେବାକୁ ଓ ସେମାନଙ୍କୁ କ୍ଷମା କରିବାକୁ ଅନୁରୋଧ କଲା । ଶୃଙ୍ଗଧ୍ୱଜର ଅନୁରୋଧରେ ରାଜା ତାଙ୍କ ଆଦେଶକୁ ବଦଳାଇ ରାଜକୁମାରମାନଙ୍କୁ ରାଜ୍ୟରେ ରହିବାକୁ ଅନୁମତି ଦେଲେ । ରାଜକୁମାରମାନେ ଖୁସି ହେଲେ ଓ ସେମାନଙ୍କ ସାନ ଭାଇର ବିଶ୍ୱାସୀ ଅନୁଗତ ହୋଇ ରହିଲେ ।

ରାଜକୁମାର ଶୃଙ୍ଗଧ୍ୱଜର ଗୁଣ ଓ ବୀରତ୍ୱ ସାରା ରାଜ୍ୟରେ ବ୍ୟାପିଗଲା । ସବା ସାନ ହେଲେ ବି ରାଜା ତାକୁ ଯୁବରାଜ କରିଦେଲେ । ଯୁବରାଜର କର୍ତ୍ତବ୍ୟ ମୁତାବକ ବାପାଙ୍କ ଅନୁମତି ନେଇ ସେ ତା'ର ବିଜୟ ଯାତ୍ରାରେ ବାହାରିଗଲା । ସେ ଯେଉଁଠାକୁ ଗଲା, ସେଠାରେ ବିଜୟୀ ହେଲା । ତା' ବ୍ୟବହାରରେ ଅନ୍ୟ ରାଜାମାନେ ବିନା ଯୁଦ୍ଧରେ ତା'ର ବନ୍ଧୁ ହୋଇଗଲେ ।

କିଛି ଦିନପରେ ସେ ତା' କାନ୍ଧରେ ରାଜ୍ୟଭାର ଗ୍ରହଣ କଲା । ତା'ର ଭାଇମାନେ ତା'ର ମନ୍ତ୍ରୀ ହୋଇ ତା' ଆଦେଶକୁ ବିଶ୍ୱସ୍ତଭାବେ ପାଳନ କଲେ ଓ ତାକୁ ରାଜକାର୍ଯ୍ୟରେ ସହାୟତା କଲେ ।



ବ୍ରାହ୍ମଣ ଓ ଗରୀବମାନେ ପ୍ରଚୁର ଦାନ ପାଇଲେ । ରୂପଶିଖା ତା' ସ୍ୱାମୀ ବିଜୟର ଦେବୀ ଭାବରେ ଶୋଭା ପାଇଲା । ଗୁଣବତୀ ଓ ରୂପଶିଖା ସେମାନଙ୍କର ସ୍ୱାମୀ ରାଜା ଓ ଯୁବରାଜଙ୍କୁ ନିଷ୍ଠାବତୀ ସ୍ତ୍ରୀ ଭାବରେ ସେବା କଲେ ।

ହରିଶିଖଙ୍କ ଠାରୁ କଥାଟି ଶୁଣି ନରବାହନଦତ୍ତ, ଗୋମୁଖ ଓ ରତନପ୍ରଭା ସମସ୍ତେ ବହୁ ଆନନ୍ଦିତ ହେଲେ । ଏହିଭଳି ରତ୍ନପ୍ରଭାଙ୍କ ଭବନରେ ସଭ ଲୋକମାନେ ନିୟମିତ ଭାବେ ଏକାଠି ହେଉଥିଲେ ଓ ମଝିରେ ମଝିରେ ଗୋମୁଖ ଓ ମରୁଭୂତିଙ୍କ ଭିତରେ ଯୁଦ୍ଧ ମଧ୍ୟ ହୋଇ ଯାଉଥିଲା । ପୁଣି ସେମାନେ ବିଭିନ୍ନ ପ୍ରକାରର କାହାଣୀ ଶୁଣାଇ ପରସ୍ପରର ମନୋରଞ୍ଜନ କରୁଥିଲେ । ରତ୍ନପ୍ରଭା ସେମାନଙ୍କର ହାସ ପରିହାସ ଓ କଥା ଶୁଣି ସବୁବେଳେ ସନ୍ତୋଷିତ ହେଉଥିଲେ । ଦିନେ ସେ ନରବାହନଦତ୍ତଙ୍କୁ କହିଲେ— ଆପଣମାନଙ୍କ ଭିତରେ ଏତେ ପ୍ରେମ ଦେଖି ମୋର ମନେହେଉଛି ଆପଣମାନେ ପରସ୍ପରକୁ କେଜାଣି କେତେ ଜନ୍ମରୁ ଜାଣିଛନ୍ତି ।

ତପନ୍ତକ କହିଲେ— ସେଥିରେ କୌଣସି ସନ୍ଦେହ ନାହିଁ । ଆମର ପୂର୍ବଜନ୍ମର ସୁ-କର୍ମରୁ ଆମେ ନରବାହନଦତ୍ତଙ୍କ ଭଳି ପ୍ରଭୁ ପାଇଛୁ । ମୁଁ ଭାବେ ଆମେ ସମସ୍ତେ ଅମର ହୋଇଥାନ୍ତୁ କି, ଏହିପରି ରାଜକୁମାରଙ୍କ ସେବା କରୁଥାନ୍ତୁ ।

ମରୁଭୂତି କହିଲେ— ବନ୍ଧୁ ! ମଣିଷ ଅଜର-ଅମର କି ହୋଇପାରେ । ମୁଁ ଏଇ ବିଷୟରେ ଆପଣମାନଙ୍କୁ କାହାଣୀଟିଏ କହୁଛି, ଶୁଣନ୍ତୁ ।

## ନାଗାର୍ଜ୍ଜୁନ କଥା

ବହୁଦିନ ତଳେ ଚିରାୟୁ ନଗରରେ ଚିରାୟୁ ନାମରେ ଜଣେ ରାଜା ରାଜତ୍ୱ କରୁଥିଲେ । ରାଜା ଚିରାୟୁ ପ୍ରକୃତରେ ଚିରାୟୁ— ଦୀର୍ଘଜୀବୀ ଥିଲେ । ବୋଧିସତ୍ତ୍ୱଙ୍କ ଅଂଶରୁ ଜନ୍ମ ନାଗାର୍ଜ୍ଜୁନ ତାଙ୍କର ମନ୍ତ୍ରୀ ଥିଲେ । ସେ ପଣ୍ଡିତ, ଦୟାବାନ୍ ଓ ଦାନ ପରାୟଣ ଥିଲେ । ବିଭିନ୍ନ ବୃକ୍ଷ, ଲତା ଓ ଗୁଳ୍ମମାନଙ୍କ ସମ୍ବନ୍ଧରେ ତାଙ୍କର ଗଭୀର ଜ୍ଞାନ ଥିଲା ଓ ସେ ରସଟିଏ ତିଆରି କରିଥିଲେ । ରାଜା ଓ ମନ୍ତ୍ରୀମାନେ ସେଇ ରସ ପିଇ ବୃଦ୍ଧାବସ୍ଥା ଓ ରୋଗ ବ୍ୟାଧିରୁ ମୁକ୍ତି ପାଇଥିଲେ ।

ମନ୍ତ୍ରୀ ନାଗାର୍ଜ୍ଜୁନଙ୍କର ଅନେକଗୁଡ଼ିଏ ପୁଅ ଥିଲେ ଓ ଦିନେ ସେ ସବୁଠାରୁ ଭଲ ପାଉଥିବା ପୁଅଟି ମରିଗଲା । ପୁଅର ସେଇ ମୃତ୍ୟୁରେ ସେ ବଡ଼ ଆଘାତ ପାଇଲେ ଓ ଠିକ୍ କଲେ ଯେ ସେ ଅମୃତ ତିଆରି କରି ମଣିଷମାନଙ୍କୁ ଅମର କରିଦେବେ । ସେ ଜଡ଼ିବୁଟି ସଂଗ୍ରହ କଲେ ଓ ଶୁଭ ମୁହୂର୍ତ୍ତରେ ଆଉ ଗୋଟିଏ ଗୁଳ୍ମ ସଂଗ୍ରହ କରି ଅମୃତ ତିଆରି କରିବାକୁ ପ୍ରସ୍ତୁତ ହୋଇଗଲେ । ସେ ଅଳ୍ପଦିନ ଭିତରେ ଆସିଥିବା ସେଇ ଶୁଭ ମୁହୂର୍ତ୍ତକୁ ଅପେକ୍ଷା କଲେ ।

ଏଇ ସମୟରେ ସ୍ୱର୍ଗର ରାଜା ଇନ୍ଦ୍ର ନାଗାର୍ଜ୍ଜୁନଙ୍କ ଉଦ୍ଦେଶ୍ୟ ଜାଣି ପାରିଲେ । ସେ ତାଙ୍କର ବୈଦ୍ୟ ଅଶ୍ୱିନୀ କୁମାରଙ୍କ ହାତରେ ନାଗାର୍ଜ୍ଜୁନଙ୍କ ପାଖକୁ ଖବର ପଠାଇଲେ । ଅଶ୍ୱିନୀ କୁମାର ନାଗାର୍ଜ୍ଜୁନଙ୍କ ପାଖକୁ ଆସି କହିଲେ— ମୁଁ ଇନ୍ଦ୍ରଙ୍କ ଠାରୁ ଖବର ନେଇ ତମ ପାଖକୁ ଆସିଛି । ତମେ ଜଣେ ମନ୍ତ୍ରୀ, କିନ୍ତୁ ତୁମେ ସଂସାରର ନିୟମକୁ ଭଙ୍ଗ କରୁଛ । ମଣିଷମାନଙ୍କୁ ମର ରୂପେ ସର୍ଜନା କରିଥିବା ବ୍ରହ୍ମାଙ୍କୁ ତମେ ବଳିଯିବାକୁ ଚାହୁଁଛ । ତମେ ଯଦି ତମ ଚେଷ୍ଟାରେ ସଫଳ ହୁଅ, ତା'ହେଲେ ଦେବତା ଓ ମଣିଷ ଭିତରେ କି ପାର୍ଥକ୍ୟ ରହିବ ? ପୂଜକ ଓ ପୂଜ୍ୟ ନ ରହିଲେ ସଂସାରର ସ୍ଥାୟିତ୍ୱ ରହିବ କି ? ତେଣୁ ତମେ ଚେଷ୍ଟାରୁ ବିରତ ହୁଅ । ଯଦି ବିରତ ନହୁଅ, ଦେବତାମାନେ କ୍ରୋଧରେ

ତମକୁ ଅଭିଶାପ ଦେବେ । ଯେଉଁ ପୁଅର ମୃତ୍ୟୁ ଶୋକରେ ତମେ ଅଧୀର ହୋଇ ଏହାକୁ ଆରମ୍ଭ କରିଛ, ସେଇ ପୁଅ ତ ସ୍ୱର୍ଗରେ ସୁଖରେ ଅଛି ।

ଇନ୍ଦ୍ରଙ୍କ ଠାରୁ ଖବର ପାଇ ନାଗାର୍ଜ୍ଜୁନ ଦ୍ୱିଧାରେ ପଡ଼ିଗଲେ ଓ ଭାବିଲେ– ମୁଁ ଯଦି ଇନ୍ଦ୍ରଙ୍କ କଥା ନମାନେ, କେବଳ ଦେବତାମାନେ ନୁହନ୍ତି, ଏଇ ଅଶ୍ୱିନୀକୁମାର କ'ଣ ମୋତେ ଅଭିଶାପ ଦେବେ ନାହିଁ ? ମୋ ଉଦ୍ଦେଶ୍ୟ ଫଳବତୀ ହେବନାହିଁ । ତା'ର ପୂର୍ବ ଜନ୍ମର ସତ୍‌କର୍ମ ଯୋଗୁ ମୋ ପୁଅ ତ ସ୍ୱର୍ଗରେ ଅଛି । ତା'ର ବିୟୋଗ ପାଇଁ ମୋର ଦୁଃଖ କରିବା ଉଚିତ୍ ନୁହେଁ ।

ତା'ପରେ ସେ ଅଶ୍ୱିନୀକୁମାରଙ୍କୁ କହିଲେ– ଇନ୍ଦ୍ରଙ୍କ ଆଦେଶ ମାନି ମୁଁ ମୋ ଚେଷ୍ଟାରୁ ବିରତ ହେଲି । ଆପଣ ଯଦି ଆଉ ପାଞ୍ଚଦିନ ଡେରି କରିଥାନ୍ତେ, ତା'ହେଲେ ଅମୃତ ପ୍ରସ୍ତୁତ ହୋଇଯାଇଥାନ୍ତା ଓ ପୃଥିବୀ ସ୍ୱର୍ଗ ହୋଇଯାଇଥାନ୍ତା । ମୁଁ ଆପଣଙ୍କ ସମ୍ମୁଖରେ ସେଇ ଅଧା ତିଆରି ଅମୃତକୁ ନଷ୍ଟ କରି ଦେଉଛି । ଆପଣ ଯାଇ ଇନ୍ଦ୍ରଙ୍କୁ ଆପଣ ଆସିବା ସଫଳ ହୋଇଛି ବୋଲି କୁହନ୍ତୁ ।

ଅଶ୍ୱିନୀ କୁମାର ଯାଇ ଇନ୍ଦ୍ରଙ୍କୁ ନାଗାର୍ଜ୍ଜୁନ ଅଧା ତିଆରି କରିଥିବା ଅମୃତକୁ ନଷ୍ଟ କରିଦେବା କଥା ଜଣାଇଲେ ଓ ଇନ୍ଦ୍ର ଆନନ୍ଦିତ ହେଲେ ।

ରାଜା ଚିରାୟୁଙ୍କର ଜୀବହର ନାମରେ ପୁଅଟିଏ ଥିଲା । ସେ ତାକୁ ଯୁବରାଜ କରିଦେଲେ । ଯୁବରାଜ ତା' ମା'ଙ୍କ ପାଖକୁ ସମ୍ମାନ ଜଣାଇ ଆଶୀର୍ବାଦ ପାଇବାକୁ ଗଲା । ରାଣୀ କହିଲେ– ପୁଅ, ତମେ ବହୁତ ଖୁସି । ହେଲେ ରାଜତ୍ୱ ପାଇଁ ଯୁବରାଜ ପଦ ହେଉଛି ସବୁଠୁଁ ତଳ ପାହାଚ । ଏ ପର୍ଯ୍ୟନ୍ତ ଅନେକ ଯୁବରାଜ ମଲେଣି । ତୋ' ବାପା ଯେହେତୁ ଦୀର୍ଘାୟୁ, କେହି ଯୁବରାଜ ରାଜା ହୋଇ ପାରିବେ ନାହିଁ । ତୋ' ବାପାଙ୍କ ବୟସ ଆଠ ହଜାର ବର୍ଷ ହେଲାଣି । ଆଉ କେତେ କମ୍ ଆୟୁର ପୁଅଙ୍କୁ ସେ ଯୁବରାଜ କରିବେ କିଏ ଜାଣେ !

ରାଣୀଙ୍କ କଥା ଶୁଣି ଯୁବରାଜ ବିଚଳିତ ହୋଇଗଲା । ରାଣୀ ତାକୁ ଉପଦେଶ ଦେଇ କହିଲେ– ତୁ ଯଦି ରାଜ୍ୟ ପାଇବାକୁ ଚାହୁଁଛୁ, ସେଥିପାଇଁ ମାତ୍ର ଗୋଟିଏ ଉପାୟ ଅଛି । ମନ୍ତ୍ରୀ ନାଗାର୍ଜ୍ଜୁନ ତାଙ୍କ କଥା ସବୁବେଳେ ରଖନ୍ତି । କହିବାକୁ ଗଲେ ସେ କେବେ ତାଙ୍କ କଥାରୁ ଓହରି ଯାଆନ୍ତି ନାହିଁ । ଦୈନିକ ସକାଳେ ଗାଧୋଇ ଓ ପୂଜା ପାଠ କରି ଖାଇବା ପୂର୍ବରୁ ବାହାରକୁ ଆସି ସେ ବଡ଼ ପାଟିରେ ପଚାରନ୍ତି– କେହି ମୋ'ଠାରୁ କିଛି ପାଇବାକୁ ଚାହିଁ ? ସେତିକିବେଳେ ତୁ ଯାଇ ତାଙ୍କୁ ତାଙ୍କ ମୁଣ୍ଡକୁ ମାଗ । ସେ ତାଙ୍କ ମୁଣ୍ଡକୁ ଦେଇ ମରିଯିବେ । ତାଙ୍କ ମରିବା ଦୁଃଖରେ ରାଜା ମରିଯାଇ ପାରନ୍ତି, ନହେଲେ ବଣକୁ ଯାଇ ତପସ୍ୟା କରିବେ ।

ମା'ଙ୍କ ଉପଦେଶ ମୁତାବକ ଯୁବରାଜ କାର୍ଯ୍ୟ କରିବାକୁ ଠିକ୍ କଲେ ।

ପରଦିନ ସକାଳେ ନାଗାର୍ଜ୍ଜୁନ ଘର ବାହାରକୁ ଆସି ବଡ଼ ପାଟିରେ ପଚାରିଲେ– କେହି ମୋ'ଠାରୁ କିଛି ପାଇବାକୁ ଚାହିଁ ? ଆଗେଇ ଆସି ତମର ଇଚ୍ଛା କୁହ । ତମେ ଇଚ୍ଛା କରୁଥିବା ଜିନିଷ ପାଇବ ।

ନାଗାର୍ଜ୍ଜୁନଙ୍କ କଥାଶୁଣି ଯୁବରାଜ ଆଗେଇ ଯାଇ ତାଙ୍କ ମୁଣ୍ଡ ମାଗିଲେ । ମନ୍ତ୍ରୀ କହିଲେ– ବାଳକ ! ତମର ମାଗିବା ଜିନିଷଟି ବଡ଼ ଅଦ୍ଭୁତ । ମୋ ମୁଣ୍ଡ ନେଇ ତମେ କ'ଣ କରିବ, ଯୋଉଟା କେବଳ କିଛି ମାଂସ ଓ କିଛି ରକ୍ତ ? ତଥାପି ତମେ ଯଦି ଚାହୁଁଛ, ତା'ହେଲେ ନିଜେ କାଟି ନେଇଯାଅ । ମୁଁ ଠିଆହୋଇ ରହୁଛି ।

ଯୁବରାଜ ଇଚ୍ଛାକରି ମନ୍ତ୍ରୀଙ୍କ ବେକରେ ଖଣ୍ଡାରେ ଜୋର୍‌ରେ ଚୋଟଟାଏ ହାଣିଲେ । ମନ୍ତ୍ରୀଙ୍କ ବେକ ହୀରା ଭଳି ଶକ୍ତ ଥିଲା ଓ ଖଣ୍ଡାଟି ଦୁଇଖଣ୍ଡ ହୋଇ ଭାଙ୍ଗିଗଲା । ଯୁବରାଜ ଆଚମ୍ବିତ ହୋଇ ଠିଆହୋଇ ରହିଲେ । ରାଜାଙ୍କ କାନରେ ଖବର ପହଞ୍ଚିଲା । ସେ ସେଠାକୁ ଦଉଡ଼ି ଆସିଲେ । ରାଜାଙ୍କୁ



ଦେଖି ନାଗାର୍ଜ୍ଜୁନ କହିଲେ– ମଣିମା ! ମୋର ପୂର୍ବଜନ୍ମ ବିଷୟରେ ଜ୍ଞାନ ଅଛି । ଗତ ଅନେକୋଡ଼ ଜନ୍ମରେ ମୁଁ ମୋ ମୁଣ୍ଡ ଦାନ କରିଛି । ଏଇଟା ଶହେଥର ହେବ । ତେଣୁ ଦୟାକରି ଆପତ୍ତି କରନ୍ତୁ ନାହିଁ । ମୋର ଯାଚକ ତା' ଇଚ୍ଛା ଅପୂରଣ ରଖି ଫେରିବ ନାହିଁ । ଆପଣଙ୍କ ଦର୍ଶନ ପାଇଁ ମୁଁ ଯାହା ଡେରି କରିଥିଲି ।

ତା'ପରେ ମନ୍ତ୍ରୀ ରାଜାଙ୍କୁ ଆଲିଙ୍ଗନ କଲେ ଓ ଯୁବରାଜଙ୍କୁ ଆଉ ଗୋଟିଏ ଖଣ୍ଡାରେ କିଛି ଚୂନା ଘଷି ଦେଲେ । ପରବର୍ତ୍ତୀ ଚୋଟରେ ପଦ୍ମଫୁଲ ତା' ବୃନ୍ତରୁ ଖସି ପଡ଼ିଲାପରି ମନ୍ତ୍ରୀଙ୍କ ମୁଣ୍ଡ ତାଙ୍କ କାନ୍ଧରୁ ଖସି ପଡ଼ିଲା । ରାଜା ତାଙ୍କ ନିଜ ମୁଣ୍ଡକୁ କାଟି ଦେବାକୁ ଖଣ୍ଡା ଉଠାଇଲେ ଓ ସଙ୍ଗେ ସଙ୍ଗେ ଶୂନ୍ୟବାଣୀ ହେଲା– ରାଜା ! ତମେ ଆତ୍ମହତ୍ୟା କର ନାହିଁ । ତମର ବନ୍ଧୁ ଓ ମନ୍ତ୍ରୀ ବୁଦ୍ଧତ୍ୱ ଓ ନିର୍ବାଣ ପ୍ରାପ୍ତ ହେଲେ ।

ଶୂନ୍ୟବାଣୀ ଶୁଣି ରାଜା ତାଙ୍କ ଉଦ୍ୟମରୁ ନିବୃତ୍ତ ହେଲେ ଓ ଦୁଃଖରେ ବ୍ରାହ୍ମଣମାନଙ୍କୁ ଅନେକ ଦାନ କରି ବଣକୁ ଯାଇ ତପସ୍ୟା କଲେ ଓ ନିର୍ବାଣ ପ୍ରାପ୍ତ ହେଲେ । ଯୁବରାଜ ରାଜ୍ୟ ପାଇଲା, କିନ୍ତୁ ନାଗାର୍ଜ୍ଜୁନଙ୍କ ପୁଅମାନେ ରାଗରେ ତାକୁ ମାରି ପକାଇଲେ ଓ ରାଣୀ ଭଗ୍ନ ହୃଦୟରେ ମରିଗଲେ । ନିଷ୍ଠୁର କର୍ମ କରିଥିବା ଲୋକର କ'ଣ ଉନ୍ନତି ହୁଏ ? ରାଜାଙ୍କ ମନ୍ତ୍ରୀମାନେ ଶତାୟୁ ନାମକ ଆଉଜଣେ ରାଜକୁମାରଙ୍କୁ ରାଜା କଲେ । ମଣିଷମାନଙ୍କୁ ଅମର କରିବାକୁ ଚେଷ୍ଟା କରିଥିବା ନାଗାର୍ଜ୍ଜୁନଙ୍କୁ ଦେବତାମାନେ ମଧ୍ୟ ସହ୍ୟ କରିପାରିଲେ ନାହିଁ । ସେ ମଧ୍ୟ ମୃତ୍ୟୁ କବଳରେ ପଡ଼ିଲେ । ବ୍ରହ୍ମା ଦୁଃଖରେ ପୂର୍ଣ୍ଣ ଏଇ ସଂସାରକୁ ସୃଷ୍ଟି କରିଛନ୍ତି । ମଣିଷ କେତେ ଚେଷ୍ଟାକଲେ ବି ବ୍ରହ୍ମାଙ୍କ ଉଦ୍ଦେଶ୍ୟ ବିରୁଦ୍ଧରେ ଯାଇ ପାରିବ ନାହିଁ ।

କଥାଟି ଶୁଣାଇ ସାରି ମରୁଭୂତି କହିଲେ– ଏହିଭଳି କୌଣସି ମଣିଷ ନାଗାର୍ଜ୍ଜୁନଙ୍କ ପରି ଅମର ହୋଇପାରେ, କିନ୍ତୁ ଆଜି ପର୍ଯ୍ୟନ୍ତ କୌଣସି ମଣିଷ ଅମର ହୋଇ ପାରିନାହିଁ । ଦେବତାମାନେ କୌଣସି ମଣିଷକୁ ଅମର ହେବା ଦେଖିପାରିବେ ନାହିଁ । ତେଣୁ ଏ ସଂସାର ବିଚିତ୍ର ।

ଦିନେ ନରବାହନଦତ୍ତ ଶିକାର କରିବାକୁ ନିଜ ବନ୍ଧୁମାନଙ୍କ ସହିତ ବଣକୁ ଗଲେ । ବଣରେ ସେମାନେ ଅନେକ ସିଂହ, ବାଘ, ଭାଲୁ ଓ ହରିଣ ମାରିଲେ । ତା'ପରେ ଆଉ ଗୋଟିଏ ବଣକୁ ଯାଇ ସେମାନେ ଗୁଳା ଖେଳ ଖେଳିଲେ । ଯୋଗକୁ ନରବାହନଦତ୍ତ ଫିଙ୍ଗିଥିବା ଗୁଳାଟି ଯାଇ ଜଣେ ତପସ୍ୱିନୀଙ୍କ ମୁଣ୍ଡରେ ବାଜିଲା । ତପସ୍ୱିନୀ ରାଗିଯାଇ କହିଲେ– ତୋତେ ତ ଏଇକ୍ଷଣି ଏତେ ନିଶା ଧରିଛି । ତୁ ଯଦି କର୍ପୂରିକାକୁ ବାହାହେବୁ, ତା'ହେଲେ ଆଉ କ'ଣ କ'ଣ ନ କରିବୁ !

ନରବାହନଦତ୍ତ ଘୋଡ଼ାରୁ ଓହ୍ଲାଇ ତାଙ୍କ ପାଦତଳେ ପଡ଼ି କ୍ଷମା ମାଗି କହିଲେ– ମା ! ଭୁଲରେ ଏମିତି ହୋଇଗଲା । ମୁଁ ଆପଣଙ୍କୁ ଦେଖି ନଥିଲି । ମୁଁ ଏଥିପାଇଁ କ୍ଷମା ଚାହୁଁଛି ।

ତପସ୍ୱିନୀ କହିଲେ– ଠିକ୍ ଅଛି, ପୁଅ । ମୋର ଏଇକ୍ଷଣି ତୋ'ଉପରେ କିଛି ରାଗ ନାହିଁ । ତା'ପରେ ସେ ନରବାହନଦତ୍ତଙ୍କୁ ଆଶୀର୍ବାଦ ଦେଲେ । ନରବାହନଦତ୍ତଙ୍କର ମନେହେଲା ସେ କୌଣସି ବଡ଼ ସତ୍ୟବାଦିନୀ ଓ ଜ୍ଞାନବତୀ ତପସ୍ୱିନୀ । ସେ ତପସ୍ୱିନୀଙ୍କୁ ନମସ୍କାର କରି ପଚାରିଲେ– ହେ ଭଗବତୀ ! ଆପଣ ଏଇକ୍ଷଣି କର୍ପୂରିକାର ନାଁ କହିଲେ । ଦୟାକରି ମୋତେ କୁହନ୍ତୁ ସେ କିଏ ?

ତପସ୍ୱିନୀ କହିଲେ– ସମୁଦ୍ର ସେପାରିରେ କର୍ପୂରସମ୍ଭବ ନାମରେ ଦ୍ୱୀପଟିଏ ଅଛି । କର୍ପୂରକ ତା'ର ରାଜା । ତା'ର ଝିଅ କର୍ପୂରିକା ପରମା ସୁନ୍ଦରୀ । ସେଇ ଝିଅ ପୁରୁଷମାନଙ୍କୁ ଘୃଣାକରେ । ତେଣୁ ସେ ବାହାହେବାକୁ ମନା କରୁଛି । କିନ୍ତୁ ତମେ ଯଦି ସେଇ ଦ୍ୱୀପରେ ପହଞ୍ଚି ଯାଅ, ସେ ତମକୁ ବରଣ କରିନେବ । କର୍ପୂରକ ଦ୍ୱୀପକୁ ଯିବା ବାଟ ବଡ଼ ଦୁର୍ଗମ ଆଉ ସେଠାରେ ପହଞ୍ଚିବାକୁ ତମକୁ

ବହୁତ କଷ୍ଟ କରିବାକୁ ପଡ଼ିବ । କିନ୍ତୁ ତମେ ସେଇ କଷ୍ଟ ପାଇଁ ବ୍ୟସ୍ତ ହୁଅନା । ଶେଷରେ ଫଳ ଭଲ ମିଳିବ । ଏତିକି କହି ତପସ୍ୱିନୀ ଚାଲିଗଲେ ।

ନରବାହନଦତ୍ତ ଗୋମୁଖଙ୍କୁ କହିଲେ– ଆସ ବନ୍ଧୁ ! ଆମେ କର୍ପୂରକ ଦ୍ୱୀପକୁ ଯିବା ।

ଗୋମୁଖ କହିଲେ– ହଜୁର ! ଏଇକ୍ଷିଣା ବେଶୀ ସାହସ କରନ୍ତୁନି । ଆପଣ ତ ଖାଲି ନାଁଟା ଶୁଣିଛନ୍ତି । ଏଣେ ଆପଣଙ୍କ ଭବନରେ ପରମା ସୁନ୍ଦରୀ ସ୍ତ୍ରୀମାନଙ୍କୁ ଛାଡ଼ି କର୍ପୂରିକା ପାଇଁ ଆପଣଙ୍କ ମନ ଉଚ୍ଚାଟ ହେଲାଣି !

ନରବାହନଦତ୍ତ କହିଲେ– ତପସ୍ୱିନୀଙ୍କ କଥା ମିଛ ହୋଇ ନପାରେ । ଏତିକି କହି ସେ ସମୁଦ୍ର କୂଳ ଆଡ଼କୁ ତାଙ୍କର ଘୋଡ଼ା ଦଉଡ଼ାଇ ଦେଲେ । ବାଧ୍ୟହୋଇ ଗୋମୁଖ ତାଙ୍କ ପଛେ ପଛେ ଗଲେ ।

ଏଣେ ନରବାହନଦତ୍ତ ଶିକାରରୁ ନଫେରିବାରୁ ବତ୍ସରାଜା ଉଦୟନ, ମହାରାଣୀ ବାସବଦତ୍ତା ଓ ନରବାହନଦତ୍ତଙ୍କ ଦୁଇ ସ୍ତ୍ରୀ ଚିନ୍ତାରେ ପଡ଼ିଗଲେ ।

ରତ୍ନପ୍ରଭା ତାଙ୍କ ବିଦ୍ୟାବଳରେ ସବୁକଥା ଜାଣିପାରି ସମସ୍ତଙ୍କୁ ବୁଝାଇ କହିଲେ– ଆର୍ଯ୍ୟପୁତ୍ର ଜଣେ ତପସ୍ୱିନୀଙ୍କ କହିବା ମୁତାବକ କର୍ପୂରସମ୍ଭବ ଦ୍ୱୀପ ଆଡ଼କୁ ମୁହାଁଇଛନ୍ତି । ଚିନ୍ତା କରିବାର କୌଣସି କାରଣ ନାହିଁ ।

ତା'ପରେ ନରବାହନଦତ୍ତଙ୍କ ବାଟରେ ବାଧା ଦୂର କରିବା ପାଇଁ ରତ୍ନପ୍ରଭା ତାଙ୍କର ଦ୍ୱିତୀୟ ବିଦ୍ୟା ପ୍ରୟୋଗ କଲେ । ସେଇ ବିଦ୍ୟାବଳରେ ନରବାହନଦତ୍ତଙ୍କର ସବୁ ଶୋକ-ଶ୍ରାନ୍ତି ଦୂର ହୋଇଗଲା । ସଞ୍ଜ ହେବା ଆଗରୁ ସେ ଲମ୍ବା ରାସ୍ତା ପାରହୋଇ ଗୋଟିଏ ପୋଖରୀ ପାଖରେ ପହଞ୍ଚିଲେ । ପୋଖରୀର ପାଣି ଅତି ନିର୍ମଳ ଥିଲା । ନରବାହନଦତ୍ତ ଓ ଗୋମୁଖ ପୋଖରୀରେ ଗାଧୋଇ ଫଳ-ମୂଳ ଖାଇଲେ । ରାତି ହୋଇଯିବାରୁ ସେମାନେ ଜନ୍ତୁମାନଙ୍କ ଆକ୍ରମଣରୁ ରକ୍ଷାପାଇବା ପାଇଁ ଘୋଡ଼ା ଦୁଇଟିକୁ ଗୋଟିଏ ଗଛ ମୂଳେ ବାନ୍ଧି ଗଛ ଉପରକୁ ଚଢ଼ି ଗଲେ । ରାତି ଅଧରେ ଗୋଟିଏ ଭୟଙ୍କର ସିଂହ ଆସି ଘୋଡ଼ା ଦୁଇଟି ଉପରେ ଆକ୍ରମଣ କରିଦେଲା । ଘୋଡ଼ାମାନଙ୍କୁ ବଞ୍ଚାଇବା ପାଇଁ ସେମାନେ ତଳକୁ ଓହ୍ଲାଇଲେ, କିନ୍ତୁ ସେମାନେ ତଳେ ପହଞ୍ଚିବା ପୂର୍ବରୁ ସିଂହଟି ଘୋଡ଼ା ଦୁଇଟିଙ୍କ କାମ ଶେଷ କରିଦେଇଥିଲା ।

ଘୋଡ଼ା ମରିଯିବାରୁ ତା'ପରଦିନ ଭୋର ହେବା ମାତ୍ରେ ଦୁଇଜଣଯାକ ପାଦରେ ଚାଲି ଚାଲି ଆଗେଇଲେ । ଚାଲି ଚାଲି ସେମାନେ ସମୁଦ୍ର କୂଳରେ ଗୋଟିଏ ବଡ଼ ନଗରରେ ପହଞ୍ଚିଲେ । ସେଇ ନଗରରେ ପର୍ବତମାନଙ୍କ ଭଳି କୋଠାଘର ସବୁ ଥିଲା । ରାଜଭବନ ସୁମେରୁ ପର୍ବତ ଭଳି ଦେଖା ଯାଉଥିଲା । ସୁନ୍ଦର ସୁନ୍ଦର ତୋରଣମାନ ନଗରର ପ୍ରବେଶ ପଥରେ ଶୋଭା ପାଉଥିଲା । ମୁଖ୍ୟ ରାସ୍ତା ପ୍ରଶସ୍ତ ଥିଲା ଓ ଗଳି ରାସ୍ତାମାନ ମଧ୍ୟ ବେଶ୍ ଓସାରିଆ ଥିଲା ।

ସେଇ ନଗରର ବଜାରରେ ଯାଇ ଯାଇ ସେମାନଙ୍କର ମନେହେଲା ଯେ, ସେଠାରେ ସବୁ ଅଛି –କିଣିଲାବାଲା ଅଛନ୍ତି, ବିକିଲା ବାଲାବି; ବଣିକ, ନାଗରୀକ, ବେଶ୍ୟା ସମସ୍ତେ ଅଛନ୍ତି, କିନ୍ତୁ ସମସ୍ତେ କାମରେ ଲାଗିଥିଲେ ବି ନିର୍ଜୀବ ପରି ଜଣା ପଡୁଛନ୍ତି । ମନଯୋଗ ଦେଇ ଦେଖିବାରୁ ସବୁ କଥା ବୁଝିହେଲା । ସେଇ ନଗରରେ କୌଣସି ମଣିଷ ନଥିଲେ । ସବୁଗୁଡ଼ାକ କାଠ କଣ୍ଢେଇ ଥିଲେ । ସେମାନେ ମଣିଷ ଭଳି ଚଳପ୍ରଚଳ ହେଉଥିଲେ ବି କଥା କହିପାରୁ ନଥିଲେ । ଏହିଭଳି ନଗରରେ ବୁଲାବୁଲି କରି ସେମାନେ ରାଜମହଲରେ ପହଞ୍ଚିଲେ । ରାଜଭବନ ଭିତରକୁ ଯାଇ ସେମାନେ ଦେଖିଲେ ସେଇ ବିଶାଳ ଭବନ ପ୍ରହରୀ, ବେଶ୍ୟା ଓ ସେବକମାନଙ୍କ ଦ୍ୱାରା ପୂରି ରହିଥିଲା । ସେମାନେ ସମସ୍ତେ କାର୍ଯ୍ୟବ୍ୟସ୍ତ ଥିଲେ କିନ୍ତୁ କଥା କହୁ ନଥିଲେ । ସେମାନଙ୍କୁ ତ କେହି ଜଣେ ଚଳାଇଲାବାଲା ଥିବ– ଏଇୟା ଭାବି ନରବାହନଦତ୍ତ ଓ ଗୋମୁଖ ସେଇ ଭବନ ଭିତରେ ବୁଲିବାକୁ



ଲାଗିଲେ । ସେମାନେ ସେଇ ଭବନର ଆସ୍ଥାନ ମଣ୍ଡପ ଉପରେ ଗୋଟିଏ ରତ୍ନଖଚିତ ସିଂହାସନ ଦେଖିଲେ । ସେଇ ସିଂହାସନରେ ସେମାନେ ରାଜକୀୟ ଠାଣିରେ ଜଣେ ଲୋକକୁ ବସିଥିବାର ଦେଖିଲେ । ତାକୁ ଦେଖି ସେମାନେ ବୁଝିପାରିଲେ ଯେ ସେ ହିଁ ସେଇ ରାଜ୍ୟର ରାଜା ଓ ସେ ହିଁ ଏକମାତ୍ର ମଣିଷ ।

ସେଇ ଲୋକଟି ଏଇ ଦୁଇଜଣଙ୍କୁ ସ୍ୱାଗତ କରି ପଚାରିଲା– ମଣିଷ ପାଇଁ ଅଗମ୍ୟ ଏଇ ଦେଶକୁ ତମେମାନେ କେମିତି ଆସିଲ ?

ନରବାହନଦତ୍ତ ସେମାନଙ୍କ ବିଷୟରେ ସବୁକଥା କହିଲେ ଓ ତାକୁ ପଚାରିଲେ– ହେ ଭଦ୍ର ! ତମେ କିଏ ଓ ଏଇ ଆଶ୍ଚର୍ଯ୍ୟମୟ ନଗର କେମିତି ହେଲା ?

ସେଇ ଲୋକଟି ନିଜ ବିଷୟରେ ଶୁଣାଇଲା, ଯାହା ଏହିପରି :

## ରାଜ୍ୟଧର ବଢ଼େଇ କଥା

ଏଇ ପୃଥିବୀର ମଧ୍ୟ ଭାଗରେ ଜଗତ ବିଖ୍ୟାତ କାଞ୍ଚି ନଗରୀ ଅବସ୍ଥିତ । ସେଠାରେ ବାହୁବଳ ନାମରେ ଜଣେ ରାଜା ରାଜତ୍ୱ କରୁଥିଲେ । ସେ ନିଜର ବାହୁବଳରେ ଚଞ୍ଚଳା ଲକ୍ଷ୍ମୀଙ୍କୁ ମଧ୍ୟ ସବୁବେଳେ ନିଜର ଅଶେଷ ରାଜକୋଷରେ ବନ୍ଦୀକରି ରଖିଥିଲେ । ସେଇ ରାଜାଙ୍କ ରାଜ୍ୟରେ ଦୁଇଜଣ ବଢ଼େଇ ଥିଲେ । ଦୁଇଜଣଯାକ ମୟଦାନବଙ୍କ ଯନ୍ତ୍ରଚାଳିତ କଣ୍ଢେଇ ତିଆରି କରିବା କଳାରେ ନିପୁଣ ଥିଲେ । ବଡ଼ ଭାଇର ନାଁ ଥିଲା ପ୍ରାଣଧର । ମୁଁ ହେଉଛି ଛୋଟ ଭାଇ । ମୋ ନାଁ ରାଜ୍ୟଧର ।

ମୋ ବଡ଼ଭାଇ ବଡ଼ ବିଳାସୀ ଥିଲା । ବାପାଙ୍କ ଠୁଁ ପାଇଥିବା ଧନ ସେ ବିଳାସ ବ୍ୟସନରେ ଉଡ଼ାଇ ଦେଲା । ତା'ପରେ ମୁଁ ତାକୁ ମୋ ପାଖରେ ଥିବା କିଛି ଧନ ଦେଲି, ସେ ତାକୁ ବି ବରବାଦ କରିଦେଲା । ବେଶ୍ୟାମାନଙ୍କୁ ଦେବା ପାଇଁ ତା'ର ବରାବର ଧନ ଦରକାର ହେଲା । ତେଣୁ ସେ ସେଥିପାଇଁ କାଠର ହଳେ ହଂସ ତିଆରି କଲା । ସେଇ ହଂସ ଦେହରେ ଗୋଟାଏ ଦଉଡ଼ି ବନ୍ଧା ହୋଇଥିଲା । ଦଉଡ଼ି ହଲାଇଲେ ସେଇ ହଂସମାନେ ଉଡୁଥିଲେ ଓ ରାତିରେ ସେଇ ହଂସମାନେ ରାଜା ବାହୁବଳଙ୍କ ରାଜଭବନକୁ ଯାଇ ତାଙ୍କ ରାଜକୋଷରୁ ବହୁ ମୂଲ୍ୟବାନ ଅଳଙ୍କାର ଓ ରତ୍ନ ଇତ୍ୟାଦି ଥଣ୍ଟରେ ଚାପିଧରି ଝରକାବାଟେ ଉଡ଼ିଆସି ମୋ ଭାଇ ପାଖକୁ ଫେରି ଆସୁଥିଲେ । ସକାଳ ହେଲେ ମୋ ଭାଇ ସେଇ ଅଳଙ୍କାରକୁ ବିକିବାକୁ ଚାଲି ଯାଉଥିଲା । ସେଇ ଅଳଙ୍କାର ବିକ୍ରୀରୁ ମିଳୁଥିବା ଧନକୁ ନେଇ ସେ ବେଶ୍ୟା ଘରକୁ ଯାଉଥିଲା । ଏଇଭଳି ଚୋରୀ କାମରେ ଯନ୍ତ୍ରକୁ ବ୍ୟବହାର ନ କରିବାକୁ ମୁଁ ତାକୁ ବହୁତ ବୁଝାଇଲି । ସେ ମୋ କଥା ମାନିଲା ନାହିଁ ।

ଏଣେ ରାଜକୋଷର ରକ୍ଷକ ଚିନ୍ତାରେ ବେହାଲ ହୋଇଗଲା ଯେ, ରାଜକୋଷରୁ କେମିତି ଏତେ ମୂଲ୍ୟବାନ ଅଳଙ୍କାର ସବୁ ଗାଏବ୍ ହେଉଛି । ରାଜକୋଷକୁ ଜଗିବା ପାଇଁ ଅଧିକ କଡ଼ା ଜଗୁଆଳୀ ରଖାଗଲା । ଜଗୁଆଳୀମାନେ ହଂସ ଦୁଇଟିକୁ ଝରକା ଦେଇ କୋଷାଗାର ଭିତରେ ପଶୁଥିବାର ଦେଖିଦେଲେ । ସେମାନେ ଭିତରକୁ ଆସି ହଂସ ଦୁଇଟି ମୂଲ୍ୟବାନ ଅଳଙ୍କାରଗୁଡ଼ିକୁ ଥଣ୍ଟରେ ଉଠାଉଥିଲାବେଳେ ଧରିନେଲେ । ସେମାନେ ହଂସଗୁଡ଼ିକର ଦଉଡ଼ି କାଟିଦେଇ ହଂସ ଦୁଇଟିକୁ ରାଜାଙ୍କୁ ଦେଖାଇବା ପାଇଁ ସେଇ ଘରେ ବନ୍ଦ କରିଦେଲେ ।

ଦଉଡ଼ି ଯନ୍ତ୍ର ଚଳାଇଲେ ବି ଯେତେବେଳେ ହଂସ ଦୁଇଟି ନଫେରିଲେ, ଘାବରେଇ ଯାଇ ମୋ ଭାଇ ମୋତେ କହିଲା ଯେ ହଂସଗୁଡ଼ିକ ଧରା ପଡ଼ିଛନ୍ତି । ତା'ପରେ ସେ ପଳାଇବାକୁ ପ୍ରସ୍ତୁତ ହେଲା । ସେ ନିଜର ଜିନିଷପତ୍ର ଏକାଠି କଲା ଓ ତା' ପରିବାର ସହିତ କାଠ ବିମାନରେ ବସି

ମୋତେ କହିଲା— ତୁ ବି ଆମ ସାଙ୍ଗରେ ପଳେଇ ଆ, ନହେଲେ ରାଜାର ସୈନ୍ୟମାନେ ସକାଳ ହେବା ମାତ୍ରେ ଧରିନେବେ । ସେଇ ବିମାନରେ ବହୁତ ଲୋକ ଓ ଜିନିଷପତ୍ର ଥିବାରୁ ମୁଁ ତା' ସହିତ ଯିବାକୁ ମନାକରିଦେଲି ।

ତା'ପରେ ସକାଳ ହେବା ପୂର୍ବରୁ ମୁଁ ମଧ୍ୟ ମୋ ବିମାନ ବାହାର କରି ସେଇ ନଗରରୁ ପଳାଇଗଲି । ସମୁଦ୍ର କୂଳ ଦେଖି ମୁଁ ବିମାନକୁ ତଳକୁ ଓହ୍ଲାଇ ବୁଲୁବୁଲୁ କିଛି ଦୂରକୁ ଆସିଗଲି ଓ ଏଇ ଶୂନ୍ୟ ନଗରୀକୁ ଦେଖିଲି । ମୁଁ ଏଠାରେ ଦିନସାରା ଏପାଖ ସେପାଖ ବୁଲାବୁଲି କଲି । ଝରଣାରେ ଗାଧୋଇଲି, ଫଳ ଖାଇଲି । ଭାବିଲି— ରାତିଟା ସିନା ଏଇଠି କଟାଇ ଦେବି, ହେଲେ ଏଇ ଶୂନ୍ୟ ନଗରରେ କ'ଣ କରିବି । ସକାଳ ହେଲେ ଅନ୍ୟ କୋଉ ଜାଗା ଦେଖିବି । ତେଣୁ ରାତି କଟାଇବାକୁ ମୁଁ ରାଜଭବନକୁ ଆସିଗଲି । ରାଜକୀୟ ପଲଙ୍କ ଉପରେ ପଡ଼ି ଚିନ୍ତାରେ ଖାଲି କଡ଼ ଲେଉଟାଇବାକୁ ଲାଗିଲି । ଟିକେ ନିଦ ଲାଗି ଆସିବାରୁ ସ୍ୱପ୍ନରେ ଦେଖିଲି ଜଣେ ଦେବତା ମୋତେ କହୁଛନ୍ତି— ତମେ ଏଇଠି ରୁହ । ଖାଇବା ବେଳ ହେଲେ ଏଇ ରାଜଭବନର ମଝି ସ୍ଥାନକୁ ଚାଲିଯିବ ।

ନିଦ ଭାଙ୍ଗିଲାରୁ ମୁଁ ଭାବିଲି— ସେତ ଭଗବାନ କାର୍ତ୍ତିକେୟଙ୍କ ଆଦେଶ ଯେ ମୁଁ ଏଇଠି ରହେ । ଏଇ ନଗର ବି ତାଙ୍କରି ହାତରେ ତିଆରି ଭଳି ଲାଗୁଛି, ନହେଲେ ଏଇଠିକି ଏଇ ସବୁ କାଠର ଚାକର-ବାକର ସବୁ ଜିନିଷପତ୍ର କେଉଁଠୁ ଆସନ୍ତା । ସେଇ ଦିନଠୁଁ ମୁଁ ଏଇଠି ଅଛି । ପ୍ରଭୁ କାର୍ତ୍ତିକେୟଙ୍କ ଆଦେଶ ମୁତାବକ ଖାଇବାବେଳ ହେଲେ ମୁଁ ଏଇ ଭବନ ମଝିକୁ ଚାଲିଯାଏ । ସେଠାରେ ପହଞ୍ଚିଲା ମାତ୍ରେ ସୁନା ବାସନରେ ଆକାଶରୁ ଦୁଧ, ଭାତ ଆଉ ଛପନ ପ୍ରକାରର ତରକାରୀ ଆସି ସଜା ହୋଇଯାଏ । ମୁଁ ଗୋଟେ କଙ୍ଗାଳ ଥିଲି, ଆଉ ଏଇକ୍ଷଣି ସମ୍ରାଟଙ୍କ ଭଳି ସାରା ସଂସାରର ସୁଖ ଭୋଗକରି ଏଇଠି ରହୁଛି । ତମେମାନେ ମୋର ଏଇ ନଗରକୁ ଆସିଛ, ମୋତେ ବଡ଼ ଆନନ୍ଦ ଲାଗୁଛି । ମୁଁ ଯତ୍ନ ସହକାରେ ତମମାନଙ୍କର ସେବା କରିବି । ଏଇ ଚିନ୍ତାମଣି ନଗରରେ ତମମାନଙ୍କର କିଛି ଅସୁବିଧା ହେବନାହିଁ ।

ଏମିତିକି ନିଜ କଥା ଶୁଣାଇ ରାଜ୍ୟଧର ନରବାହନଦତ୍ତ ଓ ଗୋମୁଖଙ୍କୁ ବଗିଚାକୁ ନେଇଗଲା । ସେଠାରେ ସେମାନେ ଗାଧୋଇଲେ ଓ ପାଖରେ ଥିବା ଶିବ ମନ୍ଦିରରେ ପୂଜାକଲେ । ତା'ପରେ ସେମାନେ ରାଜ୍ୟଧର ସାଙ୍ଗରେ ତା' ଭବନର ମଝି ସ୍ଥାନରେ ଆସି ପହଞ୍ଚିଲେ । ସେମାନେ ପହଞ୍ଚିବା ମାତ୍ରେ ବିଭିନ୍ନ ପ୍ରକାର ସୁସ୍ୱାଦୁ ଖାଦ୍ୟ ସୁନା ବାସନରେ ସଜାହୋଇଗଲା । ନରବାହନଦତ୍ତ ଓ ଗୋମୁଖ ବେଶ ସନ୍ତୋଷରେ ଖାଇଲେ । ଖାଇବା ପରେ ନରବାହନଦତ୍ତ ପାନ ଖାଇଲେ ଓ ବିଶ୍ରାମ ନେବା ପାଇଁ ସୁକୋମଳ ଶେଜ ଉପରେ ଗଡ଼ି ପଡ଼ିଲେ ।

ଶେଜ ଉପରେ ଗଡ଼ି ପଡ଼ିଲେ ସତ, କିନ୍ତୁ ତାଙ୍କ ଆଖିକୁ ନିଦ ଆସିଲା ନାହିଁ । ସେତିକି ବେଳେ ରାଜ୍ୟଧର ସେଠାରେ ପହଞ୍ଚିଗଲା ଓ ନରବାହନଦତ୍ତଙ୍କୁ ଚିନ୍ତାଗ୍ରସ୍ତ ଦେଖି କହିଲା— ଯୁବରାଜ ! ଆପଣ ଚିନ୍ତା କାହିଁକି କରୁଛନ୍ତି ! ନିଜ ପରାକ୍ରମରେ ଆପଣ ଅବଶ୍ୟ କର୍ପୂରିକାକୁ ପାଇବେ । ପରାକ୍ରମୀ ବ୍ୟକ୍ତି ସବୁବେଳେ ବିଜୟୀ ହୋଇଥାଏ । ମୁଁ ଆପଣଙ୍କୁ ନିଜ ଆଖିରେ ଦେଖିଥିବା ଘଟଣା ଶୁଣାଉଛି । ଶୁଣନ୍ତୁ ।

## ମନପ୍ରଭା କଥା

କାଞ୍ଚିପୁର ନଗରରେ ଅର୍ଥଲୋଭ ନାମରେ ଜଣେ ବଣିକ ଥିଲା । ସେ ଖୁବ୍ କୃପଣ ଥିଲା । ତା' ସ୍ତ୍ରୀର ନାଁ ମନପ୍ରଭା । ମନପ୍ରଭା ଖୁବ୍ ସୁନ୍ଦରୀ । କୃପଣ ହୋଇଥିବାରୁ ଅର୍ଥଲୋଭ କାହାକୁ



ବିଶ୍ୱାସ କରୁ ନଥିଲା । ସେ ତା'ର ସବୁ ବଣିଜ କାରବାର ତା' ସ୍ତ୍ରୀ ଦାୟିତ୍ୱରେ ଦେଇଥିଲା । ଯଦିଚ ମନପ୍ରଭା ରାଜି ନଥିଲା, ସେ ବାଧ୍ୟହୋଇ ତା'ର ସ୍ୱାମୀକୁ ବଣିଜ ସଂକ୍ରାନ୍ତରେ ଆସୁଥିବା ବଣିକଙ୍କୁ ଭେଟୁଥିଲା । ମନପ୍ରଭାର ମଧୁର କଥା ଓ ସୌନ୍ଦର୍ଯ୍ୟରେ ଲୋକମାନେ ତା'ପ୍ରତି ଆକର୍ଷିତ ହେଉଥିଲେ । ହାତୀ, ଘୋଡ଼ା, ଲୁଗାପଟା ଓ ମଣିମୁକ୍ତାରେ ମନପ୍ରଭାର କାରବାରରେ ବଣିକ ବହୁତ ଲାଭବାନ ହୋଇ ସୁଖରେ ଥିଲା ।

ଦିନେ ଜଣେ ଖୁବ୍ ଧନୀ ବଣିକ ସୁଖଧନ ବହୁ ମୂଲ୍ୟବାନ ସାମଗ୍ରୀ ଧରି ନଗରରେ ପହଞ୍ଚିଲା । ଅର୍ଥଲୋଭ ସେଇ ବଣିକ ଆସିବା ବିଷୟରେ ଜାଣିପାରି ତା' ସ୍ତ୍ରୀକୁ କହିଲା— ପ୍ରିୟା ! ଏଇ ବଣିକ ତା' ସାଙ୍ଗରେ କୋଡ଼ିଏ ହଜାର ଘୋଡ଼ା ଓ ଚୀନ ଦେଶରୁ ଅସଂଖ୍ୟ ଦାମୀ ରେଶମ ଲୁଗାପଟା ଆଣିଛି । ତମେ ଯାଇ ତା'ଠୁଁ ପାଞ୍ଚହଜାର ଘୋଡ଼ା ଓ ଦଶହଜାରଖଣ୍ଡ ରେଶମ ଲୁଗା କିଣ । ଆମ ପାଖରେ ଥିବା ଘୋଡ଼ା ସହିତ ତା' ପାଖରୁ କିଣିଥିବା ଘୋଡ଼ାକୁ ନେଇ ମୁଁ ରାଜାଙ୍କ ପାଖକୁ ଯାଇ ସମ୍ମାନ ଜଣାଇବି ଓ ବେପାର କରିବି ।

ମନପ୍ରଭା ସୁଖଧନ ପାଖକୁ ସଙ୍ଗେ ସଙ୍ଗେ ଯାଇ ଘୋଡ଼ା ଓ ଲୁଗାର ଦାମ ପଚାରିଲା । ସୁଖଧନ ତା' ସୌନ୍ଦର୍ଯ୍ୟରେ ମୁଗ୍ଧହୋଇ ତାକୁ ତା' ଶୋଇବା ଘରକୁ ଡାକି ନେଇ କହିଲା— ମୁଁ ତମକୁ ଗୋଟିଏ ଘୋଡ଼ା କି ଖଣ୍ଡିଏ ଲୁଗା ବି ବିକିବି ନାହିଁ । ତମେ ଯଦି ରାତିଟିଏ ମୋ ପାଖରେ ଶୋଇବ, ମୁଁ ତମକୁ ପାଞ୍ଚହଜାର ଘୋଡ଼ା ଆଉ ପାଞ୍ଚହଜାର ଖଣ୍ଡ ଲୁଗା ମାଗଣା ଦେବି । ଏଇ ହେଲା ମୋର ବରାଦ ।

ମନପ୍ରଭା କହିଲା ଯେ ସେ ଘରକୁ ଯାଇ ତା'ର ସ୍ୱାମୀର ଅନୁମତି ନେଇ ସୁଖଧନ ପାଖକୁ ଫେରି ଆସିବ । ଘରକୁ ଫେରି ସେ ତା'ର ସ୍ୱାମୀକୁ ସୁଖଧନର ବରାଦ କଥା କହିଲା । ଅତି କୃପଣ ହୋଇଥିବାରୁ ଅର୍ଥଲୋଭରେ ସେ ତା' ସ୍ତ୍ରୀକୁ କହିଲା— ପ୍ରିୟା ! ରାତିକ ପାଇଁ ଆମେ ଏତେ ପାଉଛୁ । ଏଇ ସମ୍ପର୍କରେ କିଛି ପାପ ନାହିଁ । ରାତିଟିଏ ତା' ପାଖରେ କଟାଇ ସକାଳକୁ ଫେରିଆସ ।

ମନପ୍ରଭା ତା'ର ସ୍ୱାମୀର କଥାଶୁଣି ଭାବିଲା— ମୋ ସ୍ୱାମୀ ସତରେ କେତେ ନୀଚ ! ଯେଉଁଲୋକ ରାତିକ ପାଇଁ ଏତେ ଖର୍ଚ୍ଚ କରିପାରେ ସେ ନିଶ୍ଚୟ ଅଧିକ ବଦାନ୍ୟ ଓ ଉଚ୍ଚମନା । ସେ ଆଜିଠୁଁ ମୋ ସ୍ୱାମୀ ହେବ । ନିଜ ସ୍ତ୍ରୀକୁ ବିକୁଥିବା ଲୋକଠାରୁ ହୀନ ଓ ଘୃଣ୍ୟ ଅନ୍ୟ କେହି ନାହିଁ । ତା'ପରେ ସେ ତା' ସ୍ୱାମୀକୁ କହିଲା— ହଉ ତା'ହେଲେ ମୁଁ ଯାଉଛି, ହେଲେ ଏଥିରେ ମୋର ଦୋଷ ନାହିଁ । ସଞ୍ଜ ହେଲା ମାତ୍ରେ ସେ ସୁଖଧନ ପାଖକୁ ଚାଲିଗଲା । ସୁଖଧନ ବିସ୍ମିତ ହୋଇ ତାକୁ ପଚାରି ଜାଣିପାରିଲା ଯେ, ତା' ସ୍ୱାମୀର ସମ୍ମତି ନେଇ ସେ ଆସିଛି ଓ ସେ ସଙ୍ଗେ ସଙ୍ଗେ ଅର୍ଥଲୋଭ ପାଖକୁ ପାଞ୍ଚହଜାର ଘୋଡ଼ା ଓ ପାଞ୍ଚହଜାର ଲୁଗା ପଠାଇ ଦେଲା । ସେ ଭାବିଲା ମନପ୍ରଭା ତା'ପାଖକୁ ସମ୍ପଦର ଦେବୀ ରୂପେ ଆସିଛି । ସେ ତା' ସହିତ ରାତିଟିଏ କଟାଇଲା ଓ ତା'ର ସୁଖର ସୀମା ରହିଲା ନାହିଁ ।

ସକାଳ ହେଲା ମାତ୍ରେ ଅର୍ଥଲୋଭ ତା'ର ଜଣେ ଚାକରକୁ ମନପ୍ରଭାକୁ ଆଣିବାକୁ ପଠାଇଲା । ମନପ୍ରଭା ଚାକରକୁ କହିଲା— ମୁଁ ବିକ୍ରୀ ହୋଇଯାଇଛି ଓ ଜଣଙ୍କର ସ୍ତ୍ରୀ ହୋଇଯାଇଛି । ମୋର ଦେହ ଓ ମନ ବର୍ତ୍ତମାନ ସୁଖଧନଙ୍କର । ମୁଁ କେମିତି ଫେରିଯାଇ ଅର୍ଥଲୋଭର ସ୍ତ୍ରୀ ହୋଇ ପାରିବି ? ସେ ନିର୍ଲଜ । କିନ୍ତୁ ମୋର ଲାଜ ବୋଲି କିଛି ଅଛି, ଯାହାକୁ ମୁଁ ଅଧିକ ମୂଲ୍ୟବାନ ଭାବେ । ମୁଁ ଯାହା କହିଲି ଅର୍ଥଲୋଭକୁ ଯାଇ କହ । ମୋତେ ଯିଏ କିଣିଛନ୍ତି, ସେ ହିଁ ମୋ ସ୍ୱାମୀ ।

ଚାକର ଫେରିଆସି ଅର୍ଥଲୋଭକୁ ମନପ୍ରଭା କହିଥିବା କଥା କହିଲା । ଅର୍ଥଲୋଭ ତା' ସ୍ତ୍ରୀକୁ ଜୋରକରି ନେଇ ଆସିବ ବୋଲି ଠିକ୍ କଲା, କିନ୍ତୁ ତା'ର ଜଣେ କବିରାଜ ବନ୍ଧୁ ହରବଳ ତାକୁ

ଉପଦେଶ ଦେଲା– ଦେଖ । ତମେ ତମ ସ୍ତ୍ରୀକୁ ସୁଖଧନଠୁଁ ଜୋରକରି ଛଡ଼ାଇ ଆଣିପାରିବ ନାହିଁ । ସେ ଜଣେ ବଡ଼ ବୀର ଓ ବଳବାନ । ଖାଲି ସେତିକି ନୁହେଁ, ତା'ର ଅନେକ ଶକ୍ତିଶାଳୀ ବନ୍ଧୁ ତା ସାଙ୍ଗରେ ଅଛନ୍ତି । ମନପ୍ରଭା ତା' ବଦାନ୍ୟତାରେ ମୁଗ୍ଧ । କୃପଣ ହୋଇଥିବା ହେତୁ ତମେ ତାକୁ ବିକିଦେଲ ଆଉ ସେ ତମକୁ ଘୃଣାକରେ । ତମେ ଆତ୍ମସମ୍ମାନ ହରାଇଛ, ବୀରତ୍ୱ ତମକୁ ଛାଡ଼ି ଚାଲିଯାଇଛି । ଲୋକମାନେ ତମକୁ ଗାଳିଦେଇ ନପୁଂସକ ବୋଲି କହୁଛନ୍ତି । ସୁଖଧନ ଭଳି ଶତ୍ରୁକୁ ତମେ କେମିତି ଜିତି ପାରିବ ? ତମେ ତମ ସ୍ତ୍ରୀକୁ ବିକିଥିବା କଥା ରାଜା ଜାଣିଲେ ତମ ଉପରେ ରାଗିଯିବେ । ସବୁ ଲୋକଙ୍କ ଆଗରେ ଥଟ୍ଟା ଓ ପରିହାସର ପାତ୍ର ହୁଅନାହିଁ ।

ଅର୍ଥଲୋଭ ତା' ବନ୍ଧୁର ଉପଦେଶକୁ କାନ ଦେଲାନାହିଁ । ରାତରେ ସେ କେତେକ ଲୋକଙ୍କୁ ନେଇ ସୁଖଧନ ଘରକୁ ଘେରିଗଲା । ସଙ୍ଗେ ସଙ୍ଗେ ସୁଖଧନର ଲୋକମାନେ ଅର୍ଥଲୋଭି ଓ ତା'ର ଲୋକମାନଙ୍କୁ ଘଉଡ଼େଇ ଦେଲେ । ଅର୍ଥଲୋଭ ରାଜାଙ୍କ ପାଖକୁ ଯାଇ ଅଭିଯୋଗ କଲା– ମହାରାଜ ! ସୁଖଧନ ନାମରେ ଜଣେ ବଣିକ ମୋ ସ୍ତ୍ରୀକୁ ନେଇ ଯାଇଛି । ସେ କିନ୍ତୁ ରାଜାଙ୍କୁ ପ୍ରକୃତ ଘଟଣା ବିଷୟରେ କିଛି କହିଲା ନାହିଁ । ରାଜା ସୁଖଧନକୁ ଦଣ୍ଡଦେବାକୁ ଚିନ୍ତାକଲେ, କିନ୍ତୁ ତାଙ୍କ ମନ୍ତ୍ରୀ ସଜ୍ଞାନ କହିଲେ– ମଣିମା ! ସୁଖଧନକୁ ଦଣ୍ଡଦେବା ସହଜ କଥା ନୁହେଁ । ତା'ର ଏତେଜଣ ଶକ୍ତିଶାଳୀ ବନ୍ଧୁ ତା' ସହିତ ରହୁଛନ୍ତି । କ'ଣ ପ୍ରକୃତରେ ଘଟିଛି ଆମେମାନେ ଜାଣୁନା । ନିଶ୍ଚୟ ତା' ପଛରେ କିଛି କାରଣ ଥିବ । ଆମେ କଟୁଆଳକୁ ପଠାଇ ସୁଖଧନକୁ ଡକାଇବା ଓ ତା'ଠାରୁ କଥା କ'ଣ ବୁଝିବା ।

କଟୁଆଳକୁ ପଠାଗଲା । ମନପ୍ରଭା ଆଗେଇ ଆସି କଟୁଆଳକୁ ସବୁ ଘଟଣା କହିଲା । କଟୁଆଳ ବିସ୍ମିତ ହୋଇ ଯାଇ ରାଜାଙ୍କୁ ଜଣାଇଲା । ରାଜା ମଧ୍ୟ ନିଜେ ବିସ୍ମିତ ହେଲେ । ମନପ୍ରଭାକୁ ଭେଟିବାକୁ ଚାହିଁଲେ । ଅର୍ଥଲୋଭକୁ ସାଙ୍ଗରେ ନେଇ ସେ ସୁଖଧନ ଘରକୁ ଗଲେ । ମନପ୍ରଭା ରାଜାଙ୍କ ପାଦତଳେ ପଡ଼ି, ଅର୍ଥଲୋଭ ସାମ୍ନାରେ ସବୁ ଘଟଣା କହିଲା । ଅର୍ଥଲୋଭ ଚୁପ୍ ରହିଲା । ରାଜା ମନପ୍ରଭାକୁ ଏଇ ଘଟଣାରେ ନିଷ୍ପତ୍ତି ନେବାକୁ କହିଲେ । ମନପ୍ରଭା କହିଲା– ମଣିମା ! ବିପଦ ନଥାଇ ନିଜ ସ୍ତ୍ରୀକୁ ଅନ୍ୟକୁ ବିକିଦେବା ଅନ୍ୟାୟ । ମୁଁ ସେଭଳି କୃପଣ ପାଖକୁ କେମିତି ଫେରିଯାଇ ପାରିବି ?

ରାଜା ମନପ୍ରଭାର ଉତ୍ତରରେ ସନ୍ତୁଷ୍ଟ ହୋଇ ଫେରିଯିବାକୁ ବାହାରି ଥିଲେ, କିନ୍ତୁ ଅର୍ଥଲୋଭ ରାଗ ଓ ଅପମାନରେ ଚିତ୍କାର କରି କହିଲା, ମଣିମା ! ଆମ ଦୁହିଁଙ୍କୁ ଯୁଦ୍ଧ କରିବାକୁ ଅନୁମତି ଦେଇ ଏଇ ସମସ୍ୟାର ସମାଧାନ କରାନ୍ତୁ ।

ସୁଖଧନ ଆହ୍ୱାନକୁ ଗ୍ରହଣ କରି ପ୍ରସ୍ତୁତ ହୋଇଗଲା । ସେ କହିଲା– ବିଜୟୀକୁ ମନପ୍ରଭା ପୁରସ୍କାର ଭାବେ ମିଳିବ ।

ଗୋଟିଏ ଖୋଲା ପଡ଼ିଆରେ ଘୋଡ଼ା ଚଢ଼ି ଦୁହେଁ ଦୁହିଁଙ୍କୁ ସମ୍ମୁଖୀନ ହେଲେ । ପ୍ରଥମ ଯୁଦ୍ଧରେ ଅର୍ଥଲୋଭର ଘୋଡ଼ା ଡିଆଁଟାଏ ମାରିଲା ଓ ସୁଖଧନ ତାକୁ ମାରି ଉଡ଼ାଇ ଦେଲା । ତିନି ତିନିଥର ସେ ଅର୍ଥଲୋଭର ଘୋଡ଼ାମାନଙ୍କୁ ମାରି ଅର୍ଥଲୋଭକୁ ତଳକୁ ପକାଇ ଦେଲା, କିନ୍ତୁ ନ୍ୟାୟପରାୟଣ ଯୋଦ୍ଧା ହୋଇଥିବାରୁ ସେ ତାକୁ ମାରିଲା ନାହିଁ । ପଞ୍ଚମଥର ଅର୍ଥଲୋଭର ଘୋଡ଼ା ଅର୍ଥଲୋଭକୁ ପକାଇ ଦେଇ ନାଦ ମାରିଲା ଓ ସେ ଅଚେତ ହୋଇଗଲା । ତା' ଚାକରମାନେ ତାକୁ ଘରକୁ ନେଇଗଲେ । ସମସ୍ତେ ସୁଖଧନର ପ୍ରଶଂସା କଲେ ଓ ରାଜା ବାହୁବଳ ତାକୁ ଅନେକ ମୂଲ୍ୟବାନ ଉପହାର ଦେଲେ ଓ ସେ ତାଙ୍କୁ ସମ୍ମାନ ଜଣାଇ ଦେଇଥିବା ଉପହାରକୁ ଫେରାଇ ଦେଲା । ରାଜା



ଅର୍ଥଲୋଭର ଅସତ୍ ଉପାୟରେ ଅର୍ଜିଥିବା ସମସ୍ତ ଧନ-ସମ୍ପତ୍ତିକୁ ବାଜ୍ୟାପ୍ତ କରି ତାକୁ ରାଜକର୍ମଚାରୀ ପଦରୁ ତଡ଼ି ଦେଲେ । ସୁଖଧନ ମନପ୍ରଭାକୁ ସାଙ୍ଗରେ ନେଇ ତା' ନିଜ ଦେଶକୁ ଫେରିଗଲା ।

କଥାଟି ଶୁଣାଇ ରାଜ୍ୟଧର ନରବାହନଦତ୍ତଙ୍କୁ କହିଲା– ମହାରାଜ ! ଦୁର୍ବଳ ଓ ନୀଚଲୋକ ପାଖରୁ ସୁନ୍ଦରୀ ସ୍ତ୍ରୀ ଓ ଧନ ସମ୍ପତ୍ତି ଏହିପରି ଚାଲିଯାନ୍ତି ହେଲେ ପରାକ୍ରମୀ ଓ ସାହସୀ ଲୋକଙ୍କୁ ଗ୍ରହଣ କରନ୍ତି ।

ରାଜ୍ୟଧରର କଥା ଶୁଣି ନରବାହନ ସନ୍ତୁଷ୍ଟ ହେଲେ ଓ କିଛି ସମୟ ପରେ ତାଙ୍କୁ ନିଦ ଆସିଗଲା । ତା'ପର ଦିନ ସକାଳେ ଗୋମୁଖ ରାଜ୍ୟଧରକୁ କହିଲେ– ତମେ ଆମ ଯୁବରାଜଙ୍କ ପାଇଁ ଏମିତି ଗୋଟାଏ ବିମାନ ତିଆରି କରିଦିଅ, ଯିଏ ତାଙ୍କୁ କର୍ପୂରସମ୍ଭବ ଦ୍ୱୀପରେ ପହଞ୍ଚାଇ ଦେବ ।

ରାଜ୍ୟଧର ପାଖରେ ଆଗରୁ ମନ୍ତ୍ରଚାଳିତ ବିମାନ ତିଆରି ହୋଇ ରହିଥିଲା । ସେ ସେଥିରୁ ଗୋଟିଏ ନରବାହନଦତ୍ତ ଓ ଗୋମୁଖଙ୍କ ପାଇଁ ବାହାର କରି ଦେଲା । ମନର ଗତିରେ ଚାଲୁଥିବା ସେଇ ବିମାନ ସେମାନଙ୍କୁ କର୍ପୂର ଦ୍ୱୀପରେ ଅଳ୍ପ ସମୟ ଭିତରେ ପହଞ୍ଚାଇ ଦେଲା । ବିମାନରୁ ଓହ୍ଲାଇ ସେମାନେ ନଗର ଭିତରେ କିଛି ସମୟ ବୁଲାବୁଲି କଲେ । ତା'ପରେ ଲୋକମାନଙ୍କୁ ରାଜପ୍ରାସାଦରେ ଠିକଣା ପଚାରି ରାଜପ୍ରାସାଦରେ ପହଞ୍ଚିଲେ ।

ରାଜପ୍ରାସାଦ ପାଖରେ ଜଣେ ବୁଢ଼ୀର ଘର ଥିଲା । ଘରଟି ବହୁତ ସୁନ୍ଦର ଦେଖା ଯାଉଥିଲା । ନରବାହନଦତ୍ତ ଗୋମୁଖଙ୍କୁ କହିଲେ– ସଖା ! ଏଇଠି ରହିବା । ଗୋମୁଖ ବୁଢ଼ୀ ସହିତ କଥା ହେଲା । ବୁଢ଼ୀ ସେଇ ଦୁଇଜଣଙ୍କୁ ଘରେ ରଖିବାକୁ ପ୍ରସ୍ତୁତ ହୋଇଗଲା ।

କିଛି ସମୟ ବିଶ୍ରାମ କରିବା ପରେ ବୁଢ଼ୀ ସହିତ ଏଣୁତେଣୁ ଦି'ପଦ କଥାହୋଇ ନରବାହନଦତ୍ତ ପଚାରିଲେ– ମା ! ଏଠିକାର ରାଜାଙ୍କର ନାଁ କ'ଣ ? ତାଙ୍କର ପିଲାପିଲି କେତୋଟି ? ଆମେ ବିଦେଶୀ, ତେଣୁ ପଚାରୁଛୁ ।

ବୁଢ଼ୀ କହିଲା– ବାପା ! ମୁଁ ସବୁ କଥା କହୁଛି । ଏଇଟା କର୍ପୂର ଦ୍ୱୀପ । ଏଠିକାର ରାଜାଙ୍କର ନାଁ କର୍ପୂରକ । ତାଙ୍କର ଅନେକ ଦିନ ହେଲା କିଛି ପିଲାପିଲି ହୋଇ ନଥିଲା । ତେଣୁ ସେ ପିଲା ପାଇଁ ଭଗବାନ ଶିବଙ୍କୁ ପୂଜା କଲେ । ଭଗବାନ ଶିବ ସ୍ୱପ୍ନରେ ଦେଖାଦେଇ ତାଙ୍କୁ କହିଲେ– ପୁଅଠୁଁ ଅଧିକ ସ୍ନେହୀ ଓ ପରମ ରୂପବତୀ ଝିଅଟିଏ ତମର ହେବ । ସେଇ ଝିଅ ଯାହାକୁ ବାହାହେବ, ସେ ଭବିଷ୍ୟତରେ ବିଦ୍ୟାଧରମାନଙ୍କର ସମ୍ରାଟ ହେବ । ତା' ପରେ ତାଙ୍କର ରାଣୀ ବୃଦ୍ଧିକାର୍ଯ୍ୟାଙ୍କର ଗୋଟିଏ ଝିଅ ଜନ୍ମହେଲା । ତା'ର ନାଁ କର୍ପୂରିକା । ସେଇ କର୍ପୂରିକା ଏଇ ନଗରବାସୀଙ୍କ ଆଖିର ଚନ୍ଦ୍ର । ସେ ଯୁବତୀ ହୋଇଯାଇଛି ଓ ରାଜା କର୍ପୂର ତାକୁ ବାହା କରିଦେବା ପାଇଁ ଚାହାଁନ୍ତି । କିନ୍ତୁ ରାଜକୁମାରୀ ଭାରି ଜିଦ୍‌ଖୋର । ସେ କାହାରିକୁ ବାହା ହେବାକୁ ଚାହୁଁ ନାହିଁ । ମୋ' ଝିଅ ତା' ସାଙ୍ଗ । ଏଇକ୍ଷଣି ମୋ ଝିଅ ତାକୁ କାରଣ ପଚାରିଲା– ସଖୀ ! ତୁ ବାହା ହେବାକୁ କାହିଁକି ମନା କରୁଛୁ । ସେ ଉତ୍ତର ଦେଲା– ମୁଁ ମୋ ପୂର୍ବଜନ୍ମ କଥା ଜାଣେ । ମୁଁ ଗୋଟିଏ ହଂସିନୀ ଥିଲି । ସମୁଦ୍ର କୂଳରେ ପଦ୍ମଫୁଲ ଭରି ଗୋଟାଏ ପୋଖରୀ ଥିଲା । ସେଥିରେ ମୁଁ ମୋ ହଂସ ସହିତ ଖେଳୁଥିଲି । ସମୟ ଆସିବାରୁ ମୋ'ର ଛୁଆମାନେ ହେଲେ । ସେମାନେ ଚାଲିବାକୁ ଆରମ୍ଭ କରିଛନ୍ତି କି ନାହିଁ ସମୁଦ୍ରରେ ଲହରୀ ସେମାନଙ୍କୁ ଭସାଇ ନେଇଗଲା । ସେମାନଙ୍କର କିଛି ପତ୍ତା ମିଳିଲାନି । ମୁଁ ଛୁଆମାନଙ୍କ ପାଇଁ କାନ୍ଦି କାନ୍ଦି ସମୁଦ୍ର କୂଳରେ ଥିବା ଶିବଲିଙ୍ଗ ସାମ୍ନାରେ ନଖାଇ ନପିଇ ବସି ରହିଲି । ମୋ ସ୍ୱାମୀ ରାଜହଂସ ଆସି ମୋତେ କହିଲେ– କ'ଣ ମରିଯାଇଥିବା ଛୁଆଙ୍କ ପାଇଁ କାନ୍ଦୁଛ ? ଉଠ । ଆମେ ସାଙ୍ଗହୋଇ ରହିବା ତ ଆହୁରି ଛୁଆ ହେବେ ।

ସ୍ୱାମୀଙ୍କର ନିଷ୍ଠୁର କଥାରେ ମୋର ହୃଦୟ ଜଳିଗଲା । ମୁଁ ଭାବିଲି— ପୁରୁଷ ଜାତିକୁ ଧିକ୍କାର । ନିଜ ଛୁଆମାନଙ୍କ ପାଇଁ ଏମାନଙ୍କ ମନରେ ଟିକିଏ ବି ସ୍ନେହ ନାହିଁ । ଏମିତି ପୁରୁଷମାନଙ୍କ ସହିତ ଆଉ ମୁଁ କେବେ ରହିବି ନାହିଁ । ଏଇଆ ଭାବି ମୁଁ ସମୁଦ୍ରକୁ ଡେଇଁପଡ଼ି ମରିଗଲି । ପୂର୍ବଜନ୍ମରେ ସେଇକଥା ମନେପଡ଼ିବାରୁ ଆଉ ଏଇ ଜନ୍ମରେ ବିବାହ କରିବାକୁ ଚାହେଁ ନାହିଁ ।

ଏହିପରି ରାଜାଙ୍କ ଘରର ସବୁକଥା ଶୁଣାଇ ବୁଢ଼ୀ ନରବାହନଦତ୍ତଙ୍କୁ କହିଲା— ପୁଅ ! ମୁଁ ତୁମଠି ବିଦ୍ୟାଧରମାନଙ୍କ ସମ୍ରାଟ୍ ହେବାର ସବୁ ଲକ୍ଷଣ ଦେଖୁଛି । ମନେ ହେଉଛି ଭଗବାନ ଶିବ ରାଜକୁମାରୀଙ୍କ ପାଇଁ ତମକୁ ପଠାଇଛନ୍ତି ।

ଏହିଭଳି ବୁଢ଼ୀଠୁଁ ସବୁକଥା ଜାଣିବା ପରେ ନରବାହନଦତ୍ତ ସେଦିନ ତା'ଘରେ ବିଶ୍ରାମ କଲେ । ତା' ପରଦିନ ସେ ଗୋମୁଖଙ୍କ ସହିତ ମନ୍ତ୍ରଣା କରି ବାବାଜୀ ବେଶ ହେଲେ । ବାବାଜୀ ବେଶହୋଇ ସେ ବାହାରକୁ ଆସିଲେ ଓ 'ହାୟ ହଂସିନୀ' 'ହାୟ ହଂସିନୀ' ଚିତ୍କାର କରି କାନ୍ଦି କାନ୍ଦି ରାଜପ୍ରାସାଦ ପାଖାପାଖି ବୁଲିବାକୁ ଲାଗିଲେ । ଗୋମୁଖ ମଧ୍ୟ ତାଙ୍କ ସହିତ ଥିଲେ ।

ଏଇ ବିଚିତ୍ର ବାବାଜୀଙ୍କୁ ଦେଖିବାକୁ ଲୋକମାନଙ୍କର ଭିଡ଼ ବଢ଼ିବାକୁ ଲାଗିଲା । ରାଜପ୍ରାସାଦରେ ଦାସୀମାନେ ବି ତାଙ୍କୁ ଦେଖିଲେ । ସେମାନେ ଯାଇ ରାଜକୁମାରୀ କର୍ପୂରିକାଙ୍କୁ ଜଣାଇଲେ ଯେ କେହି ଜଣେ ସୁନ୍ଦର ଟୋକା ବାବାଜୀ 'ହଂସିନୀ' 'ହଂସିନୀ' ଚିତ୍କାର କରି ରାଜପଥ ଉପରେ ଏମୁଣ୍ଡରୁ ସେମୁଣ୍ଡକୁ ବୁଲୁଛି । ରାଜକୁମାରୀ କର୍ପୂରିକାର ବଡ଼ କୌତୂହଳ ହେଲା । ଦାସୀଙ୍କୁ ପଠାଇ ସେ ନରବାହନଦତ୍ତ ଓ ଗୋମୁଖଙ୍କୁ ଅନ୍ତଃପୁର ଭିତରକୁ ଡକାଇ ନେଲା । ନରବାହନଦତ୍ତଙ୍କୁ ଦେଖି ତାକୁ ଲାଗିଲା ଯେମିତି ଭଗବାନ ଶିବ ଭସ୍ମ କରିଥିବା କାମଦେବ ପୁଣି ବଞ୍ଚିଉଠି ତା' ଆଗକୁ ଆସି ଯାଇଛନ୍ତି । ସେ ନରବାହନଦତ୍ତଙ୍କୁ ପଚାରିଲା— ତମେ ହଂସିନୀ ହଂସିନୀ ହୋଇ କାହିଁକି ପାଗଳ ରକମର ହେଉଛ ?

ନରବାହନଦତ୍ତ ଆଖି ମିଟି ମିଟି କରି ରାଜକୁମାରୀଙ୍କୁ ଅନାଇ କେବଳ କହିଲେ— ହାୟ ହଂସିନୀ, ହାୟ ହଂସିନୀ ।

ଗୋମୁଖ ସେତିକିବେଳେ ରାଜକୁମାରୀଙ୍କୁ କହିଲେ— ଭଦ୍ରେ ! ମୁଁ ତମକୁ କହୁଛି । ମୋର ଏଇ ବନ୍ଧୁ ପୂର୍ବ ଜନ୍ମରେ ହଂସଟିଏ ଥିଲା । ସମୁଦ୍ର କୂଳରେ ପଦ୍ମଫୁଲ ଭରି ପୋଖରୀଟିଏ ଥିଲା ଓ ସେ ସେଇ ପୋଖରୀରେ ତା' ହଂସିନୀ ସହିତ ଖେଳୁଥିଲା । ସମୟ ଆସିବାରୁ ସେମାନଙ୍କର ଛୁଆହେଲା । ସେଇ ଛୁଆଗୁଡ଼ାକୁ ସମୁଦ୍ରର ଲହଡ଼ି ଭସାଇ ନେଇଗଲା । ଛୁଆମାନଙ୍କ ଦୁଃଖରେ ତା'ର ହଂସିନୀ ମଧ୍ୟ ସମୁଦ୍ରକୁ ଡେଇଁପଡ଼ି ଜୀବନ ହରାଇ ଦେଲା । ସେଇଠୁଁ ମୋ'ର ବନ୍ଧୁ ତା' ସ୍ତ୍ରୀ ବିଚ୍ଛେଦରେ ବ୍ୟାକୁଳ ହୋଇ ମନେ ମନେ ସ୍ଥିରକଲା ମୁଁ ପର ଜନ୍ମରେ ରାଜକୁମାର ହେବି ଓ ମୋତେ ମୋର ଏଇ ଜନ୍ମର କଥା ମନେ ପଡ଼ିବ, ମୋର ସ୍ତ୍ରୀ ମଧ୍ୟ ରାଜକୁମାରୀ ହେବ ଓ ତା'ର ମଧ୍ୟ ପୂର୍ବଜନ୍ମ କଥା ସ୍ମରଣ ରହିବ । ଏମିତି ସଙ୍କଳ୍ପ କରି ସେ ସମୁଦ୍ରକୁ ଡେଇଁ ଜୀବନ ହରାଇ ଦେଲା । ତା'ପରେ ସେ କୌଶାମ୍ବୀର ରାଜା ଉଦୟନଙ୍କର ପୁଅ ନରବାହନଦତ୍ତ ନାମରେ ଜନ୍ମହେଲା । ତା'ର ଜନ୍ମବେଳେ ଆକାଶବାଣୀ ହେଲା ଯେ ସେ ବିଦ୍ୟାଧରମାନଙ୍କର ସମ୍ରାଟ୍ ହେବ । ବଡ଼ ହେବାପରେ ତା'ର ବାପା ତାକୁ ଯୁବରାଜ ପଦରେ ଅଭିଷେକ କରାଇ ଦେଲେ । ତା'ପରେ ତା'ର ବାହାଘର ମଦନମାଞ୍ଚୁକା ନାମକ ଜଣେ ଦେବକନ୍ୟା ସାଙ୍ଗରେ କରିଦେଲେ । ପୁଣି ରତ୍ନପ୍ରଭା ନାମକ ବିଦ୍ୟାଧର ରାଜକୁମାରୀ ସ୍ୱର୍ଗରୁ ଆସି ତାଙ୍କୁ ବରଣ କଲେ । କିନ୍ତୁ ସେ ତା' ପୂର୍ବଜନ୍ମର ସ୍ତ୍ରୀ ହଂସିନୀକୁ କ୍ଷଣକ ପାଇଁ ଭୁଲିପାରୁ



ନାହିଁ ଆଉ ତା'ରି ନାଁକୁ ଡାକି ଡାକି ପାଗଳଙ୍କ ଭଳି ବୁଲୁଛି । ବଣରେ ଥରେ ବୁଲୁଥିଲା ବେଳେ ଜଣେ ସିଦ୍ଧ ତପସ୍ୱିନୀଙ୍କ ସହିତ ଭେଟ ହେଲା । ସେ ତାକୁ କହିଲେ ଯେ, ତା'ର ପ୍ରାଣପ୍ରିୟା ହଂସିନୀ କର୍ପୂର ସମ୍ଭବ ଦ୍ୱୀପରେ ଜନ୍ମହୋଇଛି । ବାସ୍, ଶୁଣିବା ମାତ୍ରେ ସେ ଆସି ଏଇ ଦ୍ୱୀପରେ ପହଞ୍ଚି ଯାଇଛି ।

ଗୋମୁଖଙ୍କ ମନଗଢ଼ା କପଟ କଥାରେ ରାଜକୁମାରୀ କର୍ପୂରିକାର ମନ ବଦଳିଗଲା । ସେ ଭାବିଲା— ମୁଁ ମୋ ପୂର୍ବଜନ୍ମର ସ୍ୱାମୀ ହଂସ ଉପରେ ଅଯଥା ରାଗିକରି ଅଛି । ମୁଁ ଭୁଲ ବୁଝି ତା'ଉପରେ ବିରକ୍ତ ହୋଇଥିଲି । ସେ ତ ମୋ ଉପରେ ଏତେ ସ୍ନେହ ରଖୁଛି । ଏଇଆ ଭାବି ସେ କହିଲା— ମୁଁ ସେଇ ହଂସିନୀ । ଆର୍ଯ୍ୟପୁତ୍ର ମୋ ପାଇଁ ଏତେ କଷ୍ଟ ସହିଥିବାରୁ ମୁଁ ଧନ୍ୟ । ଏଇକ୍ଷିଣି ସେ ତାଙ୍କ ପ୍ରେମରେ ମୋତେ କିଣି ନେଲେ ।

ଏଇଆ କହି ସେ ନରବାହନଦତ୍ତ ଓ ଗୋମୁଖଙ୍କୁ ଉତ୍ତମ ଖାଦ୍ୟ ଖୁଆଇ ଚର୍ଚ୍ଚାକଲା । କର୍ପୂରିକାର ବାପା-ମା ଖବର ପାଇ ବହୁତ ଖୁସିହେଲେ ଓ ସେଇଦିନ ହିଁ ରାଜକୁମାରୀ ସହିତ ନରବାହନଦତ୍ତଙ୍କ ଧୁମ୍‌ଧାମ୍‌ରେ ବିବାହ ସମ୍ପନ୍ନ କଲେ ।

ବିବାହ ପରେ ନରବାହନଦତ୍ତ କେତେ ଦିନ ବଡ଼ ଆନନ୍ଦରେ କର୍ପୂରସମ୍ଭବ ଦ୍ୱୀପରେ ରହିଲେ । ଦିନେ ସେ କର୍ପୂରିକାଙ୍କୁ କହିଲେ— ଏଥର ଆମେ କୌଶାମ୍ବୀକୁ ଯିବା ।

କର୍ପୂରିକା କହିଲେ— ହିଁ, ଆମେ ଅବଶ୍ୟ କୌଶାମ୍ବୀ ଯିବା । ତମେ ଯେଉଁ ଆକାଶଗାମୀ ବିମାନରେ ଆସିଥିଲ, ସେଇଥିରେ ଯିବା । ସେଇଟା ଯଦି ଛୋଟ ହୁଏ, ତା'ହେଲେ ଆମ ଦ୍ୱୀପରେ ପ୍ରାଣଧର ନାମରେ ଜଣେ ବଢ଼େଇ ରହୁଛି, ସେ ଆଉ ଗୋଟାଏ ବଡ଼ ବିମାନ ତିଆରି କରିଦେବ ।

ନରବାହନଦତ୍ତ 'ହିଁ' କରିବାରୁ କର୍ପୂରିକା ପ୍ରାଣଧରଙ୍କୁ ଡକାଇଲେ । ନରବାହନଦତ୍ତ ଭାବିଲେ ଯେ ରାଜ୍ୟଧରର ପ୍ରାଣଧର ନାମରେ ଭାଇଟିଏ ଥିଲା । ଇଏ ଆଉ ସେଇ ନୁହେଁ ତ ? ପ୍ରାଣଧର ଆସିବା ପରେ ଯେତେବେଳେ କର୍ପୂରିକା ତାଙ୍କର ବଡ଼ ବିମାନଟିଏ ଦରକାର ବୋଲି କହିଲେ, ସେ କହିଲା— ମୁଁ ଆଗରୁ ଗୋଟାଏ ବଡ଼ ବିମାନ ତିଆରିକରି ରଖିଛି । ସେଥିରେ ହଜାରେ ଲୋକ ବସି ପାରିବେ ।

ନରବାହନଦତ୍ତ ତାକୁ ପଚାରିଲେ— ତୁମେ କ'ଣ ରାଜ୍ୟଧରର ଭାଇ ?

ପ୍ରାଣଧର ବିନୟରେ କହିଲା— ହିଁ, ମଣିମା ! ମୁଁ ତା' ଭାଇ । ଆପଣ ତାକୁ କେମିତି ଜାଣିଲେ ?

ନରବାହନଦତ୍ତ ତାକୁ ରାଜ୍ୟଧର ସହିତ ତାଙ୍କର ଭେଟ ବିଷୟରେ ସବୁକଥା କହିଲେ ।

ଶାଶୂ-ଶ୍ୱଶୁରଙ୍କଠୁଁ ବିଦାୟ ନେଇ ଫେରିଲାବେଳେ ନରବାହନଦତ୍ତ ପ୍ରାଣଧରକୁ କହିଲେ— ଆସ, ତମେ ମଧ୍ୟ ଆମ ସାଙ୍ଗରେ ଚାଲ । ବାଟରେ ରାଜ୍ୟଧରକୁ ଦେଖାକରି ଯିବା ।

ପ୍ରାଣଧର ଆନନ୍ଦରେ ଉଚ୍ଛୁଳି ଉଠିଲା ।

ରାଜ୍ୟଧରକୁ ଦେଖା କରିସାରି ନରବାହନଦତ୍ତ ନିଜର ନୂଆ ସ୍ତ୍ରୀ ଓ ପ୍ରଚୁର ଜାନିଯଉତୁକ ଓ ଦାସ-ଦାସୀମାନଙ୍କ ସହିତ କୌଶାମ୍ବୀରେ ପହଞ୍ଚିଲେ । ସେମାନେ କୌଶାମ୍ବୀରେ ପହଞ୍ଚିଲା ମାତ୍ରେ କୌଶାମ୍ବୀର ନଗରବାସୀ ଓ ମହାରାଜ ଉଦୟନ, ବାସବଦତ୍ତା, ମଦନମାଞ୍ଚୁକା ଓ ରତ୍ନପ୍ରଭା ଆଦିଙ୍କର ଆଶ୍ଚର୍ଯ୍ୟ ଓ ଆନନ୍ଦର କୌଣସି ସୀମା ରହିଲା ନାହିଁ । ନରବାହନଦତ୍ତଙ୍କ ଦୁଇ ସ୍ତ୍ରୀ ତାଙ୍କର ସଉତୁଣୀ କର୍ପୂରିକାଙ୍କୁ ନିଜ ଭଉଣୀ ଭଳି ସ୍ନେହକରି ନିଜର କରିନେଲେ ।

ନରବାହନଦତ୍ତ ନିଜ ତିନି ସ୍ତ୍ରୀଙ୍କ ସହିତ କୌଶାମ୍ବୀରେ ଆନନ୍ଦରେ ରହିଲେ ।

# ଅଳଙ୍କାରବତୀ କଥା

ଥରେ ମନ୍ତ୍ରୀ ଓ ବିରାଟ ସେନାବାହିନୀ ସହିତ ରାଜକୁମାର ନରବାହନଦତ୍ତ ଶିକାର କରିବାକୁ ଯାଇଥିଲେ । କୌଣସି ନିର୍ଦ୍ଦିଷ୍ଟ ଦିଗକୁ ଯିବାର ଲକ୍ଷ୍ୟ ନ ଥିବାରୁ ସେ ତାଙ୍କ ଘୋଡ଼ାକୁ ଦଉଡ଼ାଇ ଘଞ୍ଚ ଜଙ୍ଗଲ ଭିତରେ ପଶିଗଲେ । ତାଙ୍କର ମନ୍ତ୍ରୀ ଓ ସେନା ପଛରେ ରହିଗଲେ । କିନ୍ତୁ ସଦା ସତର୍କ ଗୋମୁଖ ତାଙ୍କ ପଛେ ପଛେ ଥିଲେ । ରାଜକୁମାରଙ୍କ ଡାହାଣ ଆଖି ଡେଇଁବା କିଛି ଶୁଭ ଘଟଣା ଘଟିବାକୁ ଯାଉଛି ବୋଲି ତାଙ୍କୁ ସୂଚିତ କଲା । ଏହି ସମୟରେ ଗୋଟିଏ ମଧୁର ସଙ୍ଗୀତ ତାଙ୍କ କାନରେ ବାଜିଲା ଓ ସେ ସେଇ ଧ୍ୱନି ଆଡ଼କୁ ଘୋଡ଼ା ଦଉଡ଼ାଇ ଦେଇ ଗୋଟିଏ ଶିବ ମନ୍ଦିର ପାଖରେ ପହଞ୍ଚିଲେ । ସେ ଘୋଡ଼ାରୁ ଓହ୍ଲାଇ ମନ୍ଦିର ଭିତରେ ପ୍ରବେଶ କଲେ । ସେଠାରେ ସୁନ୍ଦରୀ ତରୁଣୀଟିଏ ଶିବଙ୍କ ବନ୍ଦନା କରୁଥିଲା । ପୂର୍ଣ୍ଣଚନ୍ଦ୍ର ସମୁଦ୍ରରେ ଜୁଆର ତୋଳିଲା ଭଳି ସେଇ ଚନ୍ଦ୍ରମୁଖୀର ଦର୍ଶନ ତାଙ୍କ ଛାତିକୁ ଧଡ଼ ଧଡ଼ କଲା । ସୁନ୍ଦରୀଟି ମଧ ସମାନଭାବେ ରାଜକୁମାରଙ୍କ ସୌନ୍ଦର୍ଯ୍ୟରେ ଆକୃଷ୍ଟ ହେଲା ଓ ଗୀତର ତାଳ ଭୁଲିଗଲା । ଗୋମୁଖ କୁମାରଙ୍କ ମନୋଭାବ ଜାଣିପାରି ସୁନ୍ଦରୀର ଦାସୀମାନଙ୍କୁ ତା'ର ପରିଚୟ ପଚାରିଲେ ।

ଦାସୀମାନେ କିଛି ଉତ୍ତର ଦେବା ପୂର୍ବରୁ ଆକାଶରୁ ଗୋଟିଏ ଲାଲ ଓ ଉଜ୍ଜ୍ୱଳ ଜ୍ୟୋତି ଓହ୍ଲାଇଲା ଏବଂ ଜଣେ ବୟସ୍କା ମହିଳା ଆସି ସୁନ୍ଦରୀ ପାଖରେ ବସିଲେ । ସମସ୍ତେ ସମ୍ମାନ ଜଣାଇବାକୁ ଠିଆହୋଇ ପଡ଼ିଲେ । ମା' ତାଙ୍କ ଝିଅକୁ ଆଶୀର୍ବାଦ ଦେଇ କହିଲେ— କୌଣସି ବାଧାବିଘ୍ନ ନଜପୁଛି ବିଦ୍ୟାଧରମାନଙ୍କ ମହାରାଜା ତୋ'ର ସ୍ୱାମୀ ହୁଅନ୍ତୁ ।

ନରବାହନଦତ୍ତ ଆଗେଇ ଆସି ବୟସ୍କା ମହିଳାଙ୍କୁ ନଇଁ ସମ୍ମାନ ଜଣାଇଲେ । ବଦାନ୍ୟ ମହିଳା ତାଙ୍କୁ ଆଶୀର୍ବାଦ ଦେଲେ ।

ରାଜକୁମାର ମହିଳାଙ୍କୁ ପଚାରିଲେ— ମା ଏଇ ସୁନ୍ଦରୀ କିଏ ଓ ସେ ଆପଣଙ୍କର କ'ଣ ହୁଅନ୍ତି ? ମହିଳା ଜଣକ ଉତ୍ତର ଦେଲେ— ହିମାଳୟର ଗୋଟିଏ ଶୃଙ୍ଗରେ ସୁନ୍ଦରପୁର ନାମରେ ନଗରଟିଏ ଅଛି । ଜଣେ ବିଦ୍ୟାଧର ରାଜା ଅଳଙ୍କାରଶୀଳ ସେଇ ନଗରକୁ ଶାସନ କରନ୍ତି । ସେ ସମ୍ଭ୍ରାନ୍ତ ଓ ଜ୍ଞାନୀ । କାଞ୍ଚନପ୍ରଭା ତାଙ୍କ ରାଣୀ । ସମୟ କ୍ରମେ ତାଙ୍କର ପୁଅଟିଏ ହେଲା । ତା'ର ଜନ୍ମପରେ ପାର୍ବତୀ ରାଜାଙ୍କୁ ସ୍ୱପ୍ନରେ କହିଲେ ସେଇ ପୁଅ ଶୁଦ୍ଧ ମନୋଭାବର ହେବ, ତେଣୁ ତା'ର ନାମ ଧର୍ମଶୀଳ । ସେ ସମସ୍ତ ଶାସ୍ତ୍ରରେ ପାରଙ୍ଗମ । ସେ ଯୁବାବସ୍ଥା ପ୍ରାପ୍ତ ହୁଅନ୍ତେ ଅଳଙ୍କାରଶୀଳ ତାଙ୍କୁ ଯୁବରାଜ କଲେ । ଧର୍ମରେ ସଦାବେଳେ ମନ ଦେଇଥିବା ଯୁବରାଜ ତାଙ୍କ ବାପାଙ୍କୁ ଶାସନକାର୍ଯ୍ୟରେ ସାହାଯ୍ୟ କରନ୍ତି ଓ ପଦ୍ମଫୁଲର ହୃଦୟରେ ସୂର୍ଯ୍ୟ ସ୍ଥାନ ପାଇଲା ଭଳି ସେ ପ୍ରଜାମାନଙ୍କ ହୃଦୟରେ ସ୍ଥାନ ପାଇଛନ୍ତି । ପରେ ରାଣୀ କାଞ୍ଚନପ୍ରଭା ଝିଅଟିଏ ଜନ୍ମଦେଲେ ଓ ଝିଅର ଜନ୍ମବେଳେ ଦୈବବାଣୀ ହେଲା ଯେ ଝିଅଟି ମହାରାଜା ନରବାହନଦତ୍ତଙ୍କର ରାଣୀ ହେବ । ବାପା ତା' ନାଁ ଦେଲେ ଅଳଙ୍କାରବତୀ । ଶୁକ୍ଳ ପକ୍ଷର ଚନ୍ଦ୍ରମା ଭଳି ବଢ଼ି ଅଳଙ୍କାରବତୀ ଯୁବତୀ ହେଲା ଓ ସବୁ କଳା ଓ ଶାସ୍ତ୍ରରେ ପାରଙ୍ଗମ ହେଲା ।

ପ୍ରତିଦିନ ଅଳଙ୍କାରବତୀ ଶିବ ମନ୍ଦିରକୁ ଆସି ଶିବଙ୍କର ବନ୍ଦନା ଗାଏ । ଦିନେ ତା' ଭାଇ ଯୁବରାଜ ଧର୍ମଶୀଳ ବାପାଙ୍କୁ କହିଲେ— ବାପା ! କ୍ଷଣଭଙ୍ଗୁର ସାଂସାରିକ ସୁଖପ୍ରତି ମୁଁ ଆସକ୍ତ ନୁହେଁ । ଏ ଜୀବନରେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଦୁଃଖ ଛଡ଼ା କ'ଣ ଅଛି ? ବ୍ୟାସଙ୍କ କଥା କ'ଣ



ଆପଣଙ୍କର ମନେ ନାହିଁ— ''ଏଇ ସଂସାରର ସମସ୍ତ ପଦାର୍ଥ ବଢ଼ନ୍ତି କେବଳ ଛିଡ଼ିବା ପାଇଁ; ଉଚ୍ଚକୁ ଉଠନ୍ତି କେବଳ ଭୂମିରେ ଖସି ପଡ଼ିବାକୁ; ମିଳିତ ହୁଅନ୍ତି କେବଳ ବିଚ୍ଛିନ୍ନ ହେବା ପାଇଁ; ଜନ୍ମ ନିଅନ୍ତି କେବଳ ମରିବା ପାଇଁ; ଭାଗ୍ୟ ଅନୁକୂଳ ହୁଏ କେବଳ ଦୁଃଖ ପାଇଁ ।'' ରାଜା ! ଏଇ ହେଉଛି ସବୁ ସାଂସାରିକ ପଦାର୍ଥର ଗୁଣ । ଅନ୍ତର୍ଦୃଷ୍ଟି ଥିବା ମଣିଷ ପାଖରେ ଏସବୁର ଆକର୍ଷଣ କ'ଣ ? ଧର୍ମ କେବଳ ତାକୁ ଛାଇପରି ଅନୁସରଣ କରୁଥିବା ତା'ର ଏକମାତ୍ର ବନ୍ଧୁ ଓ ସମର୍ଥୀୟ ।

ଅଳଙ୍କାରଶୀଳ ଭାବନାଗ୍ରସ୍ତ ହେଲେ । ତାଙ୍କ ଆଖି ଲୁହରେ ଭରିଗଲା । ସେ କହିଲେ— ପୁଅ ! ତମେ ପିଲାଲୋକ । ସେଇ ସବୁ ବିଷୟରେ ଭାବିବା ସମୟ ତମର ଆସିନାହିଁ । ଶାସ୍ତ୍ରରେ କୁହାଯାଇଛି ଜଣେ ଗୃହସ୍ଥ ଭାବରେ ଜୀବନ ବିତାଇବା ପରେ ତପସ୍ୟା କରିବ । ଧର୍ମ ପଥରେ ଜଣେ କ୍ଷତ୍ରୀୟ ତା'ର ରାଜ୍ୟ ଶାସନ କରିବ ଓ ପ୍ରୌଢ଼ ଅବସ୍ଥାରେ ସଂସାରକୁ ତ୍ୟାଗକରି ବଣକୁ ଯାଇ ତପସ୍ୟା କରିବ ।

ଧର୍ମଶୀଳ ଉତ୍ତର ଦେଲା— ସଂସାର ତ୍ୟାଗ ପାଇଁ ବୟସର କୌଣସି ନିୟମ ନାହିଁ । ଈଶ୍ୱରଙ୍କ ଆଶୀର୍ବାଦ ଥିଲେ ବାଳକଟିଏ ଶାସ୍ତ୍ରଲାଭ କରିପାରେ ଓ ତପସ୍ୟା କରିପାରେ । ବୟସ୍କ ହେଲେ ବି ଜଣେ ବିଶୃଙ୍ଖଳମନା ତପସ୍ୟାର କଥା କେବେ ଭାବେ ନାହିଁ । ମୋର ରାଜା ହେବାକୁ ବା ବିବାହ କରିବାକୁ କୌଣସି ଇଚ୍ଛା ନାହିଁ । ମଣିଷ ଜୀବନ ପାଇ ମୁଁ ଭାବେ ଜୀବନର ଲକ୍ଷ୍ୟ ପୂରଣ ପାଇଁ ମୋର ସମସ୍ତ ସମୟ ଶିବଙ୍କ ପୂଜାରେ ବିତାଇବା ଉଚିତ ।

ପୁଅକୁ ବୁଝାଇ ପାରିବେ ନାହିଁ ଜାଣିପାରି ରାଜା ଅଳଙ୍କାରଶୀଳ ସଚେତନ ହେଲେ । ସେ ଗରୀବ ବ୍ରାହ୍ମଣମାନଙ୍କୁ ବହୁ ଦାନକଲେ ଓ ସିଦ୍ଧାନ୍ତ ନେଲେ ଯେ ତପସ୍ୟା କରିବାକୁ ସେ ତାଙ୍କ ପୁଅକୁ ଅନୁସରଣ କରିବେ । ରାଜ୍ୟ ଛାଡ଼ି ଗଲାବେଳେ ସେ ତାଙ୍କ ରାଣୀ କାଞ୍ଚନପ୍ରଭାଙ୍କୁ କହିଲେ— ତମେ ନଗରରେ ରୁହ ଓ ତମ ଝିଅର ଯତ୍ନନିଅ । ବର୍ଷକ ପରେ, ଠିକ ଏଇ ଦିନଟି ଶୁଭ ଦିନ । ସେଇଦିନ ମୁଁ ମୋ ଝିଅକୁ ନରବାହନଦତ୍ତଙ୍କ ସହ ବାହା ଦେବି । ଆମର ଜ୍ୱାଇଁ ରାଜା ହେବେ ଓ ଏଇ ନଗରକୁ ଶାସନ କରିବେ ।

ତା'ପରେ ସେ ତାଙ୍କ ରାଣୀଙ୍କୁ ଶପଥ କରାଇ ନଗରରେ ରଖାଇଲେ ଓ ବଣକୁ ଚାଲିଗଲେ । ସ୍ୱାମୀଙ୍କ ଇଚ୍ଛା ଅନୁଯାୟୀ ରାଣୀ କାଞ୍ଚନପ୍ରଭା ନଗରରେ ରହିଲେ ଓ ତାଙ୍କ ଝିଅର ଯତ୍ନ ନେଲେ । ଅଳଙ୍କାରବତୀ ତା' ମାଆଙ୍କ ସହ ପ୍ରତିଦିନ ଆସି କିଛି ସମୟ ଶିବଙ୍କ ମନ୍ଦିରରେ କଟାଏ । ତାଙ୍କର ଦିବ୍ୟ ଜ୍ଞାନ ପ୍ରାପ୍ତି ଦ୍ୱାରା ସେ ଝିଅକୁ କାଶ୍ମୀରର ସ୍ୱୟମ୍ଭୁ କ୍ଷେତ୍ରର ମହେଶ୍ୱରଙ୍କୁ ଆରାଧନା କରିବାକୁ କହିଥିଲେ । ସେଇଠାରେ ରାଜା ନରବାହନଦତ୍ତଙ୍କ ସହିତ ତା'ର ଭେଟ ହେବ । ତା'ପରଠୁ ସେ ନନ୍ଦୀ, ମହାଦେବଗିରୀ, ଅମର ପର୍ବତ ଓ ସୁରେଶ୍ୱର ପର୍ବତରେ ଶିବଙ୍କୁ ନିୟମିତ ଆରାଧନା କରେ ଓ ଆରାଧନା ଶେଷ ବେଳକୁ ତା'ର ମା' ଆସନ୍ତି । ହେ କମନୀୟ କାନ୍ତି ରାଜକୁମାର ! ଏଇ ସୁନ୍ଦରୀ ହେଉଛି ଅଳଙ୍କାରବତୀ ଆଉ ମୁଁ ତା' ମା' କାଞ୍ଚନପ୍ରଭା । ଆଜି ସେ ମୋତେ ନଜଣାଇ ଏଠାକୁ ଚାଲି ଆସିଛି । ଆଉ ଦିବ୍ୟଜ୍ଞାନ ଯୋଗୁ ସେ ଏଠାକୁ ଆସିବା ଓ ତମେ ଆସିବା ମୁଁ ଜାଣିପାରିଲି ।

ବର୍ତ୍ତମାନ ତମେ କୌଶାମ୍ବୀ ଫେରିଯାଅ । ଖୁବ୍ କମ୍ ଦିନ ଭିତରେ ମୋ ସ୍ୱାମୀ ତାଙ୍କ ପୁଅ ସହିତ ବଣରୁ ଫେରିଆସିବେ ଓ ଦୈବୀବାଣୀ ସ୍ଥିରୀକୃତ ଦିନ ତୁମମାନଙ୍କର ବିବାହ ଉତ୍ସବ ପାଳନ କରାଯିବ ।

କଥା ଶେଷକରି କାଞ୍ଚନପ୍ରଭା ତାଙ୍କ ଝିଅ ସହ ଯିବାକୁ ବାହାରନ୍ତେ ଉଭୟ ରାଜକୁମାରୀ ଓ ରାଜକୁମାର ନରବାହନଦତ୍ତ ପରସ୍ପରଠାରୁ ବିଚ୍ଛିନ୍ନ ହେବା ପାଇଁ ଅନିଚ୍ଛା ବିଷୟରେ ଜାଣିପାରିଲେ ।

କାରଣ ଉଭୟଙ୍କ ଆଖି ଲୁହରେ ଭରି ଯାଇଥିଲା । ରାଣୀ କୋମଳ ସ୍ୱରରେ କହିଲେ— ଦୀର୍ଘଦିନର ବିଚ୍ଛେଦକୁ ସାହସୀ ଲୋକ ସହିପାରେ । ଆଶ୍ଚର୍ଯ୍ୟ ଯେ ତୁମେମାନେ ଅଳ୍ପଦିନର ବିଚ୍ଛେଦବି ସହି ପାରୁନାହଁ । ବହୁ ବାଧାବିଘ୍ନର ସମ୍ମୁଖୀନ ହୋଇଥିବା ମହାପ୍ରଭୁ ରାମଚନ୍ଦ୍ର ଓ ମହାଦେବୀ ସୀତାଙ୍କ କଥା ତ ତମେମାନେ ଶୁଣିଥିବ । ଆଉ ପୁଅ, ତମେ ତ ଯୁବକ ଓ ସାହସୀ ।

ରାଣୀଙ୍କ କଥା ଶୁଣି ନରବାହନଦତ୍ତ ନିଜକୁ ସମ୍ଭାଳି ନେଲେ ଓ କାଞ୍ଚନପ୍ରଭାଙ୍କ ଠାରୁ ବିଦାୟ ନେଇ ଗୋମୁଖଙ୍କ ସହିତ କୌଶାମ୍ବୀକୁ ଫେରି ଆସିଲେ ।

ଅଳ୍ପ କେତେ ଦିନପରେ ସକାଳର ନିତ୍ୟକର୍ମ ସାରି ନରବାହନଦତ୍ତ ତାଙ୍କ ବନ୍ଧୁମାନଙ୍କ ଗହଣରେ ଥିବାବେଳେ କାଞ୍ଚନପ୍ରଭା ତାଙ୍କ ସ୍ୱାମୀ ପୁଅ ଓ ଝିଅଙ୍କ ସହିତ ଆସି ପହଞ୍ଚିଲେ । ରାଜକୁମାରଙ୍କ ମନ୍ତ୍ରୀମାନେ ସେମାନଙ୍କୁ ଅଭ୍ୟର୍ଥନା ଜଣାଇଲେ । ଏହା ଭିତରେ ହଜାର ହଜାର ବିଦ୍ୟାଧର ବିବାହ ଉତ୍ସବ ପାଇଁ ମହଣ ମହଣ ସୁନା, ବହୁମୂଲ୍ୟ ରତ୍ନ ଓ ଅନ୍ୟାନ୍ୟ ସାମଗ୍ରୀ ଧରି ଆକାଶରୁ ଓହ୍ଲାଇଲେ । ରାଜା ବତ୍ସ ତାଙ୍କ ରାଣୀଙ୍କ ସହ ମଧ୍ୟ ଆସି ପହଞ୍ଚିଲେ । ରାଜା ବତ୍ସଙ୍କ ଠାରୁ ଅନୁମତି ନେଇ ଅଳଙ୍କାରଶୀଳ ତାଙ୍କ ସେବକମାନଙ୍କ ସାହାଯ୍ୟରେ ବିବାହ ଉତ୍ସବର ଆୟୋଜନ କଲେ । ଚିନ୍ତା କରିବା ମାତ୍ରେ ଧଳା ପରଦା ଓ ଫୁଲରେ ସଜ୍ଜିତ ସୁନାର ବେଦୀ ପ୍ରସ୍ତୁତ ହୋଇଗଲା । ଅଳଙ୍କାରଶୀଳ ତାଙ୍କ ଝିଅ ଅଳଙ୍କାରବତୀଙ୍କ ସହ ନରବାହନଦତ୍ତଙ୍କ ବିବାହ କାର୍ଯ୍ୟ ସମ୍ପନ୍ନ କଲେ । ହଜାର ହଜାର ମଣିଷ ଓ ବିଦ୍ୟାଧର ଦର୍ଶକମାନେ ଆନନ୍ଦରେ ନାଚିଲେ ଓ ଗୀତଗାଇଲେ । ରାଜା ବହୁତ ଗୁଡ଼ାଏ ଉପହାର ଓ ସେବକ ପାଇଲେ । ଅଳଙ୍କାରବତୀଙ୍କୁ ସଙ୍ଗୀ ଦେବାକୁ ଓ ସେବା କରିବାକୁ ଏକହଜାର ସୁନ୍ଦରୀ ଯୁବତୀଙ୍କୁ ଉପହାର ଦିଆଗଲା ।

ରାଜକୁମାର, ତାଙ୍କ ରାଣୀ ଓ ବନ୍ଧୁମାନଙ୍କ ମେଳରେ ସୁଖରେ ଦିନ କାଟିଲେ ।

ଦିନେ ସକାଳେ ସେମାନେ ସମସ୍ତେ ଏକାଠି ହେଲେ । ପରେ ରାଜକୁମାର ଓ ତାଙ୍କ ଯୁବରାଣୀମାନଙ୍କ ମନୋରଞ୍ଜନ ପାଇଁ ଗୋମୁଖ ଗପଟିଏ କହିବାକୁ ଲାଗିଲେ :

## ଅନଙ୍ଗରତି କଥା

ଶୂରପୁର ନାମରେ ନଗରଟିଏ ଥିଲା । ଏହି ନଗରର ବାସିନ୍ଦାମାନେ ବୀର ଥିଲେ । ନଗରର ରାଜା ମହାବର୍ଷ ଜଣେ ମହାନ ଯୋଦ୍ଧା ଥିଲେ ଓ ଲୋକମାନେ ତାଙ୍କୁ ଖୁବ୍ ଆଦର ଓ ସମ୍ମାନ କରୁଥିଲେ । ପାର୍ବତୀଙ୍କ ଦୟାରୁ ତାଙ୍କ ରାଣୀ ପଦ୍ମରତି ଝିଅଟିଏ ଜନ୍ମ ଦେଲେ । ଯୌବନପ୍ରାପ୍ତି ପରେ ସେଇ ଝିଅ ଅନଙ୍ଗରତି ନିଜର ସୌନ୍ଦର୍ଯ୍ୟ ଯୋଗୁ ଗର୍ବିତା ହୋଇ ବିବାହ କରିବାକୁ ମନା କରିଦେଲା । ସେ ଶ୍ରେଷ୍ଠ ଯୋଦ୍ଧା ଓ ଗୋଟିଏ ଶାସ୍ତ୍ରରେ ପାରଦର୍ଶୀଙ୍କୁ ହିଁ କେବଳ ବିବାହ କରିବ ବୋଲି ରାଜାଙ୍କୁ ଜଣାଇଲା । ରାଜକୁମାରୀ ରଖିଥିବା ସର୍ତ୍ତ ଚାରିଆଡ଼କୁ ବ୍ୟାପିଗଲା ।

ଦିନେ ଶୂରପୁରକୁ ଚାରିଜଣ ବୀର ଆସିଲେ । ସେମାନଙ୍କୁ ପ୍ରକୃତରେ ବୀର କୁହାଯାଏ । ସେମାନେ ମଧ୍ୟ ଗୋଟିଏ ଗୋଟିଏ ଶାସ୍ତ୍ରରେ ପାରଦର୍ଶୀ ଥିଲେ । ସେମାନେ ରାଜାଙ୍କୁ ଭେଟିବାକୁ ଚାହିଁଲେ ଓ ଦ୍ୱାରପାଳ ଅନୁମତି ନେଇ ସେମାନଙ୍କୁ ରାଜାଙ୍କ ସମ୍ମୁଖକୁ ନେଇଗଲା । ରାଜକୁମାରୀଙ୍କ ଉପସ୍ଥିତିରେ ରାଜା ସେମାନଙ୍କୁ ସେମାନଙ୍କ ନାମ, ବଂଶ ଓ ଯୋଗ୍ୟତା ବିଷୟରେ ପଚାରିଲେ ।

ଜଣେ ଉତ୍ତର ଦେଲା— ମହାଭାଗ ! ମୋ ନାଁ ପଞ୍ଚପଟ୍ଟିକ ଓ ମୁଁ ଶୂଦ୍ର । ମୁଁ କୁଶଳୀ ବୁଣାକାର । ମୁଁ ଦିନକୁ ପାଞ୍ଚଯୋଡ଼ା ଧୋତି ବୁଣିପାରେ । ସେଥିରୁ ଯୋଡ଼େ ଧୋତି ମୁଁ ବ୍ରାହ୍ମଣଙ୍କୁ ଦାନକରେ,



ଦ୍ୱିତୀୟ ଯୋଡ଼ ମୁଁ ଈଶ୍ୱରଙ୍କୁ ଉତ୍ସର୍ଗ କରେ, ତୃତୀୟ ଯୋଡ଼ଟି ମୁଁ ନିଜେ ପିନ୍ଧେ, ଚତୁର୍ଥ ଯୋଡ଼କୁ ମୋ ସ୍ତ୍ରୀକୁ ଦିଏ ଓ ପଞ୍ଚମ ଯୋଡ଼କୁ ବିକି ସୁଖରେ ଚଳେ ।

ଦ୍ୱିତୀୟ ଜଣକ କହିଲା— ମହାରାଜ ! ମୋ ନାଁ ଭାଷଜ୍ଞ ଓ ମୁଁ ବୈଶ୍ୟ । ମୁଁ ସବୁ ପଶୁ ଓ ପକ୍ଷୀଙ୍କ ଭାଷା ବୁଝିପାରେ ।

ତୃତୀୟ ଜଣକ କହିଲା— ମହାଶୟ ! ମୋ ନାଁ ଖଡ୍ଗଧର ଓ ମୁଁ କ୍ଷତ୍ରିୟ । ଖଣ୍ଡା ଯୁଦ୍ଧରେ ମୋ ଠାରୁ କେହି ବେଶୀ ଚମତ୍କାରିତା ଦେଖାଇ ପାରିବେ ନାହିଁ କି ମୋତେ ହରାଇ ପାରିବେ ନାହିଁ ।

ଚତୁର୍ଥ ଜଣକ କହିଲା— ମହାରାଜ ! ମୁଁ ବ୍ରାହ୍ମଣ । ମୁଁ ପାର୍ବତୀଙ୍କ ଦୟାବଳରୁ ପ୍ରାପ୍ତ ତନ୍ତ୍ରଜ୍ଞାନ ଦ୍ୱାରା ମୃତ ସ୍ତ୍ରୀଲୋକକୁ ବଞ୍ଚେଇ ଦେଇ ପାରେ । ମୋ ନାଁ ଜୀବଦତ୍ତ ।

ସାରାଂଶରେ ବ୍ରାହ୍ମଣ ବ୍ୟତୀତ ଅନ୍ୟ ସମସ୍ତେ ସେମାନଙ୍କ ନିଜ ସୌନ୍ଦର୍ଯ୍ୟ, ବୀରତ୍ୱ ଓ ସାହସ ବିଷୟରେ ବଢ଼େଇ କରି କହିଲେ । ଦେଖିବାକୁ ସୁନ୍ଦର ହୋଇ ନଥିବା ବ୍ରାହ୍ମଣ ତା'ର ଅନ୍ୟ ଗୁଣଗୁଡ଼ିକ ବିଷୟରେ କହିଲା ।

ରାଜା ସେମାନଙ୍କର ରହିବା ଓ ଖାଇବା ବ୍ୟବସ୍ଥା କରି ସେମାନଙ୍କୁ ଅତିଥିଶାଳାକୁ ପଠାଇ ଦେଲେ ।

ଚାରି ବୀର ଚାଲିଗଲା ପରେ ରାଜା ତାଙ୍କ ଝିଅକୁ ତା'ର ମତାମତ ପଚାରିଲେ । ସେ ସେମାନଙ୍କୁ ସିଧାସଳଖ ପ୍ରତ୍ୟାଖ୍ୟାନ କରିଦେଇ ତା'ର ପ୍ରତ୍ୟାଖ୍ୟାନ କରିବାର କାରଣ କହିଲା— ବାପା ! ଜଣେ ଶୂଦ୍ର ଓ ବୁଣାକାର । ଆଉ ଜଣେ ପଶୁ-ପକ୍ଷୀଙ୍କ ଭାଷା ବୁଝିପାରୁଥିବା ବୈଶ୍ୟ । ସେମାନେ କେମିତି ମୋ ଯୋଗ୍ୟ ହୋଇପାରିବେ ? ତୃତୀୟ ଜଣକ କ୍ଷତ୍ରିୟ ହେଲେ ବି ଗରୀବ ଓ ସେ କେବଳ ଚାକିରୀ କରି ହିଁ ବଞ୍ଚିବ । ମୁଁ କେମିତି ତା'ସହିତ ସୁଖରେ ରହିପାରିବି ? ଆଉ ଚତୁର୍ଥ ଜଣକ ବ୍ରାହ୍ମଣ ଓ ତା'ର ଧର୍ମଜ୍ଞାନ ନାହିଁ । ତମେ ତାକୁ ସେଥିପାଇଁ ଦଣ୍ଡଦେବ । ତମର ପ୍ରଜାମାନେ ଉଚିତ କାମ କରନ୍ତୁ ଦେଖିବା ତମର କର୍ତ୍ତବ୍ୟ । ନିଜ କର୍ତ୍ତବ୍ୟକୁ ପ୍ରାଣପଣେ ପାଳନ କରୁଥିବା ଜଣେ ବୀର ଜଣେ ଖଣ୍ଡାଧାରୀ ଠାରୁ ଶ୍ରେଷ୍ଠ । ଜଣେ ଧର୍ମରକ୍ଷକ ହଜାରେ ଖଡ୍ଗଧରଙ୍କୁ ଉଚିତ ମାର୍ଗ ଦେଖାଇ ପାରିବେ ।

ରାଜା ଧୈର୍ଯ୍ୟ ସହକାରେ ଝିଅର ଯୁକ୍ତି ଶୁଣି ତାକୁ ଅନ୍ତଃପୁରକୁ ପଠାଇ ଦେଲେ ଓ ଦରବାର ଲାଗି ସକାଳର ବାକିଥିବା କାମ ଶେଷ କରିବାକୁ ଚାଲିଗଲେ ।

ପରଦିନ ଚାରିଜଣ ବୀର ଅତିଥିଶାଳା ଛାଡ଼ି ନଗର ଦେଖିବାକୁ ନଗର ଭିତରେ ବୁଲୁଥିଲେ । ହଠାତ୍ ହାତୀଟିଏ ରାଜାଙ୍କ ହାତୀଶାଳରୁ ଖସିଯାଇ ରାସ୍ତା ଉପରକୁ ମାଡ଼ି ଆସିଲା । ଭୟରେ ଲୋକମାନେ ପ୍ରାଣ ବିକଳରେ ଏଣେ ତେଣେ ଦଉଡ଼ିଲେ । ଗଣ୍ଡଗୋଳରେ କେତେଜଣ ହାତୀ ପାଦତଳେ ଚାପିହୋଇ ମଲେ । ହାତୀ ନଗରରେ ବୁଲୁଥିବା ଚାରି ବୀରଙ୍କୁ ମଧ୍ୟ ଆକ୍ରମଣ କଲା । ହାତୀ ଆକ୍ରମଣ କରିବାରୁ ଖଡ୍ଗଧର ତା'ର ବନ୍ଧୁମାନଙ୍କୁ ରାସ୍ତାକଡ଼ରେ ଠିଆହୋଇ କେବଳ ଉପଭୋଗ କରିବାକୁ କହିଲା । ତା'ପରେ ସେ ହାତୀର ଶୁଣ୍ଢକୁ ଧରି ଖଣ୍ଡାର ଗୋଟିଏ ଚୋଟରେ କାଟି ପକାଇଲା । ତା'ପରେ ସେ ହାତୀର ଦୁଇଗୋଡ଼ ମଝିରେ ପଶିଯାଇ ହାତୀର ପଛପଟକୁ ଚାଲିଗଲା ଖଣ୍ଡାରେ ଗୋଟିଏ ଗୋଟିଏ ଚୋଟରେ ତା'ର ପଛ ଦୁଇ ଗୋଡ଼କୁ କାଟି ପକାଇଲା । ହାତୀ କ୍ରୋଧରେ ଗର୍ଜନ କରି ତଳେ ପଡ଼ି ଗଡ଼ି ଗଡ଼ି ମରିଗଲା ।

ତା' ପରଦିନ ରାଜା ସେଇ ଚାରିବୀର ଓ କେତେକ ଶିକାରୀଙ୍କୁ ସାଙ୍ଗରେ ନେଇ ଜଙ୍ଗଲକୁ ଶିକାର କରିବାକୁ ଚାଲିଗଲେ । ରାଜା ଓ ତାଙ୍କ ଶିକାରୀ ଦଳ ବାଘ, ଭାଲୁ ଓ ସିଂହମାନଙ୍କୁ ମାରିଲେ ।

ହାତାଟି ଜୋର୍‌ରେ ରଡ଼ି କରିବାରୁ ତା' ରଡ଼ି ଶୁଣି କେତୋଟି ସିଂହ ଗୁମ୍ଫାରୁ ବାହାରି ଆସି ଶିକାରୀ ଦଳଙ୍କୁ ଆକ୍ରମଣକଲେ । ଖଡ୍‌ଗଧର ତା'ର ଖଣ୍ଡାରେ ଗୋଟିଏ ଚୋଟରେ ଗୋଟିଏ ସିଂହକୁ ଦୁଇଖଣ୍ଡ କରିଦେଲା । ଆଉ ଗୋଟିଏ ସିଂହର ପଛ ଦୁଇ ଗୋଡ଼କୁ ଧରି ବୁଲାଇ ବୁଲାଇ ସିଂହଟିକୁ ପଥର ଉପରେ ଏତେ ଜୋର୍‌ରେ କଚାଡ଼ି ଦେଲା ଯେ ସିଂହଟି ମରିଗଲା । ଅନ୍ୟ ତିନି ବୀର– ପଞ୍ଚପଟ୍ଟିକ, ଭାଷଜ୍ଞ ଓ ଜୀବଦତ୍ତ କେତେକ ସିଂହ ଓ ବାଘଙ୍କୁ ପାଦରେ ଲଢ଼େଇକରି ମାରିଲେ । ରାଜା ସେମାନଙ୍କ ଶକ୍ତି ଓ ସାହସ ପାଇଁ ସେମାନଙ୍କୁ ପ୍ରଶଂସା କରି ଶିକାର ଶେଷକରି ସଦଳବଳ ରାଜଧାନୀକୁ ଫେରି ଆସିଲେ । ଚାରି ବୀର ଅତିଥିଶାଳାକୁ ଚାଲିଗଲେ ।

ରାଜା ବିଶ୍ରାମ କରୁଥିବା ବେଳେ ତାଙ୍କ ଝିଅକୁ ନଗରରେ ଓ ଶିକାରରେ ଘଟିଥିବା ଘଟଣା ଓ ସେଥିରେ ବୀରମାନଙ୍କର ବୀରତ୍ୱ କଥା କହିଲେ । ରାଜା ତାଙ୍କ ଝିଅକୁ କହିଲେ ଯେ ପଞ୍ଚପଟ୍ଟିକ ଓ ଭାଷଜ୍ଞ ନୀଚ ଜାତିର ହୋଇଥିବାରୁ ଓ ବ୍ରାହ୍ମଣ ଜୀବଦତ୍ତ ଦେଖିବାକୁ କୁତ୍ସିତ ଓ ନିଜ କର୍ମରେ ଅବହେଳା କରୁଥିବାରୁ ସେମାନଙ୍କୁ ବାଦ୍ ଦିଆଯାଇପାରେ, ଦେଖିବାକୁ ସୁନ୍ଦର ଓ ସାହସୀ କ୍ଷତ୍ରିୟ ଖଡ୍‌ଗଧରକୁ ସେ ଚାହିଁଲେ ବିବାହ କରିପାରେ । ସେ ଆହୁରି ମଧ୍ୟ ପ୍ରତିଶ୍ରୁତି ଦେଲେ ଯେ ଖଡ୍‌ଗଧରକୁ ସେ ରାଜ୍ୟର କେତେକ ଅଂଶ ଦେଇ ତାକୁ ରାଜା କରିଦେବେ ଓ ତାଙ୍କର ବିଶ୍ୱାସ ସେ ରାଜା ହେଲେ ପଡ଼ୋଶୀ ରାଜ୍ୟସବୁ ଜୟକରି ତା' ରାଜ୍ୟର ସୀମା ବହୁତ ବଢ଼ାଇବ । ଅନଙ୍ଗରତି ଉତ୍ତର ଦେଲା, ''ବାପା, ତା'ହେଲେ ସେମାନଙ୍କୁ ଦରବାରକୁ ଡକାଅ, ଜ୍ୟୋତିଷମାନଙ୍କ ସହିତ ପରାମର୍ଶକରି ଆମର ଅନୁକୂଳ ଗ୍ରହ ନକ୍ଷତ୍ର ନିର୍ଣ୍ଣୟ କର ।

ରାଜା ବୀରମାନଙ୍କୁ ଡକାଇ ଜ୍ୟୋତିଷଙ୍କୁ ଦେଖାଇଲେ । ରାଜଜ୍ୟୋତିଷ ସେମାନଙ୍କର କର ଓ କପାଳ ଦେଖି ସେମାନଙ୍କର ଗ୍ରହ ନକ୍ଷତ୍ର ନିର୍ଣ୍ଣୟ କରି ବିସ୍ମୟରେ ଆଖି ଉଠାଇ କହିଲେ, ''ମହାରାଜ ! ଦୟାକରି ରାଗିବେ ନାହିଁ । ମୁଁ ସତ କହୁଛି । ଆପଣଙ୍କ ଝିଅଙ୍କ ସହିତ ସେମାନଙ୍କର କାହାରି ଗ୍ରହ-ନକ୍ଷତ୍ର କି ରାଶି ମିଳୁ ନାହିଁ । ଆପଣଙ୍କ ଝିଅ ଜଣେ ବିଦ୍ୟାଧରୀ, ପୃଥିବୀରେ ଜନ୍ମ ହୋଇଛି । ହେଲେ ତା' ବାହାଘର ପୃଥିବୀ ମାଟିରେ ହୋଇପାରିବ ନାହିଁ । ଆମକୁ ତିନି ମାସ ଅପେକ୍ଷା କରିବାକୁ ପଡ଼ିବ ଆଉ ତା'ପରେ ବାହାଘର ସମ୍ଭବ ହୋଇପାରେ ।

ସମସ୍ତେ ଜ୍ୟୋତିଷଙ୍କ କଥାରେ ବିସ୍ମିତ ହେଲେ । ଆଉ ତିନିମାସ ପାଇଁ ତିନି ବୀରମାନଙ୍କୁ ଅତିଥି ରୂପେ ରଖାଯିବାର ବ୍ୟବସ୍ଥା କରାଗଲା । ତିନି ମାସ ବିତିଗଲା କିନ୍ତୁ ବିଶେଷ ଘଟଣା କିଛି ଘଟିଲା ନାହିଁ ।

ଚତୁର୍ଥ ମାସ ଆରମ୍ଭରେ ରାଜା, ରାଣୀ ଓ ଝିଅ ଦରବାରରେ ବସିଥିଲେ । ସେ ଜ୍ୟୋତିଷ ଓ ବୀରମାନଙ୍କୁ ଡକାଇ ପଠାଇଲେ । ବର ଜଣାଯିବ ବୋଲି ଜ୍ୟୋତିଷଙ୍କୁ ପଚାରିଲେ । ଜ୍ୟୋତିଷ କିଛି ସିଦ୍ଧାନ୍ତ ଶୁଣାଇବା ପୂର୍ବରୁ ରାଜକୁମାରୀ ଅନଙ୍ଗରତି ଓଢ଼ଣିରେ ତା'ର ନିଜ ମୁହଁକୁ ଘୋଡ଼ାଇ ପକାଇଲା । ରାଣୀ ଆତଙ୍କିତ ହୋଇ ତା' ମୁହଁରୁ ଓଢ଼ଣିକୁ ଉଠାଇ ଦେଲେ । ସମସ୍ତଙ୍କୁ ଚକିତ କରି ରାଜକୁମାରୀ ମରିଯାଇଥିଲା । ଦୁଃଖରେ ଭାଙ୍ଗିପଡ଼ି ରାଜା ଓ ରାଣୀଙ୍କର ଚେତା ବୁଡ଼ିଗଲା । ଚେତାପାଇ ସେମାନେ ବ୍ରାହ୍ମଣ ଜୀବଦତ୍ତକୁ ରାଜକୁମାରୀକୁ ବଞ୍ଚାଇ ଦେବାକୁ ଅନୁରୋଧ କଲେ । ସେ ଯଦି ତାକୁ ବଞ୍ଚାଇ ଦେବ, ତା'ହେଲେ ତାକୁ ତା' ସହିତ ବିବାହ କରିଦିଆଯିବ । ଜୀବଦତ୍ତ ପାର୍ବତୀଙ୍କୁ କରୁଣା କରିବାକୁ ପ୍ରାର୍ଥନା କଲା ଓ ତନ୍ତ୍ରବିଦ୍ୟା ପ୍ରୟୋଗ କଲା । କିନ୍ତୁ ରାଜକୁମାରୀ ଆଉ ବଞ୍ଚିଉଠିଲା ନାହିଁ । ଜୀବଦତ୍ତ ପାର୍ବତୀଙ୍କୁ ସ୍ମରଣକରି ତା' ନିଜ ମୁଣ୍ଡ କାଟିଦେବାକୁ ଖଣ୍ଡା ଉଠାଇଲା ।

ପାର୍ବତୀ ଅନ୍ୟମାନଙ୍କୁ ଅଦୃଶ୍ୟ ହୋଇ ଜୀବଦତ୍ତକୁ କହିଲେ– ଜୀବଦତ୍ତ ! ତରବରରେ କିଛି କରନାହିଁ । ଏଇ ଅନଙ୍ଗରତି ହେଉଛି ବିଦ୍ୟାଧରୀ ଅନଙ୍ଗପ୍ରଭା । ଅଭିଶାପ ଯୋଗୁ ସେ ମଣିଷ



ହୋଇ ଜନ୍ମ ହୋଇଥିଲା । ସେ ତା' ପୃଥିବୀକୁ ଫେରିଯାଇ ସେଠାରେ ତା'ର ସଂରକ୍ଷିତ ଶରୀରରେ ପ୍ରବେଶ କରି ଜୀବନ ଦାନ ପାଇଛି । ତମେ ବିନ୍ଧ୍ୟ ଜଙ୍ଗଲକୁ ଯାଇ ଦେବୀ ବିନ୍ଧ୍ୟବାସିନୀଙ୍କ ପାଦପୂଜା କର । ତାଙ୍କରି କରୁଣାରେ ତୁମେ ବିଦ୍ୟାଧରଲୋକରେ ଅନଙ୍ଗପ୍ରଭାକୁ ପାଇବ ।

ରାଜା ଓ ରାଣୀ ନିଜ ନିଜକୁ କୌଣସି ମତେ ସମ୍ଭାଳି ନେଲେ ଓ ତାଙ୍କ ଝିଅର ଶେଷ କର୍ମ କଲେ । ବୀରମାନେ ଯେ ଯାହାର ରାଜ୍ୟ ଚାଲିଗଲେ ।

ଜୀବଦତ୍ତ ଦେବୀଙ୍କ ମନ୍ଦିରରେ ତପସ୍ୟା କଲା । ସେ ନଅ ଦିନକାଳ ଦିନ ବା ରାତି, କେତେବେଳେ ହେଲେ ବାହାରକୁ ଗଲା ନାହିଁ, ଉପବାସ ରହି ଦେବୀଙ୍କର ଆରାଧନା କଲା । ପାର୍ବତୀ ତା'ର ଶୃଙ୍ଖଳା ଓ ଏକାଗ୍ରତାରେ ସନ୍ତୁଷ୍ଟ ହେଲେ । ସେ ଆବିର୍ଭୂତା ହୋଇ କହିଲେ– ପୁଅ, ତପସ୍ୟାରୁ ଉଠ ଓ ମୋ କଥା ଶୁଣ । ହିମାଳୟରେ ବୀରପୁର ନଗରରେ ସମର ନାମରେ ଜଣେ ବିଦ୍ୟାଧର ରାଜତ୍ୱ କରୁଛନ୍ତି । ତାଙ୍କ ରାଣୀଙ୍କ ନାମ ଅନଙ୍ଗପ୍ରଭା ଓ ଝିଅର ନାମ ଅନଙ୍ଗବତୀ । ଅନଙ୍ଗବତୀ ନିଜ ସୌନ୍ଦର୍ଯ୍ୟରେ ଗର୍ବିତା ହୋଇ କାହାରିକୁ ବାହା ହେବାକୁ ମନା କରିଦେଇଥିଲା । ତା' ବାପା-ମା ତା' ଉପରେ ବିରକ୍ତ ହୋଇ ତାକୁ ଅଭିଶାପ ଦେଇଥିଲେ ଯେ ସେ ପୃଥିବୀରେ ମଣିଷ ହୋଇ ଜନ୍ମ ହେବ ଏବଂ ଷୋହଳ ବର୍ଷ କାଳ ବିନା ସ୍ୱାମୀ ସୁଖରେ କଟାଇବ । ତା'ପରେ ସେ ବିଦ୍ୟାଧରଲୋକକୁ ଫେରିଯିବ ଏବଂ ସମୟ କ୍ରମେ ଜଣେ କୁତ୍ସିତ ବ୍ରାହ୍ମଣ ଯୁବକ ସିଦ୍ଧ ହୋଇ ତାକୁ ବାହାହେବ । ତମେ ସେଇ ବ୍ରାହ୍ମଣ । ପୂର୍ବ ଜନ୍ମରେ ତୁମେ ବିଦ୍ୟାଧର ଥିଲ ଓ ଜଣେ ଋଷିଙ୍କ ଝିଅକୁ କାମନା କରିବାରୁ ଅଭିଶାପ ପାଇ ମଣିଷ ରୂପରେ ଜନ୍ମ ନେଇଛ । ପୂର୍ବ ଜନ୍ମରେ ତମେ ଆଠଜଣ ବିବାହିତାଙ୍କୁ ଅପହରଣ କରିନେଇଥିଲ । ତେଣୁ ତମେ ଗୋଟିଏ ଜନ୍ମରେ ଅନଙ୍ଗପ୍ରଭା ଠାରୁ ଅଲଗା ହୋଇ ଦୁଃଖ ପାଇବ । ଅନଙ୍ଗପ୍ରଭା ଅଠଜଣ ପୁରୁଷଙ୍କ ପରେ ଶେଷରେ ତୁମର ହେବ । ତମ ପୂର୍ବ ଜନ୍ମ ବିଷୟରେ ତମେ ଜାଣି ନାହିଁ । ଜଣେ ପାପୀ ସଂସ୍ପର୍ଶରେ ଆସି ଜଣେ ପାପୀ ହୋଇଯାଏ । ତେଣୁ ତମେ ଦୁଃଖ ପାଉଛ । ତମେ ଉଭୟ ବିଦ୍ୟାଧରଲୋକକୁ ଫେରିଆସ । ତମେ ଆଗରୁ ବାହାହେବାକୁ ମନା କରିଥିବା ମଦନପ୍ରଭାକୁ ବାହା ହେବ । ତା'ପରେ ତମେ ଉଭୟ ଦୁଃଖ ପାଇବ । ଅନଙ୍ଗରତି ବିଦ୍ୟାଧରଲୋକରେ ଅନଙ୍ଗପ୍ରଭା ରୂପରେ ମଧ୍ୟ ସେଇଭଳି ଦୁଃଖ ପାଇବ । ଏଇ ଖଣ୍ଡାକୁ ନିଅ । ଆକାଶରେ ଉଡ଼ିବାକୁ ଓ ସବୁବେଳେ ବିଜୟ ହେବାକୁ ମୁଁ ତମକୁ ଶକ୍ତି ଦେଉଛି । ବୀରପୁର ଯାଇ ଅନଙ୍ଗପ୍ରଭାର ବାପାକୁ ଯୁଦ୍ଧକୁ ଡାକରା ଦିଅ । ତାକୁ ଜୟକରି ଅନଙ୍ଗପ୍ରଭାକୁ ବାହା ହୁଅ । –ଏତିକି କହି ଦେବୀ ଅନ୍ତର୍ଦ୍ଧାନ ହୋଇଗଲେ ।

ଅର୍ଦ୍ଧଚେତନ ଓ ସ୍ୱପ୍ନାବିଷ୍ଟ ଅବସ୍ଥାରେ ଜୀବଦତ୍ତ ଦେବୀଙ୍କ ଉପଦେଶ ଶୁଣୁଥିଲା । ଚେତା ପାଇ ସେ ହାତରେ ଖଣ୍ଡାଟିଏ ଧରିଥିବାର ଦେଖିଲା । ଦେବୀଙ୍କ ଦୟାରୁ ତାକୁ କୌଣସି କ୍ଳାନ୍ତି ଲାଗିଲା ନାହିଁ । ସେ ଖଣ୍ଡାଧରି ଆକାଶକୁ ଉଡ଼ିଗଲା । ହିମାଳୟର ବୀରପୁରରେ ପହଞ୍ଚିଲା ଓ ସମରଙ୍କ ସହିତ ଯୁଦ୍ଧକରି ତାଙ୍କୁ ପରାସ୍ତ କଲା । ସମର ଅନଙ୍ଗପ୍ରଭାକୁ ତା' ସହିତ ବାହା ଦେଲେ ଓ ସେ ସେଠାରେ ଆନନ୍ଦରେ ଦିନ କଟାଇଲେ । ଦିନେ ସେ ତା' ଶ୍ୱଶୁରଙ୍କୁ ତା'ସ୍ତ୍ରୀକୁ ନେଇ ପୃଥିବୀକୁ ଯିବା ପାଇଁ ଅନୁମତି ମାଗିଲା । ସମର ସେମାନଙ୍କ ଭବିଷ୍ୟତ ଜାଣିଥିଲେ ଓ ସେମାନଙ୍କୁ ପୃଥିବୀକୁ ଯିବାକୁ ଅନୁମତି ଦେଲେ । ହିମାଳୟରୁ ଓହ୍ଲାଇଲା ବେଳେ ଅନଙ୍ଗପ୍ରଭା ପାଖରେ ପାହାଡ଼ ଓ ଜଙ୍ଗଲଟିଏ ଦେଖିଲା । ସେ କିଛି ସମୟ ବିଶ୍ରାମ କରିବାକୁ ଇଚ୍ଛାକଲା । ଜୀବଦତ୍ତ ରାଜି ହେଲା । ତା' ବିଦ୍ୟାବଳରେ ଅନଙ୍ଗପ୍ରଭା କିଛି ଖାଇବା ଜିନିଷ ଓ ମଦ ପାଇଲା । ସେମାନେ ଖାଇଲେ ଓ ମଦ ପିଇଲେ । ଜୀବଦତ୍ତ ଅନଙ୍ଗପ୍ରଭାକୁ ଗୀତଟିଏ ଗାଇବାକୁ କହିଲା । ଅନଙ୍ଗପ୍ରଭା ଗୀତଟିଏ ଗାଇଲା ଓ ଗୀତର ପ୍ରଭାବରେ ଜୀବଦତ୍ତ ଶୋଇ ପଡ଼ିଲା ।

ଏଇ ସମୟରେ ରାଜା ହରିବର ଶିକାରରେ କ୍ଳାନ୍ତହୋଇ ତାଙ୍କ ରଥକୁ ଦୂରରେ ରଖି ପାଣି ଖୋଜି ଖୋଜି ଆସୁଥିଲେ । ଗୀତ ଦ୍ୱାରା ଆକର୍ଷିତ ହୋଇ ସେ ଗୀତ ଶୁଣାଯାଉଥିବା ଦିଗକୁ ଆଗେଇଲେ । ବାଟରେ ଶୁଭ ସଙ୍କେତମାନ ଦେଖିଲେ ଓ ଅଳ୍ପ ସମୟ ପରେ ସେ ଅନଙ୍ଗପ୍ରଭା ପାଖରେ ପହଞ୍ଚି ଗଲେ । ସେ ଅନଙ୍ଗପ୍ରଭାକୁ ଦେଖି ନିଜକୁ ସମ୍ଭାଳି ପାରିଲେ ନାହିଁ । ଅନଙ୍ଗପ୍ରଭା ମଧ୍ୟ ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲା ଓ ଜୀବଦତ୍ତ ନିଦରୁ ଉଠିବା ପୂର୍ବରୁ ତାକୁ ନେଇ ଯିବାକୁ ତାଙ୍କୁ ଅନୁରୋଧ କଲା । ସେ ରାଜାଙ୍କୁ କୋଳରେ ବସାଇ ତା' ବିଦ୍ୟା ବଳରେ ଓ ରାଜାଙ୍କ କହାଇବା ମୁତାବକ ରାଜାଙ୍କ ନଗରକୁ ଉଡ଼ିଗଲା । ତା' ବାପାଙ୍କ ଅଭିଶାପ ଯୋଗୁଁ ସେ ସବୁ କଥା ଭୁଲିଗଲା ଓ ସମସ୍ତ ଅତୀତ କଥାକୁ ଭୁଲିଯାଇ ରାଜାଙ୍କ ସହିତ ରହିଲା ।

ଏହା ଭିତରେ ଜୀବଦତ୍ତ ନିଦରୁ ଉଠି ଅନଙ୍ଗପ୍ରଭାକୁ ପାଇଲା ନାହିଁ । ତା' ପାଖରେ ଥିବା ଖଣ୍ଡା ମଧ୍ୟ ନଥିଲା । ଅଖିଆ ଅପିଆ ଓ ଅନିଦ୍ରାରେ କାନ୍ଦି କାନ୍ଦି ଦିନିଦିନ ତିନିରାତି ଜଙ୍ଗଲରେ ବୁଲିଲା । । ଆଉ କେତେ ଦିନ ମଧ୍ୟ ସେ ଅନଙ୍ଗପ୍ରଭାକୁ ଖୋଜି ଜଙ୍ଗଲରେ ବୁଲିବାକୁ ଲାଗିଲା । ସେତେଦିନ ପର୍ଯ୍ୟନ୍ତ ସେ କିଛି ଖିଆପିଆ କରି ନଥିଲା କି ଶୋଇ ନଥିଲା । ଶେଷରେ ସେ ଗୋଟିଏ ଗାଁରେ ପହଞ୍ଚି ଜଣେ ବ୍ରାହ୍ମଣଙ୍କ ଘରକୁ ଗଲା । ଘରର ମାଳିକାଣୀ ପ୍ରିୟଦତ୍ତା ସୁନ୍ଦରୀ ଥିଲେ ଓ ନିର୍ମଳ ପୋଷାକ ପିନ୍ଧିଥିଲେ । ସେ ଜୀବଦତ୍ତକୁ ବସାଇ ତାଙ୍କ ଚାକରମାନଙ୍କ ଦ୍ୱାରା ତା' ଗୋଡ଼ ଧୋଇଦେଲେ । ସେ କହିଲେ– ବିଚ୍ଛେଦର ଦୁଃଖରେ ଏଇ ବ୍ରାହ୍ମଣ ତେର ଦିନ ହେଲା କିଛି ଖିଆପିଆ କରିନାହାନ୍ତି । ତାଙ୍କୁ ଖାଇବାକୁ ଦିଅ । ଜୀବଦତ୍ତ ଖାଇପିଇ ସାଷ୍ଟାଙ୍ଗ ହେଲାପରେ ପ୍ରିୟଦତ୍ତାଙ୍କୁ ନମସ୍କାର କରି ସେ ତା' ବିଷୟରେ ସବୁକଥା କିପରି ଜାଣିଲେ ବୋଲି ପଚାରିଲେ । ସେ ମଧ୍ୟ ତା' ସ୍ତ୍ରୀ ଓ ତା' ଖଣ୍ଡା ବିଷୟରେ ପଚାରିଲା ।

ତାଙ୍କ ସ୍ୱାମୀଙ୍କ ପ୍ରତି ତାଙ୍କର ଭକ୍ତି ଓ ଅନୁରାଗରୁ ସେ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ବିଷୟରେ ସବୁ କଥା ଜାଣନ୍ତି । ସେ ତାଙ୍କ ସ୍ୱାମୀଙ୍କ ବ୍ୟତୀତ ଅନ୍ୟ କାହାରି କଥା ଭାବନ୍ତି ନାହିଁ ଓ ତାଙ୍କର ଅତିଥି ହେଉଥିବା ପୁରୁଷମାନଙ୍କୁ ନିଜର ଭାଇଭଳି ଦେଖନ୍ତି । ସେ ତାକୁ ଅନଙ୍ଗପ୍ରଭାକୁ ନ ଖୋଜିବାକୁ କହି କହିଲେ ଅନଙ୍ଗପ୍ରଭା ଶାପ ପାଇଥିବା ଯୋଗୁଁ ଜଣକ ପରେ ଜଣେ ପୁରୁଷଙ୍କୁ ଧରିବ । ତେଣୁ ସେ ଦେବୀଙ୍କ ପାଖକୁ ଫେରିଯାଇ ତାଙ୍କୁ ଧ୍ୟାନ କରିବା ଉଚିତ । ସେ ଆହୁରି ମଧ୍ୟ କହିଲେ ସେ ସମୟକ୍ରମେ ଦେବୀଙ୍କ ଦୟାରୁ ସବୁ ଠିକ୍ ହୋଇଯିବ । ଜୀବଦତ୍ତ ତାଙ୍କ ଉପଦେଶକୁ ଗ୍ରହଣ କରି ଯିବାକୁ ବାହାରୁ ଥିଲାବେଳେ ତାଙ୍କ ସ୍ୱାମୀ ଆସିଲେ । ସେ ଜୀବଦତ୍ତକୁ ଦିନେ ଦୁଇଦିନ ବିଶ୍ରାମ ନେଇ ତାଙ୍କ ସେବା ଗ୍ରହଣ କରିବାକୁ ଅନୁରୋଧ କଲେ । କଥାବର୍ତ୍ତା ଛଳରେ ଜୀବଦତ୍ତଠୁଁ ତା' ବିଷୟରେ ସବୁକଥା ଜାଣି ସେ ତାକୁ ସାନ୍ତ୍ୱନା ଦେଲେ ଓ ତୀର୍ଥ ସ୍ଥାନମାନ ଦର୍ଶନ କରିବାକୁ ଉପଦେଶ ଦେଲେ ।

ଦୟାଳୁ ସ୍ୱାମୀ-ସ୍ତ୍ରୀଙ୍କଠୁଁ ବିଦାୟ ନେଇ ଜୀବଦତ୍ତ ଅନେକ ତୀର୍ଥସ୍ଥାନ ବୁଲି ପବିତ୍ର ଜଳରେ ସ୍ନାନକଲା । ଶେଷରେ ସେ ବିନ୍ଧ୍ୟ ଜଙ୍ଗଲକୁ ଯାଇ ଦେବୀ ବିନ୍ଧ୍ୟବାସିନୀଙ୍କ ସମ୍ମୁଖରେ ତପସ୍ୟା କଲା । ଦେବୀ ସନ୍ତୁଷ୍ଟହୋଇ ଆବିର୍ଭୂତା ହୋଇ କହିଲେ– ପୁଅ, ମୋର ଚାରିଜଣ ସେବାକାରୀ ପ୍ରମଥ ଅଛନ୍ତି । ତମେ ସେମାନଙ୍କ ମଧ୍ୟରେ ବରିଷ୍ଠ ଓ ତମ ନାମ ବିକଟ ବଦନ । ଅନ୍ୟ ତିନିଜଣ ହେଲେ ପଙ୍କମାଳ, ପଟ୍ଟବକ୍ର ଓ ମହୋଦର । ଥରେ ତମେ ଚାରିଜଣ ଗଙ୍ଗାକୂଳକୁ ବୁଲିବାକୁ ଯାଇଥିଲ । ସେତେବେଳେ ଋଷି କପିଳଜଟଙ୍କ ଝିଅ ଚନ୍ଦ୍ରଲେଖା ନଦୀରେ ଗାଧୋଉ ଥିଲା । ତମେ ସମସ୍ତେ ତା' ପ୍ରେମରେ ପଡ଼ିଗଲ ଓ ଯେତେବେଳେ ତାକୁ ତମମାନଙ୍କର ମନକଥା କହିଲ, ସେ କହିଲା– ଭାଗ ଏଠୁ, ମୁଁ ଜଣେ ସ୍ତ୍ରୀ । ଅନ୍ୟ ତିନିଜଣ ଚୁପ୍ କରିଗଲେ, କିନ୍ତୁ ତମେ ଆଗେଇଯାଇ ତା' ହାତଧରି



ଟାଣିଲ । ସେ ଚିତ୍କାର କରି ତା' ବାପାଙ୍କୁ ଡାକ ପକାଇଲା । ଋଷି ସେଠାକୁ ଆସି ତମମାନଙ୍କୁ ମଣିଷ ରୂପରେ ଜନ୍ମ ନେବାକୁ ଅଭିଶାପ ଦେଲେ । ତମେମାନେ ଯେତେବେଳେ ତାଙ୍କ ପାଦ ତଳେ ପଡ଼ି କ୍ଷମା ମାଗିଲ ଓ ଦଣ୍ଡର ସମୟସୀମା କମାଇ ଦେବାକୁ ଅନୁରୋଧ କଲ, ସେ କହିଲେ– ତମେ ସମସ୍ତେ ଅନଙ୍ଗପ୍ରଭାକୁ ଚାହିଁବ ଓ ସେ ବିଦ୍ୟାଧରଲୋକକୁ ଚାଲିଗଲେ ଅନ୍ୟ ତିନିଜଣ ମୁକ୍ତିପାଇବେ । କିନ୍ତୁ ମୋ ଝିଅର ହାତଧରି ଟାଣି ଥିବାରୁ ତମେ ଜଣେ ବଡ଼ ପାପୀ ; କାରଣ ତମେ ଜଣେ ଅନିଚ୍ଛୁକା ସ୍ତ୍ରୀଲୋକକୁ ବଳପୂର୍ବକ ଚାହିଁଥିଲ ।

ଦେବୀ ପୁଣି କହିଲେ– ତମେମାନେ ମୋର ବ୍ୟକ୍ତିଗତ ସେବକ ମର୍ତ୍ତରେ ଚାରି ବୀରହୋଇ ଜନ୍ମ ନେଇଥିଲ । ଅନଙ୍ଗପ୍ରଭା ତା'ର ମରଦେହ ତ୍ୟାଗ କରିବା ପରେ ଅନ୍ୟ ତିନିଜଣ ମୋର ସେବକ ହୋଇ ଫେରି ଆସିଛନ୍ତି । ତମେ ମଧ୍ୟ କଠିନ ତପ କରିଛ । ମୁଁ ତମ ଉପରେ ସନ୍ତୁଷ୍ଟ । ଏଇ ଆଗ୍ନେୟ ମନ୍ତ୍ରଦ୍ୱାରା-ଆଗ୍ନେୟ ଧାରଣକୁ ପିନ୍ଧି ଆଠ ଜନ୍ମ ବ୍ୟାପି ମୁକ୍ତି ହେବାକୁ ଥିବା ପାପକୁ ପୋଡ଼ି ଧ୍ୱଂସ କରିଦିଅ । ତା'ପରେ ତମେ ମର ଦେହ ତ୍ୟାଗକରି ମୋ ସେବାକୁ ଫେରିଆସିବ । ଏତକ କହି ଦେବୀ ଅନ୍ତର୍ଦ୍ଧାନ ହୋଇଗଲେ । ଦେବୀଙ୍କ ଆଦେଶ ମୁତାବକ ଜୀବଦତ୍ତ ନିଜକୃତ ଯୌଗିକ ଅଗ୍ନିରେ ନିଜକୁ ପୋଡ଼ିଦେଲେ ଓ ହିମାଳୟକୁ ଫେରିଆସି ଶିବ-ପାର୍ବତୀଙ୍କ ସେବକମାନଙ୍କ ସହିତ ଯୋଗଦେଲେ ।

ପରସ୍ତ୍ରୀ-ଭୋଗ ତ ଦେବତାମାନଙ୍କୁ ବଡ଼ ପାପୀ କରିଦିଏ, ସାଧାରଣ ମଣିଷଙ୍କ କଥା ବା କ'ଣ କହିବା !

ଅନଙ୍ଗପ୍ରଭା ହରିବରଙ୍କ ଅନ୍ତଃପୁରରେ ସୁଖରେ ରହିଲା । ସେ ତାଙ୍କର ପାଟରାଣୀ ହେଲା । ରାଜା ହରିବର ତାଙ୍କ ମନ୍ତ୍ରୀମାନଙ୍କ ହାତରେ ରାଜକାର୍ଯ୍ୟ ବୁଝିବା ଭାର ଦେଇ ଦିନ ରାତି ଅନଙ୍ଗପ୍ରଭା ସହିତ ସୁଖରେ କଟାଇଲେ ।

ଦିନେ ରାଜାଙ୍କ ଦରବାରକୁ ଦୂର ଦେଶରୁ ନୃତ୍ୟଗୁରୁ ଆସିଲା । ରାଜା ତା' ନାଚ ଓ ଗୀତରେ ବହୁତ ଖୁସିହୋଇ ଅନ୍ତଃପୁରର ମହିଳାମାନଙ୍କୁ ନାଚ ଓ ଗୀତ ଶିଖାଇବାକୁ ତାକୁ ନିଯୁକ୍ତି ଦେଲେ । ଅନଙ୍ଗପ୍ରଭା ଖୁବ୍ ଶୀଘ୍ର ନାଚ ଓ ଗୀତ ଶିଖି ପାରଙ୍ଗମ ହୋଇଗଲା । ଅନଙ୍ଗପ୍ରଭା କୁଶଳତାରେ ମୁଗ୍ଧହୋଇ ଅନ୍ତଃପୁରର ଅନ୍ୟ ସ୍ତ୍ରୀଲୋକମାନେ ତା'ର ଘନିଷ୍ଠ ହେଲେ । ନୃତ୍ୟଗୁରୁ ସହିତ କ୍ରମାଗତ ମିଶୁଥିବାରୁ ଅନଙ୍ଗପ୍ରଭା ତା' ପ୍ରତି ଆକୃଷ୍ଟ ହେଲା । ଥରେ ନାଚ ଶିଖୁଥିଲା ବେଳେ ଅନଙ୍ଗପ୍ରଭା ନାଚଗୁରୁକୁ ତା' ପାଖକୁ ଅଜାଣତରେ ଟାଣିଆଣି ଭିଡ଼ି ଧରିଲା ଓ ତାକୁ ବହୁତ ସୁଖ ଲାଗିଲା । ଅନ୍ତଃପୁରରେ ରହିବାକୁ ତାକୁ ଆଉ ଭଲ ଲାଗିଲା ନାହିଁ । ନୃତ୍ୟଗୁରୁ ରାଜାଙ୍କ ଠାରୁ ଉପହାର ଆକାରରେ ବହୁତ ସୁନା ଓ ମଣି ମୁକ୍ତା ପାଇଥିଲା । ଅନଙ୍ଗପ୍ରଭାର ମଧ୍ୟ ଦାମିକା ଅଳଙ୍କାର ବହୁତ ଥିଲା । ଦରବାର ଛାଡ଼ି ତାକୁ ରାଜ୍ୟରୁ ଦୂରକୁ ନେଇଯାଇ ଉଭୟ ସୁଖରେ ରହିବାକୁ ସେ ନୃତ୍ୟଗୁରୁକୁ ପ୍ରଲୋଭିତ କଲା । ନୃତ୍ୟଗୁରୁ ରାଜି ହୋଇଗଲା ଓ ଓଟ ପିଠିରେ ଅଳଙ୍କାର ଲଦି ବାହାରିଲା । ଦୁହେଁ ବିୟୋଗପୁର ନଗରରେ ପହଞ୍ଚି ସୁଖରେ ଦିନ କାଟିଲେ ।

ରାଜା ହରିବର କିଛିଦିନ ପାଇଁ ଦୁଃଖ ପାଇଲେ । ପରେ ସ୍ୱାମୀ ଛାଡ଼ି ତାଙ୍କ ସହିତ ପଳାଇ ଆସିଥିବା ଅନଙ୍ଗପ୍ରଭାର ପ୍ରକୃତ ସ୍ୱଭାବ ସମ୍ପର୍କରେ ତାଙ୍କର ମନ୍ତ୍ରୀମାନେ ତାଙ୍କୁ ବୁଝାଇଲେ । ସେଭଳି ବିଶ୍ୱାସଘାତିନୀ ସ୍ତ୍ରୀଲୋକକୁ ବିଶ୍ୱାସ କରିବା ନିର୍ବୋଧତା । ସେ ନିଶ୍ଚୟ ସେଇ ନୃତ୍ୟଗୁରୁ ସାଙ୍ଗରେ ପଳାଇଛି । ରାଜା ଭାବିଲେ– ଜଣେ ଚଞ୍ଚଳା ସ୍ତ୍ରୀଲୋକ କେବେବି ସନ୍ତୁଷ୍ଟ ହୁଏନାହିଁ । ସେ ସବୁବେଳେ ନୂଆ ନୂଆ ପୁରୁଷ ଖୋଜେ । ଜ୍ଞାନୀଲୋକ ସେଭଳି ସ୍ତ୍ରୀକୁ ବିଶ୍ୱାସ କରେନାହିଁ । ଯେଉଁମାନେ ବିପଦ

ବେଳେ ବିଚଳିତ ହୁଅନ୍ତି ନାହିଁ, ସୁଖ ସମୟରେ ବିହ୍ୱଳିତ ହୁଅନ୍ତି ନାହିଁ ଓ ବାଧା ବିଘ୍ନ ସତ୍ତ୍ୱେ କାର୍ଯ୍ୟରୁ ନିବୃତ୍ତ ହୁଅନ୍ତି ନାହିଁ, ସେମାନେ ହିଁ ପ୍ରକୃତ ବିଜୟୀ ।

ସେ ଅନଙ୍ଗପ୍ରଭାକୁ ଖୁବ୍ ଶିଘ୍ର ଭୁଲିଗଲେ ଓ ଅନ୍ୟ ରାଣୀମାନଙ୍କ ମେଳରେ ସୁଖରେ ରହିଲେ ।

ନୃତ୍ୟଗୁରୁ ସହିତ ବିୟୋଗପୁରରେ ଅନଙ୍ଗପ୍ରଭା ଦିନା କେତେ ସୁଖରେ ରହିଲା । ଦୁର୍ଭାଗ୍ୟକୁ ନୃତ୍ୟଗୁରୁର ସୁଦର୍ଶନ ନାମକ ଜୁଆଡ଼ି ସହିତ ବନ୍ଧୁତା ହେଲା । ଦିନେ ଅନଙ୍ଗପ୍ରଭା ଜୁଆଖେଳ ଦେଖୁଥିଲା । ସୁଦର୍ଶନ ଏକା ବାଜିରେ ନୃତ୍ୟଗୁରୁର ସବୁ ଧନ ସମ୍ପତ୍ତିକୁ ଜିତିନେଲା । କାଙ୍ଗାଳ ହୋଇଯାଇଥିବା ନାଚ ମାଷ୍ଟରକୁ ଛାଡ଼ିଦେଇ ଅନଙ୍ଗପ୍ରଭା ସୁଦର୍ଶନ ସାଙ୍ଗରେ ପଳାଇଲା । ନୃତ୍ୟଗୁରୁ ସନ୍ୟାସୀ ହୋଇ ଗଙ୍ଗାକୂଳକୁ ତପସ୍ୟା କରିବାକୁ ଚାଲିଗଲା ।

ଅନଙ୍ଗପ୍ରଭା ଜୁଆଡ଼ି ସହିତ ବି ବେଶୀଦିନ ରହିଲା ନାହିଁ । ଦିନେ ଡକାୟତମାନେ ଜୁଆଡ଼ି ଘରେ ପଶି ସବୁ ସମ୍ପତ୍ତି ନେଇଗଲେ । ଧନୀ ହିରଣ୍ୟଗୁପ୍ତ ଜୁଆଡ଼ିର ବନ୍ଧୁ ଥିଲା । ସେ ତା'ର ସ୍ତ୍ରୀକୁ ସାଙ୍ଗରେ ନେଇ ତାକୁ କରଜ ମାଗିଲା । ଅନଙ୍ଗପ୍ରଭା ହିରଣ୍ୟଗୁପ୍ତକୁ ଦେଖି ତା'ର ମଧୁର ବ୍ୟବହାରରେ ଆକର୍ଷିତ ହେଲା । ହିରଣ୍ୟଗୁପ୍ତ ସେମାନଙ୍କୁ ଭୋଜନ ପାଇଁ ନିମନ୍ତ୍ରଣ କଲା । ସୁଦର୍ଶନ ରାଜି ହେଲାନାହିଁ ଓ ତାକୁ ଭଲ ଲାଗୁନାହିଁ ବୋଲି କହିଲା । ହିରଣ୍ୟଗୁପ୍ତ ତାକୁ ଅନୁରୋଧକରି ବୈଠକଖାନାରେ ବସାଇ ଅନଙ୍ଗପ୍ରଭାକୁ ଭିତରକୁ ନେଲା । ସେମାନେ ମନଇଚ୍ଛା ଖାଇଲେ ଓ ମଦପିଇ ସୁଖରେ କଟାଇଲେ । ସଞ୍ଜ ଗଡ଼ି ଯାଉଥିଲା ଓ ତା' ସ୍ତ୍ରୀ ନ ଫେରିବାରୁ ସୁଦର୍ଶନ ଜଣେ ଚାକରକୁ ଡାକି ତା' ସ୍ତ୍ରୀକୁ ଆଣିବାକୁ କହିଲା । ଚାକର ଭିତରକୁ ଗଲା, କିନ୍ତୁ ଫେରିଲା ନାହିଁ ।

ପାହାନ୍ତା ପହରକୁ ହିରଣ୍ୟଗୁପ୍ତର ଚାକରମାନେ ଆସି ତାକୁ କହିଲେ— ତମ ସ୍ତ୍ରୀ ବହୁତ ଆଗରୁ ଚାଲି ଯାଇଛନ୍ତି । ତମେ ଯାଅ । କିନ୍ତୁ ସୁଦର୍ଶନ କହିଲା ଯେ ତା' ସ୍ତ୍ରୀ ଭିତର ଘରେ ଅଛି । ଚାକରମାନେ ତକୁ ଖୁବ୍ ମାଡ଼ଦେଇ ତଡ଼ି ଦେଲେ । ସେ ନିଜକୁ ନିଜେ କହିଲା— ଆହାଃ ! ମୋତେ ଠିକ୍ ହୋଇଛି । ସେଇ ମାଇକିନିଆଁ ନୃତ୍ୟଗୁରୁକୁ ଛାଡ଼ି ମୋ ସାଙ୍ଗରେ ପଳେଇ ଆସିଥିଲା । ବେପାରୀ ଜଣକ ମୋର ବନ୍ଧୁହୋଇ ମୋ ସ୍ତ୍ରୀକୁ ମୋଠୁଁ ଛଡ଼ାଇ ନେଲା । ମୁଁ ମୋ ପାପ ଯୋଗୁଁ ଏସବୁ ଭୋଗୁଛି । ତା'ପରେ ସେ ଶାନ୍ତହୋଇ ବଦରିକା ଆଶ୍ରମକୁ ତପକରି ମୋକ୍ଷ ହେବାପାଇଁ ଚାଲିଗଲା ।

ଫୁଲରୁ ଫୁଲକୁ ଉଡ଼ି ବୁଲୁଥିବା ମହୁମାଛି ପରି ଅନଙ୍ଗପ୍ରଭା ଜୀବଦତ୍ତ, ହରିବର ଓ ସୁଦର୍ଶନକୁ ଜଣକ ପରେ ଜଣକୁ ଛାଡ଼ି ହିରଣ୍ୟଗୁପ୍ତ ସହିତ ରହିଲା । ନଗରର ରାଜା ଅନଙ୍ଗପ୍ରଭା ବିଷୟରେ ଶୁଣିଲେ, କିନ୍ତୁ ସେ ନ୍ୟାୟବନ୍ତ ହୋଇଥିବାରୁ ତାକୁ ପାଇବାକୁ ଇଚ୍ଛା କଲେନାହିଁ । ଖୁବ୍ ଶିଘ୍ର ବଦ୍‌ଖର୍ଚ୍ଚ ହେତୁ ହିରଣ୍ୟଗୁପ୍ତ ତା'ର ପ୍ରାୟ ସବୁ ଧନସମ୍ପତ୍ତି ହରାଇଲା । ଯେତେବେଳେ ବେଶ୍ୟାଟିଏ ରାଜତ୍ୱ କରେ, ସମ୍ପଦର ଅଧିଷ୍ଠାତ୍ରୀ ଦେବୀ ସମ୍ଭ୍ରାନ୍ତ ଘରର ଚାକରାଣୀ ପରି ଶକ୍ତିହୀନା ହୋଇଯାନ୍ତି । ହିରଣ୍ୟଗୁପ୍ତ ନଗର ଛାଡ଼ି ବାହାରକୁ ଯାଇ ବେପାର କରିବାକୁ ଠିକ୍ କଲା । ସେ ଅନଙ୍ଗପ୍ରଭା ସହିତ ସାଗରପୁର ନଗରରେ ପହଞ୍ଚିଲା । କେଉଟ ସାଗରବୀର ତାକୁ ଜାହାଜଟିଏ ଦେଲା । ସାଗରବୀରକୁ ସାଙ୍ଗରେ ନେଇ ହିରଣ୍ୟଗୁପ୍ତ ଅନଙ୍ଗପ୍ରଭା ଓ ତା'ର ଜିନିଷପତ୍ର ଧରି ଜାହାଜରେ ଉଠିଲେ । ଯାତ୍ରାର ଦ୍ୱିତୀୟ ଦିନ ଝଡ଼ଟାଏ ଉଠି ଜାହାଜକୁ ବୁଡ଼ାଇ ଦେଲା ଓ ତା' ସ୍ତ୍ରୀ ଓ ସାଗରବୀରର ଅବସ୍ଥା କ'ଣ ହେଲା ଜାଣିବା ପୂର୍ବରୁ ଗୋଟାଏ କାଠଗଡ଼ରେ ହିରାଦେଇ ଭାସିବାକୁ ଲାଗିଲା । ସୌଭାଗ୍ୟକୁ ସେ ଆଉ ଗୋଟିଏ ଜାହାଜ ଦେଖିଲା ଓ ସାହାଯ୍ୟ ପାଇଁ ଡାକ ପକାଇଲା । ଜାହାଜର ମାଲିକ ତାକୁ ରକ୍ଷାକଲା । ପାଞ୍ଚ ଦିନପରେ ଜାହାଜ କୂଳରେ ଲାଗିଲା । ନିଜକୁ ସାନ୍ତ୍ୱନା ଦେଇ ଓ ଭାଗ୍ୟକୁ ଆଦରି ହିରଣ୍ୟଗୁପ୍ତ ତା' ନିଜ ଘରକୁ ଫେରିଗଲା । ସେ ବେପାର କରି କିଛି ଧନ ରୋଜଗାର କଲା ଓ ସୁଖରେ ରହିଲା ।



ଅନଙ୍ଗପ୍ରଭାକୁ ଜାହାଜରୁ ଖସିପଡ଼ିବା ଦେଖି କେଉଟ ସାଗରବୀର ମଧ୍ୟ ଜାହାଜରୁ ଡେଇଁ ପଡ଼ିଥିଲା । ଗୋଟିଏ ଓସାରିଆ କାଠଗଡ଼ ପାଇ ସେ କାଠଗଡ଼ ସାହାଯ୍ୟରେ ପହଁରି ପହଁରି ତା'ପାଖରେ ପହଞ୍ଚିଲା ଓ ତାକୁ ଟେକିନେଇ କାଠଗଡ଼ ଉପରେ ଶୁଆଇ ଦେଲା । ସେ ତାକୁ ସାହସ ଦେଇ ଗୋଟିଏ ହାତରେ କାଠଗଡ଼ ସହ ଅନଙ୍ଗପ୍ରଭାକୁ ଜୁଆଇ ଧରି ପହଁରି ପହଁରି କୂଳରେ ପହଁଚିଲା । ଅନଙ୍ଗପ୍ରଭା ତାକୁ ବଞ୍ଚାଇଥିବାରୁ ସାଗରବୀରକୁ ବହୁତ ପ୍ରଶଂସା କଲା । ଆଗ ପଛ କିଛି ନଭାବି ସେ ତା'ଘରକୁ ଚାଲିଗଲା ଓ ଆନନ୍ଦରେ ତା' ସହିତ ରହିଲା । ଚରିତ୍ରହୀନା ସ୍ତ୍ରୀ ଉଚ୍ଚ ନୀଚର ବିଚାର କରେ ନାହିଁ । କେଉଟ ସାଗରବୀରରର ରାଜମହଲ ଭଳି ବିରାଟ କୋଠାଘର ଥିଲା ଓ ଅନଙ୍ଗପ୍ରଭା ଆନନ୍ଦିତ ହେଲା । ଦିନେ ସେ ଉପର ମହଲାର ଅଳିନ୍ଦରେ ପବନ ଖାଉଥିଲାବେଳେ ରାସ୍ତାରେ ଯାଉଥିବା କ୍ଷତ୍ରୀୟ ଯୁବକ ବିକ୍ରମ ବର୍ମାକୁ ଦେଖିଲା । ବିକ୍ରମ ବର୍ମା ସୌନ୍ଦର୍ଯ୍ୟରେ ସେ ମୁଗ୍ଧହୋଇ ସଙ୍ଗେ ସଙ୍ଗେ ତଳ ରାସ୍ତାକୁ ଚାଲି ଆସିଲା । ଓ ତାକୁ ସାଙ୍ଗରେ ନେଇଯିବାକୁ ବିକ୍ରମ ବର୍ମାକୁ ମିନତି କଲା । ବିକ୍ରମ ବର୍ମା ବିସ୍ମିତ ହେଲା, କିନ୍ତୁ ପର ମୁହୂର୍ତ୍ତରେ ଅନଙ୍ଗପ୍ରଭାର ମନର ଅବସ୍ଥାକୁ ବୁଝିପାରିଲା ଓ ତାକୁ ଆଶ୍ୱାସନା ଦେଇ ତା' ଘରକୁ ନେଇଗଲା । ଅନଙ୍ଗପ୍ରଭା ତା' ସହିତ ରହିବାକୁ ତା' ଇଚ୍ଛା ଜଣାଇଲା । ସାଗରବୀର ଫେରି ଅନଙ୍ଗପ୍ରଭା ବିଷୟରେ ସବୁ ଜାଣିଲା । ସେ ଜାଣିଲା ଯେ ସେ ଆଉ ଅନଙ୍ଗପ୍ରଭାକୁ ଫେରିପାଇବ ନାହିଁ । ହତାଶରେ ସେ ସମୁଦ୍ରରେ ବୁଡ଼ି ମଲା ।

ଅନଙ୍ଗପ୍ରଭା ଓ ବିକ୍ରମ ବର୍ମା ଦିନା କେତେ ସୁଖରେ ରହିଲେ । ଥରେ ନଗରର ରାଜା ସାଗର ବର୍ମା ବିକ୍ରମ ବର୍ମାର କୋଠା ଦେଇ ଯାଉଥିଲେ । ଅନଙ୍ଗପ୍ରଭା ରାଜାଙ୍କୁ ଦେଖି ତାଙ୍କ ପ୍ରେମରେ ପଡ଼ିଗଲା ଓ ମାହୁନ୍ତକୁ ହାତୀରେ ବସାଇବା ପାଇଁ ଅନୁରୋଧ କଲା । ଏବଂ କହିଲା ଯେ ସେ କେବେ ହାତୀ ଉପରେ ଚଢ଼ିନାହିଁ । ମାହୁନ୍ତ ରାଜାଙ୍କ ଅନୁମତି ନେଇ ହାତୀକୁ କୋଠା ପାଖକୁ ନେଇଗଲା । ଅନଙ୍ଗପ୍ରଭା ନିରାପଦରେ କୋଠାରୁ ଡେଇଁପଡ଼ି ରାଜାଙ୍କ ପାଖରେ ହାତୀ ପିଠିରେ ବସିଗଲା । ରାଜା ତାକୁ ପାଇ ଖୁସିହେଲେ । ବିକ୍ରମ ବର୍ମା ରାଗିଯାଇ ରାଜାଙ୍କ ଅନ୍ତଃପୁରରୁ ତା'ର ସ୍ତ୍ରୀକୁ ଉଦ୍ଧାର କରିବାକୁ ରାଜାଙ୍କ ରକ୍ଷୀମାନଙ୍କୁ ଆକ୍ରମଣ କଲା । ସେ ଜାଣି ନଥିଲା ଯେ ଅନଙ୍ଗପ୍ରଭା ନିଜ ଇଚ୍ଛାରେ ଓ ଖୁସିରେ ରାଜାଙ୍କ ଅନ୍ତଃପୁରକୁ ଯାଇଛି ।

ଶେଷରେ ଅନଙ୍ଗପ୍ରଭା ସାଗର ବର୍ମାଙ୍କ ସହିତ ସ୍ଥିର ହେଲା । ସମୟକ୍ରମେ ତା'ର ପୁଅଟିଏ ହେଲା । ସାଗର ବର୍ମା ଅତି ଆନନ୍ଦରେ ପୁଅର ନାମ ସମୁଦ୍ର ବର୍ମା ରଖିଲେ ଓ ତା'ର ଜନ୍ମ ଦିନକୁ ଧୁମ୍‌ଧାମ୍‌ରେ ପାଳନ କଲେ । ପିଲାଟି ବଡ଼ହୋଇ ବହୁ ସୁଗୁଣ ସମ୍ପନ୍ନ ହେଲା । ସାଗର ବର୍ମା ତାକୁ ଯୁବରାଜ କଲେ ଓ ସମର ବର୍ମାଙ୍କ ଝିଅ କମଳାବତୀ ସହିତ ବାହା କରାଇଦେଲେ । ସାଗର ବର୍ମା ତାକୁ ରାଜ୍ୟଭାର ମଧ୍ୟ ଦେଲେ, କିନ୍ତୁ ସମୁଦ୍ର ବର୍ମା ବାହାରକୁ ଯାଇ ଅନ୍ୟ ରାଜ୍ୟ ଜୟ କରିବାକୁ ତାକୁ ଅନୁମତି ଦେବାକୁ ବାପାଙ୍କୁ ଅନୁରୋଧ କଲେ । ସେ କହିଲେ— ବାପା ! ରାଜାହୋଇ ଅନ୍ୟ ରାଜାମାନଙ୍କୁ ପରାସ୍ତ ନକରି କେବଳ ସ୍ତ୍ରୀକୁ ଧରି ଜୀବନ ବିତାଇବା ନପୁଂସକମାନଙ୍କ ଭଳି କଥା । ପ୍ରଜାମାନଙ୍କ ଉପରେ ବିଲେଇ ଭଳି ନିର୍ଭରକରି ବଢୁଥିବା କୃପଣମାନଙ୍କ ରାଜ୍ୟ ଭୋଗପାଇଁ ନୁହେଁ କି ଖ୍ୟାତି ଲାଭପାଇଁ ନୁହେଁ ।

ସାଗର ବର୍ମା ଧୈର୍ଯ୍ୟ ସହକାରେ ତାଙ୍କର ପୁଅଙ୍କ କଥା ଶୁଣିଲେ ଓ ଶାନ୍ତ ଭାବରେ ଉତ୍ତର ଦେଲେ— ପୁଅ ! ରାଜ୍ୟ ପରିଚାଳନା କରିବାର ତମେ ନୂଆ । ପ୍ରଥମେ ତମେ ନିଜ ରାଜ୍ୟରେ ଦୃଢ଼ଭାବରେ ପ୍ରତିଷ୍ଠିତ ହୁଅ । ନ୍ୟାୟ ଭାବରେ ପ୍ରଜାପାଳିବା ଓ ସେମାନଙ୍କୁ ରକ୍ଷାକରିବା ପାପ ନୁହେଁ କି ଅଖ୍ୟାତି ନୁହେଁ । ଅନ୍ୟ ରାଜାମାନଙ୍କ ଶକ୍ତି ବିଷୟରେ ନଜାଣି ସେମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିବା

ବୋକାମୀ । ତମେ ଅବଶ୍ୟ ବୀର ଓ ସାହସୀ ଓ ତମର ବିଶାଳ ସେନା ଅଛି; କିନ୍ତୁ ଯୁଦ୍ଧରେ ବିଜୟୀ ହେବା ବିଷୟରେ କେହି ନିଶ୍ଚିତ ହେବା ଉଚିତ ନୁହେଁ ।

ବାପାଙ୍କ ଉପଦେଶ ସତ୍ତ୍ୱେ ସାଗର ବର୍ମା ତାଙ୍କୁ ପ୍ରବର୍ତ୍ତାଇ ଅନୁମତି ନେଲେ । ସେ ଅନେକ ରାଜ୍ୟ ଜୟକରି ହାତୀ, ଘୋଡ଼ା, ସୁନା ଓ ମଣିମୁକ୍ତା ଆକାରରେ ବହୁ ଉପହାର ପାଇଲେ । ସେ ଦିଗ୍‌ବିଜୟକରି ନିଜ ରାଜ୍ୟକୁ ଫେରିଆସି ତାଙ୍କ ବାପା-ମା'ଙ୍କ ପାଦକୁ ବିଭିନ୍ନ ରତ୍ନରେ ପୂଜା କଲେ । ଗରୀବମାନଙ୍କୁ ସେ ବହୁତ ଦାନ ଦେଲେ ଓ ତାଙ୍କ ପ୍ରଜାମାନଙ୍କର ଦାରିଦ୍ର୍ୟ ଦୂରକଲେ । ପୁଅର ବିଜୟ ଓ ସୌଭାଗ୍ୟରେ ସାଗର ବର୍ମା ଓ ଅନଙ୍ଗପ୍ରଭା ନିଜକୁ ଭାଗ୍ୟବାନ ମନେକଲେ ଓ ତାଙ୍କ ଜୀବନ ପରିପୂର୍ଣ୍ଣ ବୋଲି ଅନୁଭବ କଲେ ।

ଦିନେ ସାଗର ବର୍ମା ଦରବାର ଡକାଇ ତାଙ୍କ ମନ୍ତ୍ରୀମାନଙ୍କ ସମ୍ମୁଖରେ ତାଙ୍କ ପୁଅକୁ କହିଲେ– ପୁଅ, ଜଣେ ମଣିଷ ଭାବରେ ଯାହା କରିବା କଥା, ମୋ ପ୍ରଜାମାନଙ୍କ ପାଇଁ ସେସବୁ କରିଛି । ମୁଁ ରାଜକୀୟ ସୁଖ ଉପଭୋଗ କରିଛି ଓ ଅନ୍ୟ ରାଜାଙ୍କଠାରୁ କେବେ ପରାସ୍ତ ହୋଇନାହିଁ । ତମକୁ ଜଣେ ସମ୍ରାଟ୍ ଭାବରେ ଦେଖିବାର ସୌଭାଗ୍ୟ ମୋର ହୋଇଛି । ବର୍ତ୍ତମାନ ତୀର୍ଥସ୍ଥାନମାନ ବୁଲି ତପ କରିବା ମୋର ଇଚ୍ଛା । ବୃଦ୍ଧାବସ୍ଥା ମୋ କାନରେ ଯେମିତି କହୁଛି– ତୁ ତଥାପି ଏଇ କ୍ଷଣଭଙ୍ଗୁର ଦେହର ମୋହରେ ପଡ଼ିଛୁ, ଯୋଉ ଦେହ ଶୀଘ୍ର ମାଟିରେ ମିଶିଯିବ ।

ତାଙ୍କ କଥା କହିସାରି ତାଙ୍କ ପୁଅଙ୍କ ଅଭିଯୋଗକୁ କାନ ନଦେଇ ସେ ତାଙ୍କ ସ୍ତ୍ରୀଙ୍କୁ ନେଇ ପ୍ରୟାଗକୁ ଚାଲିଗଲେ ।

ଗଙ୍ଗା, ଯମୁନା ଓ ସରସ୍ୱତୀ ନଦୀମାନଙ୍କ ସଙ୍ଗମସ୍ଥଳରେ ପ୍ରୟାଗରେ ଅନଙ୍ଗପ୍ରଭାଙ୍କ ସହିତ ସାଗର ବର୍ମା ବୃଷଧ୍ୱଜ ଶିବଙ୍କ ସମ୍ମୁଖରେ ଗଭୀର ତପସ୍ୟା କଲେ । ଶିବ ତାଙ୍କୁ ସ୍ୱପ୍ନରେ ଦର୍ଶନ ଦେଇ କହିଲେ– ବତ୍ସ, ତମେ ଓ ଅନଙ୍ଗପ୍ରଭା ଶାପଗ୍ରସ୍ତ ବିଦ୍ୟାଧର । ଆସନ୍ତା କାଲି ତମ ଶାପର ସମୟ ଶେଷ ହେବ । ତମେ ତମ ଲୋକକୁ ଫେରିଯିବ ।

ଅନଙ୍ଗପ୍ରଭା ମଧ୍ୟ ଅନୁରୂପ ସ୍ୱପ୍ନ ଦେଖିଲେ । ସେମାନେ ଆନନ୍ଦରେ ଆଖି ଖୋଲିଲେ ଓ ପରସ୍ପରକୁ ନିଜ ନିଜର ସ୍ୱପ୍ନ ବିଷୟରେ କହିଲେ ।

ଅନଙ୍ଗପ୍ରଭା ଆନନ୍ଦରେ ସାଗର ବର୍ମାଙ୍କୁ କହିଲେ– ପ୍ରିୟ ଆର୍ଯ୍ୟପୁତ୍ର । ମୋର ଅତୀତ କଥା ବର୍ତ୍ତମାନ ମନେ ପଡୁଛି । ମୁଁ ହେଉଛି ବୀରପୁରର ବିଦ୍ୟାଧର ରାଜା ସମରଙ୍କର ଝିଅ । ମୋ'ର ଏଇକ୍ଷଣି ହରାଇଥିବା ବିଦ୍ୟା ସବୁ ମନେପଡୁଛି ।

ଏତିକି ବେଳେ ସମର ସେଠାରେ ପହଞ୍ଚି ତାଙ୍କ ଝିଅକୁ କୋଳାଗ୍ରତ କରି ତାଙ୍କୁ ସବୁ ବିଦ୍ୟା ଦାନକଲେ । ତା'ପରେ ସାଗର ବର୍ମାଙ୍କୁ ସେ କହିଲେ– ତମେ ହେଉଛ ମଦନ ପ୍ରଭୁ ।

ଉଭୟ ରାଜା ଓ ରାଣୀ ସେମାନଙ୍କ ମରଣଶରୀରକୁ ପବିତ୍ର ଜଳରେ ତ୍ୟାଗକଲେ ଓ ସେମାନଙ୍କ ବିଦ୍ୟାଧର ଶରୀରକୁ ଫେରି ପାଇଲେ । ସମର, ମଦନପ୍ରଭୁ ଓ ଅନଙ୍ଗପ୍ରଭା ସ୍ୱର୍ଗରେ ସେମାନଙ୍କର ଘରକୁ ଉଡ଼ିଗଲେ । ସମର ତାଙ୍କ ଝିଅର ମଦନପ୍ରଭୁଙ୍କ ସହିତ ବିବାହକୁ ମହାଆଡ଼ମ୍ବରରେ ପାଳନ କଲେ । ସମସ୍ତେ ସେମାନଙ୍କ ଲୋକରେ ସୁଖରେ ରହିଲେ ।

କଥାଟି ଶୁଣାଇ ସାରି ଗୋମୁଖ ମନ୍ତବ୍ୟ ଦେଲେ– ନିଷିଦ୍ଧ ପଥରେ ଗମନ କଲେ ସ୍ୱର୍ଗର ଅଧିବାସୀ ହେଲେ ବି ଏମିତି ବିପଦରେ ପଡ଼ନ୍ତି ।

ସବୁଦିନ ଭଳି ପରଦିନ ସକାଳେ ସମସ୍ତେ ଏକାଠି ହୁଅନ୍ତେ ବାହାରେ ଅପେକ୍ଷା କରିଥିବା ଚିରାକୁଗା ପିନ୍ଧା ଭିକାରୀ ପ୍ରତି ଦୟା କରିବାକୁ ମରୁଭୂତି ରାଜକୁମାରଙ୍କୁ ଅନୁରୋଧ କଲେ । ଗୋମୁଖ



ମରୁଭୂତିଙ୍କ ଅନୁରୋଧରେ ହସି ପକାଇଲେ ଓ ରାଜକୁମାରଙ୍କୁ କହିଲେ– ମରୁଭୂତି ଯାହା କହିଲେ ସତ, କିନ୍ତୁ ସେଥିପାଇଁ ଆପଣଙ୍କର କିଛି ଦୋଷ ନାହିଁ । ଜଣେ ଅଭାବୀ ବା ଗରୀବ ଲୋକର କର୍ମଫଳ ନସରିବା ପର୍ଯ୍ୟନ୍ତ ଜଣେ ଦାନୀ ମଧ୍ୟ ତା'ପ୍ରତି ଦୃଷ୍ଟିଦେଇ ନ ପାରନ୍ତି । ଯେତେବେଳେ ସେ ପାପରୁ ମୁକ୍ତ ହୋଇଯାଏ, ଭାଗ୍ୟ ଦେବୀ ତାକୁ ପ୍ରସନ୍ନ ହୁଅନ୍ତି । କେହି ବାଧା ଦେଲେ ବି ଧନଦାନ ତା' ପାଖକୁ ଆପେ ଆପେ ଚାଲିଯାଏ । ଲୁହାର କବାଟଟା ଉପରେ ହୀରାର କଲମରେ ଭାଗ୍ୟ ଲେଖା ହୋଇଥାଏ । ରାଜାଙ୍କ ଦ୍ୱାରମୁହଁରେ ଠିଆ ହୋଇଥିବା ଗୋଟିଏ ଭିକାରୀ କଥା କହୁଛି ଶୁଣନ୍ତୁ :

# ଭିକ୍ଷୁକ କର୍ପଟିକ କଥା

ଲକ୍ଷପୁର ନଗରର ରାଜା ଥିଲେ ଲକ୍ଷଦତ୍ତ । ଖୁସିଥିଲେ ସେ ଯେକୌଣସି ଲୋକକୁ ଲକ୍ଷେଟଙ୍କା ଦାନ ଦେବାକୁ ମଧ୍ୟ ପଛାଉ ନଥିଲେ । ଖରା ଓ ବର୍ଷାକୁ ଖାତିର ନକରି ଲାଭଦତ୍ତ ନାମକ ଭିଖାରୀ ନଅରର ମୁଖ୍ୟ ଦ୍ୱାରରେ ସବୁଦିନ ସମ୍ମୁଖରେ ଠିଆ ହେଉଥିଲା । ଯଦିଓ ରାଜାଙ୍କ ଦାନୀ ଭାବରେ ଖ୍ୟାତି ଥିଲା, ସେ ଲାଭଦତ୍ତକୁ କିଛି ଦେଉ ନଥିଲେ । ଥରେ ରାଜା ଶିକାର କରିବାକୁ ଗଲେ ଓ ଲାଭଦତ୍ତ ଖଣ୍ଡେ କାଠ ମୁଣ୍ଡିଆକୁ ସାଙ୍ଗରେ ଏକମାତ୍ର ଅସ୍ତ୍ରରୂପେ ଧରି ତାଙ୍କ ପଛେ ପଛେ ଗଲା । ରାଜା ହାତୀ ଚଢ଼ି ଯାଉଥିଲେ ଓ ତାଙ୍କର ଅନୁଗାମୀମାନେ ଘୋଡ଼ା ଚଢ଼ିଥିଲେ । ସମସ୍ତେ ଧନୁ ଓ ଶର ଧରିଥିଲେ । ସେମାନେ ବାଘ, ସିଂହ ଓ ଭାଲୁମାନଙ୍କୁ ମାରିଲେ । ଭିକାରୀ ଶରଟିଏ ପରି ଦ୍ରୁତଗତିରେ ବଣୁଆ ପଶୁମାନଙ୍କୁ ଗୋଡ଼ାଇଲା ଓ ଭୀମ ତାଙ୍କ ଗଦାରେ ଶତ୍ରୁମାନଙ୍କୁ ମାରିଲା ପରି ସେ ତା'ର କାଠମୁଣ୍ଡିଆରେ କେତେଗୁଡ଼ାଏ ବାଘ, ସିଂହ ଓ ଭାଲୁଙ୍କୁ ମାରିଲା । ରାଜା ତା' ବୀରତ୍ୱରେ ବିସ୍ମିତହୋଇ ତାକୁ ବହୁତ ପ୍ରଶଂସା କଲେ କିନ୍ତୁ ତାକୁ କିଛି ଦେଲେନାହିଁ । ଶିକାରୀ ଦଳ ଫେରି ଆସିଲେ ଓ ଭିକାରୀ ଫେରିଆସି ପୂର୍ବପରି ନଅରର ମୁଖ୍ୟଦ୍ୱାର ସମ୍ମୁଖରେ ଠିଆହେଲା ।

କିଛିଦିନ ପରେ ରାଜା ଓ ପଡ଼ୋଶୀ ରାଜାଙ୍କ ସହିତ ରାଜ୍ୟର ସୀମା ସମ୍ପର୍କରେ କଳି ହେଲା । ଉଭୟ ପକ୍ଷ ସମସ୍ୟାର ସମାଧାନ ପାଇଁ ଯୁଦ୍ଧ କରିବାକୁ ଗୋଟାଏ ଖୋଲା ପଡ଼ିଆରେ ପରସ୍ପରକୁ ଭେଟିଲେ । ଭିଖାରୀ ଗୋଟାଏ ଓଢ଼ଣିଆ ଓ ଶକ୍ତ କାଠମୁଣ୍ଡିଆ ନେଇ ଯୁଦ୍ଧରେ ବହୁତ ଗୁଡ଼ାଏ ମୁଣ୍ଡକୁ ଗଡ଼ାଇ ଦେଲା । ମୁଖ୍ୟତଃ ତା'ର ଚମତ୍କାରିତା ଯୋଗୁ ରାଜା ଯୁଦ୍ଧରେ ଜିଣିଲେ ।

ପାଞ୍ଚ ବର୍ଷ ବିତିଗଲା ଓ ଭିଖାରୀ ତା' କାଠ ମୁଣ୍ଡିଆ ସାହାଯ୍ୟରେ ଜୀବନଧାରଣ କଲା । ଷଷ୍ଠ ବର୍ଷର ପ୍ରାରମ୍ଭରେ ରାଜା ଭିଖାରୀ ଓ ତା' ଅବସ୍ଥାକୁ ମନେ ପକାଇଲେ । ସେ ଗୋଟିଏ ତରଭୁଜ ଅଣାଇଲେ ଓ ତରଭୁଜ ଭିତରେ ହୀରା ଭର୍ତ୍ତିକରି ତା' ମୁହଁକୁ ବନ୍ଦ କରିଦେଲେ । ତା'ପରେ ସେ ଦରବାର ବସାଇ ଭିଖାରୀକୁ ଡକାଇ ତାଙ୍କ ପାଖରେ ବସିବାକୁ ଆସନ ଦେଇ ତାକୁ ଭଜନଟିଏ ଗାଇବାକୁ କହିଲେ ।

ଭିଖାରୀ ଭଜନ ଗାଇଲା :

ସାଗରରେ କେତେ ଜଳ
ନଦୀମାନେ ପୁଣି ଜଳ ଢାଳନ୍ତି ସେଥିରେ
ମା' ଲକ୍ଷ୍ମୀ ଧନୀଙ୍କର ସଦା
ଗରୀବକୁ ନ ଚାହାଁନ୍ତି ସେ ଆଡ଼ ଆଖିରେ ।

ରାଜା ବାରମ୍ବାର ତାକୁ ସେ ଭଜନକୁ ବୋଲାଇଲେ । ସେ ତା' ଉପରେ ସନ୍ତୁଷ୍ଟ ହୋଇ ତାକୁ ତରଭୁଜଟିକୁ ଉପହାର ଦେଲେ । ସଭାସଦ୍‌ମାନେ ଭାବିଲେ– ବିଚରା ! ଖୁସି ହେଲେ ରାଜା ତ

ଲକ୍ଷ ଲକ୍ଷ ଦାନ କରୁଛନ୍ତି ଆଉ ଭିଖାରୀକୁ ତରଭୁଜଟାଏ ଦେଲେ । ହତଭାଗାଟାଏ ! ସବୁ ଇଚ୍ଛା ପୂରଣ କରୁଥିବା କଳ୍ପବୃକ୍ଷର କାଠ ବି ହତଭାଗାଙ୍କ ପାଇଁ ଜାଳେଣୀ କାଠ ହୁଏ । ସଭାସଦ୍‌ମାନେ ତରଭୁଜ ଭିତରେ କ'ଣ ଥିଲା ଜାଣି ନଥିଲେ, ସେହିପରି ଭିଖାରୀଟି ମଧ୍ୟ ଜାଣି ନଥିଲା । ସେ ତରଭୁଜଟିକୁ ନେଇ ଚାଲିଗଲା ।

ପରଦିନ ସକାଳେ ରାଜବଟି ନାମକ ଜଣେ ବୌଦ୍ଧ ସନ୍ୟାସୀ ଭିଖାରୀ ପାଖକୁ ଆସିଲେ । ସେ ତାକୁ ତରଭୁଜ ବଦଳରେ ଲୁଗାଟିଏ ଦେଲେ, ତା'ପରେ ସେ ତରଭୁଜଟିକୁ ଆଣି ରାଜାଙ୍କୁ ଉପହାର ଦେଲେ । ରାଜା ତରଭୁଜଟିକୁ ଚିହ୍ନିଲେ ଓ ପଚାରିବାରୁ ସନ୍ୟାସୀ ସେଇଟିକୁ ଭିଖାରୀଠାରୁ ଲୁଗା ବଦଳରେ ଆଣିଛନ୍ତି ବୋଲି କହିଲେ । ବିସ୍ମୟ ଓ ଦୁଃଖରେ ରାଜା ମନକୁ ମନ କହିଲେ— ବିଚରା ! ଭିଖାରୀଟାର ପାପ ଏପର୍ଯ୍ୟନ୍ତ ଶେଷ ହୋଇନାହିଁ ।

ଭିଖାରୀ କର୍ପଟକ ଲୁଗାଟିକୁ ବିକି ସେଇ ଟଙ୍କାରେ ଖାଇଲା ଓ ପୁଣି ପୂର୍ବଭଳି ନଅରର ମୁଖ୍ୟ ଦ୍ୱାର ସମ୍ମୁଖରେ ଠିଆହୋଇ ରହିଲା ।

ତା'ପରଦିନ ଦରବାରକୁ ସବୁ ସଭାସଦ୍ ଆସିଲା ପରେ ରାଜା ଭିଖାରୀଟିକୁ ଡକାଇ ପୂର୍ବ ଗୀତ ଗାନ କରାଇଲେ ଓ ତାକୁ ସେଇ ତରଭୁଜଟିକୁ ଉପହାର ଦେଲେ । ସଭାସଦ୍‌ମାନେ ଜାଣିଥିଲେ ତରଭୁଜଟିର ମୂଲ୍ୟ ସେମିତି କିଛି ନୁହେଁ ଓ ରାଜା ପୁଣି ଭିକାରୀକୁ ତରଭୁଜ ଦେବାରେ ବିସ୍ମିତହେଲେ । ଭିଖାରୀ ଫଳଟିକୁ ନେଇ ଚାଲିଗଲା । ଏଇ ସମୟରେ ଜଣେ ଅପରିଚିତ ଲୋକ ରାଜାଙ୍କୁ ନଅରରେ ଭେଟିବାକୁ ଆସିଲା । ସେ ଶୁଭ ଶକୁନକୁ ଅପେକ୍ଷା କରୁଥିଲା । ଭିଖାରୀ ହାତରେ ଫଳଟିକୁ ଦେଖି ସେ ତାକୁ ଲୁଗା ଯୋଡ଼ାଟିଏ ଦେଇ କିଣି ନେଲା । ଅନୁମତି ନେଇ ସେ ରାଜାଙ୍କୁ ନଇଁ ନମସ୍କାର କଲା ଓ ଫଳଟିକୁ ଉପହାର ଦେଲା । ରାଜା ଅପରିଚିତ ଲୋକଟିକୁ ସେ ଫଳ କିପରି ପାଇଲା ପଚାରି ଜାଣିଲେ । ଭିଖାରୀର ଦୁର୍ଭାଗ୍ୟ ତାଙ୍କ ମନରେ ଦୁଃଖ ଦେଲା ।

ଦ୍ୱିତୀୟ ଥର ମଧ୍ୟ ସେଇ ଏକାକଥା ଘଟିଲା । ରାଜା ସେଇ ଏକା ଗୀତ ଶୁଣିଲେ ଓ ଭିଖାରୀକୁ ସେଇ ଫଳ ଦେଲେ । କିଛି ସୁନା ବଦଳରେ ଭିଖାରୀ ଫଳଟିକୁ ରାଜନର୍ତ୍ତକୀକୁ ଦେଇ ଦେଲା ଓ ସୁନାକୁ ବିକିଦେଇ କିଛି ଖାଦ୍ୟ ପଦାର୍ଥ, ମଦ ଓ ତା'ପାଇଁ ଲୁଗାପଟା କିଣିଲା । ରାଜନର୍ତ୍ତକୀ ରାଜାଙ୍କୁ ସମ୍ମାନ ଜଣାଇ ଫଳଟିକୁ ଉପହାର ଦେଲା । ରାଜା ଶୀଘ୍ର ଜାଣିଗଲେ ସେ କେମିତି ଫଳଟିକୁ ପାଇଲା । ସେ ମନକୁ ମନ ବିସ୍ମୟରେ କହିଲେ— ଭିଖାରୀକୁ ଭାଗ୍ୟଦେବୀ ପ୍ରସନ୍ନ ହେବେ ନାହିଁ । ମୋ ଭାଗ୍ୟ ଭଲ, ତେଣୁ ଏଇ ମୂଲ୍ୟବାନ ହୀରାସବୁ ମୋ ପାଖକୁ ବାରମ୍ବାର ଫେରି ଆସୁଛି ।

ଚତୁର୍ଥଦିନ ମଧ୍ୟ ସେଇ ଏକା ଘଟଣା ଘଟିଲା, କିନ୍ତୁ ଏଥର ଭିଖାରୀ ରାଜାଙ୍କ ହାତରୁ ଫଳଟି ନେଲାବେଳେ ଫଳଟି ଖସିଯାଇ ତଳେ ପଡ଼ିଗଲା ଓ ଦୁଇ ଫାଳହୋଇ ଫାଟିଗଲା । ସଭାସଦ୍‌ମାନଙ୍କୁ ବିସ୍ମିତ କରି ଝଲମଲ କରୁଥିବା ହୀରାଗୁଡ଼ିକ ବିଛାଡ଼ି ପଡ଼ିଲା । ସମସ୍ତେ ରାଜାଙ୍କୁ ବିସ୍ମୟରେ ଚାହିଁଥିଲେ । ରାଜା କହିଲେ— ଭାଗ୍ୟଦେବୀ ଭିଖାରୀଟିକୁ ପ୍ରସନ୍ନ ହେବେ କି ନାହିଁ ପରୀକ୍ଷା କରିବାକୁ ମୁଁ ଚେଷ୍ଟା କରୁଥିଲି । ଧନ ଓ କେତେଖଣ୍ଡ ଗାଁ ଦେଇ ରାଜା ଭିଖାରିକୁ ଜଣେ ସାମନ୍ତ କରିଦେଲେ । ଭିଖାରୀ ଖୁସିହୋଇ ରାଜାଙ୍କୁ ନମସ୍କାର କଲା ଓ ତା'ର ଅବଶିଷ୍ଟ ଜୀବନ ରାଜାଙ୍କର ସେବାକରି ଆନନ୍ଦରେ କଟାଇଲା ।

କଥାଟି ଶୁଣାଇ ସାରି ଗୋମୁଖ କହିଲେ— ଜଣେ ଲୋକର ସମସ୍ତ ପାପ କ୍ଷୟ ନହେବା ପର୍ଯ୍ୟନ୍ତ, ସେବକ ତା'ର ମାଲିକଙ୍କ କରୁଣା ପାଇପାରିବ ନାହିଁ । ଦେବ ! ଏଇ ଭିଖାରୀ ଏପର୍ଯ୍ୟନ୍ତ ପାପରୁ ପୁରାପୁରି ମୁକ୍ତ ହୋଇନାହିଁ ।



ଦିନେ ରାଜକୁମାର ନରବାହନଦତ୍ତ ବନ୍ଧୁ ମେଳରେ ବସିଥିବାବେଳେ ଦକ୍ଷିଣ ଦେଶରୁ ପ୍ରଲମ୍ବବାହୁ ନାମରେ ଜଣେ ବ୍ରାହ୍ମଣ ଯୁବକ ତାଙ୍କ ପାଖକୁ ଚାକିରୀ ପାଇଁ ଆସିଲା । ଦ୍ୱାରପାଳମାନେ ତାକୁ ରାଜକୁମାରଙ୍କ ପାଖକୁ ନେଇଗଲେ । ସେ ତାକୁ ସମ୍ମାନ ଜଣାଇ କହିଲା— ମହିମାଙ୍କର ଖ୍ୟାତି ଶୁଣି ମୁଁ ଆପଣଙ୍କର ସେବା କରିବାକୁ ଆସିଛି । ଆପଣ ଯେ କୌଣସି ପଶୁ ଉପରେ ଚଢ଼ି ପୃଥିବୀରେ ବୁଲିଲେ ମୁଁ ସବୁବେଳେ ଆପଣଙ୍କ ପାଖେ ପାଖେ ରହିବି, ଏପରିକି ଫୁଟେ ପଛରେ ମଧ୍ୟ ନୁହେଁ । କିନ୍ତୁ ଆପଣ ଆକାଶମାର୍ଗରେ ଗଲେ ମୁଁ ଆପଣଙ୍କୁ ଅନୁସରଣ କରିପାରିବି ନାହିଁ । ଆପଣ ବିଦ୍ୟାଧରମାନଙ୍କର ସମ୍ରାଟ୍ ହେବେ ବୋଲି ସମସ୍ତେ ଜାଣନ୍ତି । ତେଣୁ ମୁଁ ଆପଣଙ୍କର ଆକାଶମାର୍ଗରେ ଯିବା କଥା କହିଲି । ମୋତେ ଆପଣ ମାସକୁ ଶହେ ସୁନା ମୋହର ଦେବେ ।

ତା' କଥା ଶୁଣି ରାଜକୁମାର ତାକୁ ଚାହିଁଲେ ଏବଂ ତା' ଚେହେରାରୁ ରାଜକୁମାର ଜାଣିଗଲେ ଯେ ସେ ପ୍ରକୃତରେ ଜଣେ ବୀର ଓ ସେ ତା' କଥା ରଖିବ । ରାଜା ତାକୁ ମାସିକ ଶହେ ସୁନାମୋହର ଦେବାକୁ ସମ୍ମତ ହେଲେ ଓ ତାଙ୍କର ବ୍ୟକ୍ତିଗତ ସେବକ ଭାବରେ ନିଯୁକ୍ତି ଦେଲେ । ଗୋମୁଖ ରାଜକୁମାରଙ୍କ କାର୍ଯ୍ୟରେ ଖୁସିହୋଇ କହିଲେ— ମହିମା ଦୟାବାନ । ରାଜାଙ୍କ ସେବକ ଏହିପରି ହେବା ଉଚିତ । ଜଣେ ବିଶ୍ୱସ୍ତ ସେବକଙ୍କର କଥା କହୁଛି, ଶୁଣନ୍ତୁ :

## ବୀରବର କଥା

ବିକ୍ରମପୁର ନାମରେ ଗୋଟିଏ ବଡ଼ ନଗରରେ ରାଜା ବିକ୍ରମତୁଙ୍ଗ ଶାସନ କରୁଥିଲେ । ସେ ଜଣେ ମହାନ୍ ଶାସକ ଥିଲେ । ସେ ଧର୍ମପ୍ରତି ଆସକ୍ତ ଥିଲେ, କୌଣସି ସ୍ତ୍ରୀଲୋକ ବା ଶିକାର ପ୍ରତି ତାଙ୍କର ଆସକ୍ତି ନଥିଲା ।

ଦିନେ ଜଣେ ସୁନ୍ଦର ବ୍ରାହ୍ମଣ ଯୁବକ ବୀରବର ରାଜାଙ୍କର ଦର୍ଶନ ପାଇଁ ଆସିଲା । ତା'ର ସ୍ତ୍ରୀର ନାମ ଧର୍ମବତୀ, ଝିଅର ନାମ ବୀରବତୀ ଓ ପୁଅର ନାମ ସତ୍ୟବର । ସେ ଜଣେ ସାହସୀ ଯୋଦ୍ଧା । ସେ ଖଣ୍ଡାଟିଏ ଅଣ୍ଟାରେ ଝୁଲାଇଥିଲା ଓ ଗୋଟିଏ ହାତରେ ବର୍ଚ୍ଛା ଓ ଅନ୍ୟ ହାତରେ ଢାଲ ଧରିଥିଲା । ଏଇ ସବୁ ହତିଆର ସହିତ ଆସି ସେ ରାଜାଙ୍କ ପାଖରେ ଚାକିରୀ ମାଗିଲା ଓ ଦରମା ବାବଦକୁ ମାସକୁ ପାଞ୍ଚଶହ ସୁନା ମୋହର ନେବ ବୋଲି କହିଲା । ରାଜା ତା' ଔଜ୍ଜ୍ୱଲ୍ୟରେ ମୁଗ୍ଧହୋଇ ତାକୁ ନିଜ ସେବାରେ ନିଯୁକ୍ତି ଦେବାକୁ ଓ ସେ ମାଗିଥିବା ଦରମା ଦେବାକୁ ରାଜି ହୋଇଗଲେ । ସେ କୁଆଡ଼େ ଯାଉଛି ଓ କ'ଣ କରୁଛି ଜାଣିବାକୁ କୌତୂହଳୀ ହୋଇ ରାଜା ତାଙ୍କର ଗୁପ୍ତଚରମାନଙ୍କୁ ତା' ପିଛା ଲଗାଇଲେ ଓ ଏତେ ଦରମାକୁ ସେ କିପରି ଖର୍ଚ୍ଚ କରୁଛି ଜଣାଇବାକୁ ସେମାନଙ୍କୁ ନିର୍ଦ୍ଦେଶ ଦେଲେ ।

ବୀରବର ତା'ର ଓ ତା' ପରିବାରର ଖାଦ୍ୟ ପାଇଁ ଶହେ ମୋହର, ପୋଷାକପତ୍ର ପାଇଁ ଶହେ ମୋହର, ଭଗବାନ ବିଷ୍ଣୁ ଓ ଭଗବାନ ଶିବଙ୍କ ପୂଜା ପାଇଁ ଶହେ ମୋହର ଓ ଅବଶିଷ୍ଟ ଦୁଇଶହ ମୋହର ଦାନରେ ଖର୍ଚ୍ଚ କଲା । ସକାଳେ ଗାଧୋଇ ଓ ନିତ୍ୟକର୍ମ ସାରି ସେ ନଅରକୁ ଯାଇ ଗାଧୁଆ ପର୍ଯ୍ୟନ୍ତ ମୁଖ୍ୟ ଦ୍ୱାର ନିକଟରେ ଠିଆ ହୋଇରହେ । ତା'ପରେ ସେ ଘରକୁ ଯାଏ, ଖାଏ ଓ ତା'ର ସ୍ତ୍ରୀ ଓ ପିଲାମାନଙ୍କୁ କିଛି ସମୟ ଧର୍ମ ଶିକ୍ଷା ଦିଏ । ତା'ପରେ ସନ୍ଧ୍ୟାବେଳକୁ ସେ ନଅରକୁ ଯାଇ ନଅରର ମୁଖ୍ୟ ଦ୍ୱାର ନିକଟରେ ସାରାରାତି ଜଗିରହେ । ଏହିପରି କେବଳ ତା'ର ଶାରୀରିକ ଶୌଚକର୍ମ ଶେଷ କରିବା ସମୟ ସେ ହାତରେ ଖଣ୍ଡାଧରି ନଅରର ସମ୍ମୁଖ ଦ୍ୱାରରେ ଜଗିରହେ ।

ଦିନଗଡ଼ି ଚାଲିଲା, ସେମିତି କିଛି ବିଶେଷ ଘଟଣା ଘଟିଲା ନାହିଁ । ବର୍ଷାଦିନ ଆସିଲା । ଘଡ଼ଘଡ଼ି ମାରୁଥିଲା ଓ ବର୍ଷା ମୁଷଳଧାରାରେ ବର୍ଷୁଥିଲା, କିନ୍ତୁ ବୀରବର ତା' ସ୍ଥାନ ଛାଡ଼ି ନଥିଲା । ତସ୍ତ ଖୁଣ୍ଟ ପରି ସେ ଠିଆ ହୋଇରହିଥିଲା । ତା'ଉପରେ ତାଙ୍କ ଦୃଷ୍ଟି ରଖିଥିବାରୁ ରାଜା ବୀରବରକୁ ସବୁବେଳେ ତା' ନିଜ ସ୍ଥାନରେ ଠିଆ ହୋଇଥିବା ଦେଖୁଥିଲେ ।

ଦିନେ ଅଧ ରାତିରେ ରାଜା ତାଙ୍କ ନଅରର ଅଳିନ୍ଦକୁ ଆସି ଚିତ୍କାର କରି ଡାକିଲେ– ଦ୍ୱାର ପାଖରେ କିଏ ?

ବୀରବର ଉତ୍ତର ଦେଲା– ମୁଁ ମଣିମା । ରାଜା ଭାବିଲେ– ଏଇ ଲୋକଟା ଖୁବ୍ ପାରିବାର ଓ ଉଚ୍ଚପଦବୀ ପାଇବା ଯୋଗ୍ୟ । ଏଇ କଥା ଭାବୁଥାନ୍ତୁ ରାଜା ଦ୍ୱାରରୁ ଗୋଟିଏ ସ୍ତ୍ରୀଲୋକର କାନ୍ଦଣା ଶୁଣିବାକୁ ପାଇଲେ । ସେ ଚିନ୍ତାକଲେ– ମୋ ରାଜ୍ୟରେ କିଛି ବିପଦ ପଡ଼ିଛି । ସେଇ ସ୍ତ୍ରୀଲୋକଟି କିଏ ? ସେ କାହିଁକି କାନ୍ଦୁଛି ? ଏଇଆ ଭାବି ସେ ବୀରବରକୁ ଡାକିଲେ ଓ ଏତେ ରାତିରେ କାନ୍ଦୁଥିବା ସ୍ତ୍ରୀଲୋକ ବିଷୟରେ ଖୋଜ ଖବର ନେବାକୁ ଆଦେଶ ଦେଲେ ।

ବୀରବର ସଙ୍ଗେ ସଙ୍ଗେ ଖଣ୍ଡାଧରି ଚାଲିଲା । ମୂଷଳ ବର୍ଷା ହେଉଥିଲା, ତଥାପି ସେ କାନ୍ଦଣା ଆସୁଥିବା ଦିଗକୁ ଚାଲିଲା । ରାଜା ଖୁବ୍ ଆନନ୍ଦିତ ହେଲେ ଓ ବୀରବରର କାର୍ଯ୍ୟ ପ୍ରତ୍ୟକ୍ଷ ଭାବରେ ଦେଖିବାକୁ ଇଚ୍ଛାକରି ଛଦ୍ମବେଶରେ ତାକୁ ପିଛା କଲେ । କାନ୍ଦଣାକୁ ଅନୁସରଣ କରି ବୀରବର ନଗର ବାହାରେ ଥିବା ହ୍ରଦ କୂଳରେ ପହଞ୍ଚିଲା । ହ୍ରଦ ମଝିରେ ସ୍ତ୍ରୀଲୋକଟିଏ କାନ୍ଦୁଥିବା ଦେଖିଲା । ସ୍ତ୍ରୀଲୋକଟି କାନ୍ଦି କାନ୍ଦି କହୁଥିଲା– ହେ ମୋର ପ୍ରିୟ, ହେ ମୋର ଦୟାବାନ ଓ ସାହସୀ ପ୍ରଭୁ ! ତମେ ଯଦି ମୋତେ ଛାଡ଼ି ଚାଲିଯିବ ମୁଁ କେମିତି ବଞ୍ଚିବି ? ବୀରବର ହ୍ରଦକୂଳରେ ଠିଆହୋଇ ସେଇ ସ୍ତ୍ରୀଲୋକଟି ବିଷୟରେ ଓ ତା' କାନ୍ଦିବା ବିଷୟରେ ଜାଣିବାକୁ ଇଚ୍ଛା କରନ୍ତେ ସ୍ତ୍ରୀଲୋକଟି କହିଲା– ପୁଅ, ମୁଁ ପୃଥିବୀ ମାତା ବୋଲି ଜାଣ । ଏଇକ୍ଷଣି ଏଇ ନ୍ୟାୟବନ୍ତ ରାଜା ବିକ୍ରମତୁଙ୍ଗ ହେଉଛନ୍ତି ମୋର ସ୍ୱାମୀ । ଆଜିଠୁ ତିନି ଦିନରେ ତାଙ୍କୁ ମୃତ୍ୟୁ ଟାଣି ନେଇଯିବ । ମୁଁ କେଉଁଠୁ ଏମିତିକା ପ୍ରଭୁ ପାଇବି । ପୁଅ, ତେଣୁ ମୁଁ କାନ୍ଦୁଛି । ସ୍ୱର୍ଗର ଦେବତା ସୁପ୍ରଭୁ ଯେମିତି ତାଙ୍କ ଭାଗ୍ୟ ଜାଣି ପାରୁଥିଲେ, ମୁଁ ସେମିତି ମୋ ପ୍ରଭୁଙ୍କ ଭବିଷ୍ୟତ ଜାଣିପାରେ । ସୁପ୍ରଭୁଙ୍କ କଥା କହୁଚି, ଶୁଣ ।

ଏଇ ସୁପ୍ରଭୁ ଜାଣିପାରିଲେ ଯେ ସେ ସପ୍ତମ ଦିନ ସ୍ୱର୍ଗରୁ ପତିତ ହୋଇ ଘୁଷୁରି ରୂପରେ ଜନ୍ମ ନେବେ । ସ୍ୱର୍ଗରୁ ପତିତ ହେବା ଚିନ୍ତା ତାଙ୍କୁ ଏମିତି ଦୁଃଖଦେଲା ଯେ ସେ ଜୋର୍‌ରେ କାନ୍ଦି କାନ୍ଦି କହିଲେ– ହେ ସ୍ୱର୍ଗ ! ହେ ଅପ୍ସରାଗଣ ! ହେ ନନ୍ଦନକାନନ ! ମୁଁ କେମିତି ଘୁଷୁରି ପେଟରେ ରହିବି ଓ ଘୁଷୁରି ହୋଇ ପଙ୍କରେ ଘାଣ୍ଟିହେବି ? ଇନ୍ଦ୍ର ତାଙ୍କ କାନ୍ଦଣା ଶୁଣି ତାଙ୍କ ପାଖକୁ ଗଲେ । ତାଙ୍କ କାନ୍ଦଣା ବିଷୟରେ ପଚାରି ବୁଝିଲେ ଓ ତାଙ୍କୁ କହିଲେ– ଶୁଣ, ଶିବଙ୍କ ନାମ ସ୍ମରଣ କରି ''ଓଁ ନମଃ ଶିବାୟ'' ଜପ କର । ତମେ ସ୍ୱର୍ଗରୁ ପତିତ ହେବ ନାହିଁ କି ଘୁଷୁରି ହୋଇ ଜନ୍ମ ହେବ ନାହିଁ । ସୁପ୍ରଭୁ ଇନ୍ଦ୍ରଙ୍କ ଉପଦେଶକୁ ଆନ୍ତରିକତାର ସହ ଗ୍ରହଣ କରି ଶିବଙ୍କ ନାମକୁ ଅବିରତ ଜପକଲେ । ଫଳରେ ସେ ସ୍ୱର୍ଗରୁ ପତିତ ହୋଇ ଘୁଷୁରି ଜନ୍ମ ନେବାରୁ ବଞ୍ଚିଗଲେ । ସୁପ୍ରଭୁ ସାଧନାକରି ଆଶୀର୍ବାଦ ଓ ସୁଖ ପାଇଲା ପରି ମୁଁ ଏଇ ନିଶ୍ଚିତ ବିପଦରୁ କୌଣସି ମତେ ରକ୍ଷା ପାଇବାକୁ ଚାହୁଁଛି ।

ବୀରବର ପୃଥିବୀ ମାତାଙ୍କ କରୁଣ କାହାଣୀ ଶୁଣି ସେଇ ବିପଦରୁ ରାଜାଙ୍କୁ ରକ୍ଷା କରିବାର କିଛି ଉପାୟ ଅଛି କି ବୋଲି ଜାଣିବାକୁ ଚାହିଁଲା । ପୃଥିବୀ ମାତା ଉତ୍ତର ଦେଲେ ଯେ ଗୋଟିଏ ମାତ୍ର ଉପାୟ ଅଛି ଓ ସେ ଉପାୟ ବୀରବରର ନିଜ ହାତରେ । ବୀରବର ଆନନ୍ଦିତ ହୋଇ କହିଲା– ମା', ସେଇ ଉପାୟ ମୋତେ କୁହନ୍ତୁ । ମୁଁ ଯଦି ମୋ ରାଜାଙ୍କର ସେବା କରିପାରିବି ଓ ତା' ସହିତ ଆପଣଙ୍କ ଭଳି ଦିବ୍ୟ ମା'ଙ୍କୁ ସୁଖ ଦେଇପାରିବି, ତା'ହେଲେ ମୋଠାରୁ ଆଉ ଭାଗ୍ୟବାନ କିଏ ଅଛି ? ସେଥିପାଇଁ



ମୋତେ ବା ମୋ ପରିବାରରୁ କାହାକୁ ବା ଆବଶ୍ୟକ ହେଲେ ସମସ୍ତଙ୍କୁ ବଳି ଦେବାକୁ ମୁଁ ପଛାଇବି ନାହିଁ । ଦୟାକରି ମୋତେ ସେଇ ଉପାୟ ବତାନ୍ତୁ ।

ପୃଥିବୀ ମାତା କହିଲେ– ପୁଅ, ନଅର ନିକଟରେ ଚଣ୍ଡୀଙ୍କ ମନ୍ଦିର ଥିବା ତମେ ଜାଣ । ଯଦି ତମେ ତମ ପୁଅକୁ ତାଙ୍କ ନିକଟରେ ବଳୀ ଦିଅ, ସେ ସନ୍ତୁଷ୍ଟ ହେବେ ଓ ରାଜା ମୃତ୍ୟୁମୁଖରୁ ବର୍ତ୍ତିଯିବେ । ଏହାବ୍ୟତୀତ ତାଙ୍କୁ ବଞ୍ଚାଇ ରଖିବାକୁ ଆଉ କିଛି ଉପାୟ ନାହିଁ ।

ବୀରବର ପୃଥିବୀ ମାତାଙ୍କୁ ସେ ବତାଇଥିବା ଉପାୟ ମୁତାବକ କାମ କରିବାକୁ ପ୍ରତିଶ୍ରୁତି ଦେଲା ଓ ମାତା ଅନ୍ତର୍ଦ୍ଧାନ ହୋଇଗଲେ । ରାଜା ବୀରବର ଆଗକୁ କ'ଣ କରିବାକୁ ଯାଉଛି ଜାଣିବାକୁ ତାକୁ ଲୁଚି ଲୁଚି ଅନୁସରଣ କଲେ ।

ବୀରବର ଘରକୁ ଯାଇ ତା' ସ୍ତ୍ରୀକୁ ଉଠାଇ ସବୁ କଥା କହିଲା । ରାଜାଙ୍କୁ ସେବା କରିବା ସମୟ ଆସିଯାଇଛି ଭାବି ତା' ସ୍ତ୍ରୀ ଆନନ୍ଦିତା ହେଲା । ସେ ତା' ସ୍ୱାମୀକୁ ପୁଅକୁ ନିଦରୁ ଉଠାଇବାକୁ କହିଲା । ବୀରବର ପୁଅକୁ ନିଦରୁ ଉଠାଇ ରାଜାଙ୍କ ଜୀବନ ରକ୍ଷାପାଇଁ ତାକୁ ଚଣ୍ଡୀଙ୍କ ପାଖରେ ବଳୀ ଦିଆଯିବ ବୋଲି କହିଲା । ପୁଅ କହିଲା, ବାପା ! ମୁଁ ଯଦି ମୋ ଜୀବନ ଦେଇ ରାଜାଙ୍କ ସେବା କରିପାରିବି, ମୁଁ ଭାଗ୍ୟବାନ ନୁହେଁ କି ? ତମେ ସେଇଆ କର । ମୁଁ ପ୍ରସ୍ତୁତ । ମୁଁ ରାଜାଙ୍କ ଅନ୍ନ ଖାଇଛି ଓ ତାଙ୍କ ଧାରୁଆ । ଧାର ଶୁଝିବା ମୋ କର୍ତ୍ତବ୍ୟ ।

ବୀରବର ତା' ପୁଅକୁ କାନ୍ଧରେ ବସାଇ ସ୍ତ୍ରୀ ଓ ଝିଅ ସହିତ ଚଣ୍ଡୀ ମନ୍ଦିରକୁ ଗଲା । ରାଜା ମଧ୍ୟ ଲୁଚି ଲୁଚି ସେମାନଙ୍କ ପଛେ ପଛେ ଗଲେ । ମନ୍ଦିରରେ ପହଞ୍ଚିଲା ମାତ୍ରେ ଶିଶୁ ସତ୍ୟବର ତା' ବାପାର କାନ୍ଧ ଉପରୁ ଓହ୍ଲାଇ ପଡ଼ି ଦେବୀଙ୍କୁ ସାଷ୍ଟାଙ୍ଗ ନମସ୍କାର କରି ତାଙ୍କୁ ପ୍ରାର୍ଥନା କଲା– ଦେବୀ, ମୋ ମଥା ନିଅ । ରାଜା ବିକ୍ରମତୁଙ୍ଗ ସବୁଦିନ ପାଇଁ ପୃଥିବୀକୁ ଶାସନ କରନ୍ତୁ ଏଇ ଦୟାକର । ବୀରବର ତା' ପୁଅର ସ୍ଥିତପ୍ରଜ୍ଞା ଓ ନିଷ୍ଠାରେ ମୁଗ୍ଧ ହେଲା ଓ ଚଣ୍ଡୀଙ୍କ ପବିତ୍ର ନାମ ଉଚ୍ଚାରଣ କରି ଏକା ଚୋଟକେ ପୁଅର ମୁଣ୍ଡକୁ ଗଣ୍ଡିରୁ ଅଲଗା କରିଦେଲା । ପ୍ରଭୁର ସବୁବେଳେ ମଙ୍ଗଳ କାମନା କରୁଥିବା ସେବକ ଯେତେ ପରିବାର ଆସକ୍ତ ଓ ନିଜ ପ୍ରତି ଆସକ୍ତ ହେଲେ ମଧ୍ୟ ତା'ର ମାଲିକ ପ୍ରତି ନିଷ୍ଠାରୁ ସେ କେବେ ଓହରିଯାଏ ନାହିଁ । ଆକାଶରୁ ଶୂନ୍ୟବାଣୀ ହେଲା– ଧନ୍ୟ ବୀରବର, ଧନ୍ୟ । ତମର ଏକମାତ୍ର ପୁଅ ବଦଳରେ ତମେ ରାଜାର ଜୀବନ ରକ୍ଷା କଲ । ରାଜା ସବୁ ଘଟଣା ଲୁଚି ଲୁଚି ଦେଖୁଥିଲେ । ବୀରବରର ଝିଅ ତା' ଭାଇର ଶବ ପାଖରେ ପହଞ୍ଚି ତା' ଭାଇର ମୁଣ୍ଡକୁ ଉଠାଇ ନେଇ ଚୁମିଲା ଓ କାନ୍ଦି କାନ୍ଦି ସେଇଠାରେ ଟଳିପଡ଼ି ମରିଗଲା ।

ବୀରବରର ସ୍ତ୍ରୀ ତା' ସ୍ୱାମୀ ପାଖକୁ ଆସି ତାକୁ ନମସ୍କାର କଲା ଓ ପିଲାମାନଙ୍କ ଜୁଇରେ ମରିବା ପାଇଁ ଅନୁମତି ମାଗିଲା । ବୀରବର ତାକୁ ସମ୍ମତି ଦେଇ ମନ୍ଦିର ବେଢ଼ାରେ ପଡ଼ିଥିବା ଜାଳେଣି କାଠରେ ଅଗ୍ନିଟିଏ ଜଳାଇଲା । ତା'ର ସ୍ତ୍ରୀ ଅଗ୍ନି ଉପରକୁ ଚଢ଼ିଗଲା ଓ ଅଳ୍ପ ସମୟ ଭିତରେ ପୋଡ଼ି ପାଉଁଶ ହୋଇଗଲା । ରାଜାଙ୍କ ଋଣ ପୂରା ଶୁଝି ଦେଇଥିବାରୁ ବୀରବର ଆଉ ବଞ୍ଚି ନ ରହିବାକୁ ଠିକ୍ କଲା । ସେ ଚଣ୍ଡୀ ମାହେଶ୍ୱରୀଙ୍କୁ ପ୍ରାର୍ଥନା କଲା– ମୁଁ ତମଠାରେ ଶରଣ ପଶୁଛି । ମୁଁ ଆଉ ଏଇ ମିଛ ମାୟା ସଂସାରରେ ଘାଣ୍ଟିହେବି ନାହିଁ । ଏତିକି କହି ସେ ପ୍ରାର୍ଥନା ଶେଷ କଲା ଓ କିଛି ସମୟ ନିରବ ରହିଲା ପରେ ତା' ନିଜ ମୁଣ୍ଡ କାଟିବାକୁ ଖଣ୍ଡା ଉଠାଇଲା ।

ସେତିକିବେଳେ ଶୂନ୍ୟବାଣୀ ହେଲା– ବତ୍ସ ! ତରବରରେ କିଛି କର ନାହିଁ । ମୁଁ ତମର ମାନସିକ ଶକ୍ତି, ନିଷ୍ଠା ଓ ଲକ୍ଷ୍ୟରେ ସନ୍ତୁଷ୍ଟ । ତମେ କି ବର ମାଗୁଛ, ମାଗ ।

ବୀରବର କହିଲା– ଦେବୀ । ତମେ ଯଦି ମୋ ଉପରେ ସନ୍ତୁଷ୍ଟ, ରାଜା ବିକ୍ରମତୁଙ୍ଗ ଆଉ ଶହେ ବର୍ଷ ବଞ୍ଚନ୍ତୁ ।

ଦେବୀ 'ତଥାସ୍ତୁ' କହିବା ମାତ୍ରେ ବୀରବର ସ୍ତ୍ରୀ, ପୁଅ ଓ ଝିଅ ସମସ୍ତେ ଦେବୀଙ୍କ ଦୟାରୁ ଜୀବନ ଫେରି ପାଇଲେ । ବୀରବର ଖୁସିହେଲା । ସେ ଜାଣି ପାରିଲା ନାହିଁ ଯେ ରାଜା ସବୁ ଘଟଣାର ପ୍ରତ୍ୟକ୍ଷ ସାକ୍ଷୀ । ସେ ତା'ର ପରିବାର ସହିତ ଘରକୁ ଫେରିଗଲା । ଏସବୁ ଘଟଣା ମାତ୍ର କେଇ ଘଡ଼ି ଭିତରେ ଘଟିଗଲା । ପାହାନ୍ତା ପହରକୁ ବୀରବର ନଅରର ପ୍ରବେଶ ଦ୍ୱାରରେ ତା' ପୂର୍ବ ସ୍ଥାନକୁ ଫେରି ଆସି ସବୁଦିନ ପରି ପହରା ଦେବାକୁ ଲାଗିଲା ।

ରାଜା ବିକ୍ରମତୁଙ୍ଗ ବୀରବରର ସାହସ ଓ ବୀରତ୍ୱରେ ଅତ୍ୟନ୍ତ ଖୁସି ହେଲେ ଓ ଛଦ୍ମ ବେଶରେ ତାଙ୍କର ନଅରକୁ ଫେରିଗଲେ । ଅଳିନ୍ଦ ଉପରୁ ସେ ଚିତ୍କାର କଲେ– ଦ୍ୱାର ପାଖରେ କିଏ ?

ବୀରବର ଉତ୍ତର ଦେଲା– ମୁଁ ମଣିମା । ମୁଁ ସେଇ ସ୍ତ୍ରୀଲୋକକୁ ଖୋଜିବାକୁ ଯାଇଥିଲି । ସେ କେହି ଦେବୀ ଓ ମୁଁ ତାଙ୍କ ପାଖକୁ ଯାଆନ୍ତେ ସେ ଅନ୍ତର୍ଦ୍ଧାନ ହୋଇଗଲେ ।

ରାଜା ବୀରବରର ଉତ୍ତରରେ ଚକିତ ହେଲେ– ଲୋକଟା ଏପରି ଅଦ୍ଭୁତ କାମ କରି ମଧ୍ୟ କିଛି କହୁନାହିଁ ! ସମୁଦ୍ରର ବିଶାଳତା ଓ ଗଭୀରତା ଏଇ ଲୋକର ସାହସ ଓ ନିଷ୍ଠା ତୁଳନାରେ କିଛି ନୁହେଁ । ତା' ନିଜ ଜୀବନ ଓ ପରିବାର ଜୀବନ ବଦଳରେ ସେ ମୋତେ ବଞ୍ଚାଇଛି । ମୁଁ ତା'ଋଣ କିପରି ସୁଝିବି ?

ପରଦିନ ସକାଳେ ରାଜା ନିତ୍ୟକର୍ମ ସାରି ଦରବାରକୁ ଆସିଲେ । ଗତ ରାତିରେ ଘଟିଥିବା ଘଟଣା ସବୁ ସେ ଟିକିନିଖି ସଭାସଦ୍‌ମାନଙ୍କୁ କହିଲେ । ତା'ପରେ ସେ ବୀରବରକୁ ହାତୀ, ଘୋଡ଼ା, ସୁନା, ମଣି ଓ ମୁକ୍ତା ଓ ତାଙ୍କ ରାଜ୍ୟର କିଛି ଅଂଶ ଦେଇ ସାମନ୍ତ କରିଦେଲେ । ଧଳା ରଙ୍ଗର ଛତ୍ରୀ ତା ମୁଣ୍ଡ ଉପରେ ଶୋଭା ପାଇଲା ଓ ସେ ଗୋଟିଏ ପ୍ରଦେଶର ରାଜା ହୋଇ ଶେଷ ପର୍ଯ୍ୟନ୍ତ ରାଜାଙ୍କର ସେବା କଲା ।

କଥାଟି ଶୁଣାଇ ସାରି ଗୋମୁଖ କହିଲେ– ମଣିମା ! ଜୀବନ ଓ ସବୁ କିଛିକୁ ପାଣି ଛଡ଼ାଇ ନାମ ଓ ଖ୍ୟାତି ଅର୍ଜନ କରୁଥିବା ସେବକ ଖୁବ୍ କମ୍ ଅଛନ୍ତି । ଏଇ ବ୍ରାହ୍ମଣ ସେହି ଅଳ୍ପ କେତେଜଣଙ୍କ ମଧ୍ୟରୁ ଜଣେ ବୋଲି ଜଣା ପଡୁଛନ୍ତି ।

କଥାଟି ଶୁଣି ନରବାହନଦତ୍ତ ଓ ତାଙ୍କ ଯୁବରାଣୀମାନେ ଆନନ୍ଦିତ ହେଲେ ଓ ମରୁଭୂତିଙ୍କୁ ଗପଟିଏ କହିବାକୁ କହିଲେ । ମରୁଭୂତି ଗପଟିଏ ଶୁଣାଇଲେ :

## କୁମୁଦିକା କଥା

ପ୍ରତିଷ୍ଠାନ ନଗରରେ ବିକ୍ରମ ସିଂହ ରାଜତ୍ୱ କରୁଥିଲେ । ରାଜ୍ୟ ପାଇଁ ତାଙ୍କର କକା ପୁଅ ପାଞ୍ଚଜଣ ଭାଇଙ୍କ ସହ ବିବାଦ ଲାଗି ରହିଥିଲା । ଥରେ ସେହି ପାଞ୍ଚ ଭାଇ ବିରାଟ ସେନାବାହିନୀ ଏକାଠି କରି ପ୍ରତିଷ୍ଠାନପୁରକୁ ଅବରୋଧ କଲେ । ବିକ୍ରମ ସିଂହଙ୍କ ମନ୍ତ୍ରୀ ଚେଷ୍ଟାକଲେ ଯେ ଭାଇମାନଙ୍କ ଭିତରେ ଯୁଦ୍ଧ ନହେଉ, ଆଲୋଚନା ହୋଇ ସନ୍ଧି ହୋଇଯାଉ । କିନ୍ତୁ ବିକ୍ରମ ସିଂହ ତାଙ୍କ ପରାମର୍ଶ ନମାନି ଯୁଦ୍ଧକୁ ବାହାରି ପଡ଼ିଲେ । ଘମାଘୋଟ ଯୁଦ୍ଧ ହେଲା । ବିକ୍ରମ ସିଂହଙ୍କର ଅଳ୍ପ ସୈନ୍ୟ ଥିଲେ ଓ ସେମାନଙ୍କୁ ସବୁଆଡୁ ଘେରି ନିଆଗଲା । ସେମାନେ ପ୍ରାଣବିକଳରେ ଏଣେ ତେଣେ ପଳାଇଲେ ।

ମନ୍ତ୍ରୀ ଅନନ୍ତଗୁଣ ବିକ୍ରମ ସିଂହଙ୍କୁ କହିଲେ– ଏବେ ଆମେ ହାରିଯିବା । ଆପଣଙ୍କୁ ପ୍ରଥମରୁ କହିଥିଲି ଯେ ସେମାନେ ବେଶୀ ବଳୁଆ. ଯୁଦ୍ଧ କରନ୍ତୁ ନାହିଁ । ଆପଣ ମୋ କଥା ଜମା ଶୁଣିଲେନି । ଏବେ ବି ସମୟ ଅଛି । ଯୁଦ୍ଧ ଛାଡ଼ି ଏଠୁଁ ପଳେଇ ଚାଲନ୍ତୁ । ବଞ୍ଚି ରହିଲେ ପ୍ରତିଶୋଧ ନେବେ ।



ରାଜା ତାଙ୍କ ହାତୀ ଉପରୁ ଓହ୍ଲାଇ ମନ୍ତ୍ରୀଙ୍କ ଘୋଡ଼ା ଉପରେ ଚଢ଼ି ଯୁଦ୍ଧଭୂମିରୁ ବଞ୍ଚି ପଳାଇଲେ । ଦୁହେଁ ଛଦ୍ମବେଶରେ ଉଜ୍ଜୟିନୀରେ ପହଞ୍ଚିଲେ । ଉଜ୍ଜୟିନୀର ସବୁଠୁଁ ସୁନ୍ଦରୀ ବେଶ୍ୟା କୁମୁଦିକା ଥିଲା । ସେଇ ଦୁଇଜଣ ତା'ଘରେ ଯାଇ ରହିଲେ ।

ସେଇ ବେଶ୍ୟା ବି ଦୁଇଜଣଙ୍କୁ ଦେଖି ବଡ଼ ଖୁସି ହେଲା । ଯଦିଓ ଦୁଇଜଣଯାକ ଛଦ୍ମବେଶରେ ଥିଲେ, ସେ ରାଜାଙ୍କୁ ଦେଖିବା ମାତ୍ରେ ଜାଣିଗଲା ଯେ ସେ କେହି ଅସାଧାରଣ ଲୋକ । ସେ ଦୁଇଜଣଙ୍କୁ ବଡ଼ ଆଦର ସମ୍ମାନ କଲା । ରାଜାଙ୍କୁ ସେ କହିବାକୁ ଲାଗିଲା– ମୋର ବଡ଼ ଭାଗ୍ୟ ଯେ ମହାରାଜାଙ୍କ ପାଦଧୂଳି ମୋ କୁଡ଼ିଆରେ ପଡ଼ିଛି । ମୋର ଏଇ ଶହେ ହାତୀ, କୋଡ଼ିଏ ହଜାର ଘୋଡ଼ା ଓ ରତ୍ନରେ ପୂର୍ଣ୍ଣ ଏଇ ଘର ଓ ସବୁ ସମ୍ପତ୍ତି– ଯେ ସବୁ ଆପଣଙ୍କର । ଆପଣ ଯେମିତି ଆଦେଶ ଦେବେ, ସେମିତି ହେବ । ଏତିକି କହି ସେ ରାଜା ଓ ମନ୍ତ୍ରୀଙ୍କର ଗାଧୋଇବା ଓ ଖାଇବା ଆଦି ବ୍ୟବସ୍ଥା କରିବାକୁ ଚାଲିଗଲା ।

ସେଇ ଦିନଠୁଁ ରାଜା ସେଠାରେ ସୁଖରେ ରହିଲେ । ସେ ପ୍ରତିଦିନ ସେଇ ବେଶ୍ୟାର ଧନ ଭିକାରୀମାନଙ୍କୁ ଦାନ ଦେଲେ ଓ ତା' ଘରର ସମସ୍ତ ସୁଖ ସୁବିଧା ଉପଭୋଗ କଲେ । ବେଶ୍ୟା ମଧ୍ୟ ତା' ଅତିଥିଙ୍କ ଉପରେ କେବେ ଅସନ୍ତୁଷ୍ଟ ଥିଲାଭଳି ବ୍ୟବହାର କଲା ନାହିଁ । ରାଜାଙ୍କର ମନେହେଲା ଯେ କୁମୁଦିକା ତାଙ୍କୁ ଭଲପାଉଥିବା ହେତୁ ଏତେ ସବୁ କରୁଛି ଓ ବଦଳରେ ମଧ୍ୟ କିଛି ମାଗୁନାହିଁ ।

ରାଜା ବି ସେଇ ବେଶ୍ୟା ପ୍ରତି ଅନୁରକ୍ତ ମନେକରି ମନ୍ତ୍ରୀ ଅନନ୍ତଗୁଣ ଦିନେ ତାଙ୍କୁ କହିଲେ– ମହାରାଜ ! ଏଇ ବେଶ୍ୟାର ଭରସାରେ ରହନ୍ତୁ ନାହିଁ । ସେ ଆପଣଙ୍କ ପ୍ରତି ବଡ଼ ନିଃସ୍ୱାର୍ଥ ଅନୁରକ୍ତି ଦେଖାଉଛି । କିନ୍ତୁ ମୋତେ କିଛି ରହସ୍ୟ ମନେ ହେଉଛି । ଏମାନେ ବିନା ସ୍ୱାର୍ଥରେ କାହା ସହିତ ବନ୍ଧୁତା କରନ୍ତି ନାହିଁ ।

ରାଜା କହିଲେ– ମୋର ତ ସେମିତି ମନେ ହେଉନାହିଁ । ସେ ମୋ ପାଇଁ ତା' ଜୀବନ ବି ଦେଇପାରେ । ତମକୁ ବିଶ୍ୱାସ କରାଇବା ପାଇଁ ଆସ ଆମେ ତା'ର ପରୀକ୍ଷା କରିବା ।

ମନ୍ତ୍ରୀଙ୍କ ସହିତ ଏକାନ୍ତରେ ଏହିପରି ମନ୍ତ୍ରଣା କରି ରାଜା କିଛିଦିନ ନିଜର ବେମାରୀ ବାହାନା, କରି ଖାଇଲେ ନାହିଁ । ତା'ପରେ ଦିନେ ପ୍ରାଣାୟମ କରି ନିଜର ଶ୍ୱାସ ଓ ନାଡ଼ି ବନ୍ଦକରି ଅଚେତନ ହୋଇ ପଡ଼ି ରହିଲେ । ମନ୍ତ୍ରୀ କାନ୍ଦି କାନ୍ଦି କୁମୁଦିକାକୁ କହିଲେ ତାଙ୍କ ପ୍ରଭୁ ମରିଗଲେ ।

ରାଜାଙ୍କୁ ଶ୍ମଶାନକୁ ନେଇ ଚିତାରେ ଚଢ଼ାଇ ନିଆଁ ଲଗାଇବାକୁ ପ୍ରସ୍ତୁତ କରାଗଲା । କୁମୁଦିକା ସାଙ୍ଗରେ ଯାଇଥିଲା । ସେ ଶୋକରେ ବିହ୍ୱଳ ଥିଲା । ଯେତେବେଳେ ଚିତାରେ ନିଆଁ ଲଗାଇବା ବେଳ ହେଲା, ବନ୍ଧୁ ବାନ୍ଧବଙ୍କ ବାରଣ ସତ୍ତ୍ୱେ କୁମୁଦିକା କାନ୍ଦି କାନ୍ଦି ସତୀ ହେବା ପାଇଁ ଯାଇ ଚିତା ଉପରେ ବସିଗଲା । ଲୋକମାନେ ତାକୁ ଚିତାରୁ ଉଠି ଆସିବା ପାଇଁ ମନେଇବାକୁ ଲାଗିଲେ । କୁମୁଦିକା ସତୀ ହେବାକୁ ଅଟଳ ଥିବା ଜାଣି ରାଜା ଚିତା ଉପରେ ଉଠି ବସି ଅଳସ ଭାଙ୍ଗିଲେ । ସବୁ ଲୋକମାନେ ରାଜାଙ୍କୁ ଜୀଇଁ ଉଠିବା ଦେଖି ଆନନ୍ଦିତ ହେଲେ ।

କୁମୁଦିକା ଘରକୁ ଫେରି ରାଜା ମନ୍ତ୍ରୀଙ୍କୁ ଏକାନ୍ତରେ କହିଲେ– ଦେଖିଲ । ମୁଁ କହୁ ନଥିଲି ତା' ପ୍ରେମ ସଚ୍ଚା ବୋଲି !

ମନ୍ତ୍ରୀ କହିଲେ– ମୋତେ' ଏବେ ବି ବିଶ୍ୱାସ ହେଉନାହିଁ । ଏଥିରେ କିଛି ନା କିଛି ରହସ୍ୟ ଅଛି ।

ରାଜା କହିଲେ– ମୁଁ ସ୍ଥିର କରିଛି ମୋର ଏଇ ପ୍ରିୟାଠୁଁ ସୈନ୍ୟ ସାହାଯ୍ୟ ନେଇ ଶତ୍ରୁକୁ ପରାସ୍ତ କରିବି । ମୁଁ ତାକୁ ମୋ ପ୍ରକୃତ ପରିଚୟ ଦେଇଦେବି ।

ସେଇଦିନ ରାତିରେ ରାଜା କୁମୁଦିକାକୁ ତାଙ୍କର ପ୍ରକୃତ ପରିଚୟ ଜଣାଇଲେ । କୁମୁଦିକା କହିଲା– ଯେଉଁଦିନ ଆପଣଙ୍କ ପାଦଧୂଳି ମୋ କୁଡ଼ିଆରେ ପଡ଼ିଲା, ମୁଁ ତ ସେଇଦିନ ମୋର ସବୁକିଛି ଆପଣଙ୍କୁ ଦେଇ ଦେଇଛି । ଆପଣ ଏତେଦିନ ପର୍ଯ୍ୟନ୍ତ ସଙ୍କୋଚ କାହିଁକି କଲେ ? ମୋର ସବୁ ଧନ, ହାତୀ ଓ ଘୋଡ଼ା ନେଇ ନିଅନ୍ତୁ । ଆପଣଙ୍କ ସେନାବାହିନୀ ପୁଣି ତିଆରି କରନ୍ତୁ ଆଉ ଶତ୍ରୁ ଉପରେ ଚଢ଼ାଉ କରନ୍ତୁ ।

ରାଜା ସେହିପରି ହିଁ କଲେ । ପୁଣିଥରେ ତାଙ୍କର ଶତ୍ରୁମାନଙ୍କ ସହିତ ଭୟଙ୍କର ଯୁଦ୍ଧ ହେଲା । ଏଥର ବିଜୟ ରାଜାଙ୍କର ହେଲା ।

ବିଜୟ ଲାଭକରି ରାଜା ପୁଣି କୁମୁଦିକାକୁ ଭେଟିବାକୁ ଆସିଲେ । ସେ କୁମୁଦିକାକୁ ପଚାରିଲେ– କୁହ, ମୁଁ ତମପାଇଁ କ'ଣ କରିବି । ତମରି ପାଇଁ ହିଁ ମୁଁ ରାଜଲକ୍ଷ୍ମୀଙ୍କୁ ଫେରି ପାଇଲି ।

କୁମୁଦିକା କହିଲା– ମହାରାଜ ! ଯଦି ଆପଣ ମୋ ଉପରେ ପ୍ରକୃତରେ ସନ୍ତୁଷ୍ଟ, ତେବେ ମୋ ଛାତି ଫୁଟି ବହୁଦିନ ହେଲା ଯନ୍ତ୍ରଣା ଦେଉଥିବା କଣ୍ଟାକୁ କାଢ଼ି ଦିଅନ୍ତୁ । ଉଜ୍ଜୟିନୀର ଶ୍ରୀଧର ନାମକ ବ୍ରାହ୍ମଣ ମୋର ପ୍ରେମିକ । ତାଙ୍କୁ ଗୋଟିଏ ଛୋଟ ଅପରାଧରେ ଉଜ୍ଜୟିନୀର ରାଜା କାରାଗାରରେ ପକାଇ ରଖିଛନ୍ତି । ମୁଁ ଆପଣଙ୍କର ସେବା ଏତେଦିନ ହେଲା କରିଛି ଏଇଥିପାଇଁ ଯେ ଆପଣ କେବେ ହେଲେ ବି ମୋର ଏଇ କାମ କରିଦେବେ– ତାଙ୍କୁ କାରାଗାରରୁ ମୁକୁଳାଇ ମୋ ସହିତ ମିଳନ କରାଇବେ । ମୁଁ ସେଦିନ ଆପଣଙ୍କ ଚିତା ଉପରେ ଚଢ଼ିଗଲି ଆପଣଙ୍କ ପ୍ରତି ମୋର ପ୍ରେମ ଯୋଗୁ ନୁହେଁ, କିନ୍ତୁ ଏଇଥିପାଇଁ ଚଢ଼ିଥିଲି ଯେ ମୋତେ ଲାଗିଲା– ମୋ କାମ ଆଉ କେମିତି ହେବ ।

କୁମୁଦିକାର କଥା ଶୁଣି ରାଜା ଚକିତ ହୋଇ ରହିଗଲେ । ତା'ପରେ ସେ ତାକୁ କହିଲେ– ସୁନ୍ଦରୀ । ଧୈର୍ଯ୍ୟ ଧର । ମୁଁ ତମକୁ ତମ ପ୍ରେମିକ ସହିତ ଅବଶ୍ୟ ମିଳନ କରାଇବି ।

ତା'ପରେ ସେ ବିଶାଳ ସେନାବାହିନୀ ନେଇ ଉଜ୍ଜୟିନୀକୁ ଆକ୍ରମଣ କଲେ ଓ ଉଜ୍ଜୟିନୀର ରାଜାଙ୍କୁ ପରାସ୍ତକରି ଶ୍ରୀଧର ବ୍ରାହ୍ମଣଙ୍କୁ କାରାଗାରରୁ ମୁକୁଳାଇ କୁମୁଦିକା ସହିତ ତା'ର ମିଳନ କରାଇଲେ । ସେ କୁମୁଦିକା ଓ ଶ୍ରୀଧରଙ୍କୁ ବହୁତ ଧନ ମଧ୍ୟ ଦେଲେ ।

କଥା ଶୁଣାଇ ସାରି ମରୁଭୂତି କହିଲେ– ବେଶ୍ୟାମାନଙ୍କର ଚରିତ୍ର ଏଇଭଳି ଅଗମ୍ୟ ହୋଇଥାଏ ।

ତପନ୍ତକ କହିଲେ– କେବଳ ବେଶ୍ୟାମାନଙ୍କ କଥା କାହିଁକି କହୁଛ ? ସବୁ ସ୍ତ୍ରୀଲୋକଙ୍କ ଚରିତ୍ର ଅଗମ୍ୟ ହୋଇଥାଏ । ମୁଁ ସେଇ ବିଷୟରେ କଥାଟିଏ କହୁଛି ଶୁଣ :

# ଘଟ ଓ କର୍ପର କଥା

କୌଣସି ନଗରରେ ଘଟ ଓ କର୍ପର ନାମରେ ଦୁଇଜଣ ଚୋର ରହୁଥିଲେ । ଥରେ ରାତିରେ ସେଇ ଦୁଇଜଣ ଚୋରି କରିବା ପାଇଁ ରାଜମହଲ ନିକଟରେ ପହଞ୍ଚିଲେ । ଘଟ ବାହାରେ ରହିଲା ଆଉ କର୍ପର ସିନ୍ଧିକରି ମହଲ ଭିତରକୁ ଚାଲିଗଲା । ଯୋଗର କଥା । ସେ ରାଜକୁମାରୀଙ୍କ କୋଠରୀରେ ପହଞ୍ଚିଗଲା । ରାଜକୁମାରୀ ଉଠିଥିଲା । ସେ କର୍ପରକୁ ଦେଖି ତା' ରୂପରେ ମୁଗ୍ଧ ହୋଇଗଲା ଓ କର୍ପର ବି ତା ଇଚ୍ଛା ଜାଣିପାରି ତା' ସାଥିରେ ରମଣ କଲା । ରାଜକୁମାରୀ ତାକୁ ବହୁମୂଲ୍ୟ ରତ୍ନଦେଇ କହିଲା– ପୁଣି ଆସିବ । ଯାଠାରୁ ବେଶୀ ଧନ ଦେବି ।



କର୍ପର ବାହାରକୁ ଆସି ଘଟକୁ ରାଜକୁମାରୀ ଠାରୁ ପାଇଥିବା ସବୁଯାକ ଧନ ଦେଇ ଦେଲା ଓ ତାକୁ ସବୁକଥା କହିଲା । ରାଜକୁମାରୀ ସହିତ ପୁଣି ଭେଟ ହେବାକୁ କର୍ପରର ଇଚ୍ଛା ହେଲା । ସେ ଘଟକୁ ଧନ ସହିତ ପଠାଇ ଦେଇ ପୁଣି ରାଜକୁମାରୀ କକ୍ଷରେ ପହଞ୍ଚିଲା । ରାଜକୁମାରୀ ସହିତ ପ୍ରେମବନ୍ଧନରେ ବାନ୍ଧିହୋଇ ଏମିତି ଶୋଇଗଲା ଯେ ରାତି ପାହିଗଲା, ତାକୁ ଜଣାପଡ଼ିଲା ନାହିଁ । ସକାଳ ହେବାରୁ ଅନ୍ତଃପୁରର ଜଗୁଆଳୀମାନେ ତାକୁ ରାଜକୁମାରୀ ସହିତ ଦେଖି ଦେଲେ । ସେମାନେ ତାକୁ ଧରିନେଇ ରାଜାଙ୍କ ସାମ୍ନାରେ ହାଜର କରାଇଲେ । ରାଜା କ୍ରୋଧରେ ତାକୁ ଶୂଳରେ ଚଢ଼ାଇବାକୁ ହୁକୁମ ଦେଲେ ।

ରାଜାଙ୍କ ଘାତକ କର୍ପରକୁ ଶୂଳୀ ଚଢ଼ାଇବାକୁ ନେଉଥିଲାବେଳେ ରାତିରେ କର୍ପର ଘରକୁ ନ ଫେରିବାରୁ ସକାଳେ ଘଟ ତାକୁ ଖୋଜି ଖୋଜି ଆସୁଥିଲା । କର୍ପର ବି ଘଟକୁ ଆସୁଥିବାର ଦେଖିଲା ଓ ଇଶାରାରେ ତାକୁ ରାଜକୁମାରୀକୁ ରକ୍ଷା କରିବାକୁ ଜଣାଇଲା । ଘଟ ମଧ୍ୟ ଇଶାରାରେ ସେ ରାଜକୁମାରୀ ପ୍ରତି ଧ୍ୟାନ ଦେବ ବୋଲି କହିଲା ।

ଘାତକମାନେ କର୍ପରକୁ ଶୂଳୀରେ ଚଢ଼ାଇ ମାରିଦେଲେ ।

ଘଟ ତା'ଘରକୁ ଫେରି ଆସି ଏଥର କ'ଣ କରିବ ଚିନ୍ତା କରିବାକୁ ଲାଗିଲା ।

ରାତି ହେଲା ଓ ଘଟ ସିନ୍ଧିକରି ପୁଣି ରାଜମହଲରେ ରାଜକୁମାରୀର କୋଠରୀ ଭିତରକୁ ପଶିଲା । ରାଜା ରାଜକୁମାରୀକୁ ବାନ୍ଧି ତା' କୋଠରୀରେ ବନ୍ଦୀକରି ରଖିଥିଲେ । ଘଟ ରାଜକୁମାରୀକୁ କହିଲା– ମୁଁ କର୍ପରର ବନ୍ଧୁ, ଯାହାକୁ ଶୂଳୀରେ ଚଢ଼ାଯାଇଛି । ତା' ଅନୁରୋଧରେ ମୁଁ ତମକୁ ଖଲାସ କରିବାକୁ ଆସିଛି । ତମେ ମୋ ସାଙ୍ଗରେ ଏଠୁ ପଳାଇଚାଲ ।

ରାଜକୁମାରୀ ରାଜି ହୋଇଗଲା । ଘଟ ତା' ବନ୍ଧନ ଖୋଲି ତାକୁ ନିଜ ଘରକୁ ନେଇଗଲା ।

ସକାଳ ହେବାରୁ ରାଜା ରାଜକୁମାରୀ ପଳାଇ ଯାଇଥିବା କଥା ଜାଣିଲେ । ସେ ଭାବିଲେ ଯେ ଶୂଳୀ ପାଇଥିବା ସେଇ ଚୋରର କେହି ଭାଇ ବନ୍ଧୁ ରାଜକୁମାରୀକୁ ନେଇ ଯାଇଥିବେ । ଏହା ଭାବି ସେ ଶୂଳୀରେ ପଡ଼ିଥିବା କର୍ପରର ଶବକୁ ଜଗିବା ପାଇଁ ସିପାହୀ ରଖାଇଲେ ଓ ସିପାହୀମାନଙ୍କୁ କହିଲେ ଯେ ଯଦି କେହି ଏଇ ଶବକୁ ନେଇଯାଇ ସଂସ୍କାର କରିବାକୁ ଚେଷ୍ଟାକରେ ବା ଶବ ଆଖପାଖରେ କାନ୍ଦୁଥିବାର ଦେଖନ୍ତି ତ ତାକୁ ଧରି ପକାଇବ ଆଉ ସେଇ ଲୋକ ସାହାଯ୍ୟରେ ସେଇ କୁଳକଳଙ୍କିନୀ ଝିଅର ପତ୍ତା ଲଗାଇବ ।

ରାଜାଙ୍କ ହୁକୁମରେ କର୍ପର ଶବକୁ ଜଗିବା ପାଇଁ ସିପାହୀମାନେ ଦିନରାତି ପହରା ଦେବାକୁ ଲାଗିଲେ । ଘଟ ଏଇକଥା ଜାଣିଗଲା । ସେ ରାଜକୁମାରୀକୁ କହିଲା– ପ୍ରିୟା ! କର୍ପର ମୋର ବଡ଼ ସ୍ନେହୀ ବନ୍ଧୁ ଥିଲା । ତା'ରି ଦୟାରୁ ଏତେ ଧନରତ୍ନ ସହିତ ମୁଁ ତମକୁ ପାଇଛି । ମୁଁ ତା'ର ଅନ୍ତିମ ସଂସ୍କାର ନ କରିପାରିଲେ, ମୋ'ତେ ଜୀବନରେ ଶାନ୍ତି ମିଳିବ ନାହିଁ । ମୁଁ ତା'ପାଇଁ କିଛି ନା କିଛି କରିବି । ତମେ ବ୍ୟସ୍ତ ହୁଅନା । ମୁଁ କର୍ପର ଭଳି ମୂର୍ଖ ନୁହେଁ ।

ରାଜକୁମାରୀକୁ ଏହିପରି ବୁଝାଇ ସୁଝାଇ ଘଟ ଗୋଟିଏ କାପାଳିକର ବେଶଧରି ଓ ହାତରେ ଖପରାଟିଏ ଧରି କର୍ପରର ଶବ ଲଟକା ଯାଇଥିବା ସ୍ଥାନରେ ପହଞ୍ଚିଲା । ଖପରାରେ ଦହି ଓ ଭାତ ରଖା ହୋଇଥିଲା । ଶବ ପାଖାପାଖି ସ୍ଥାନରେ ଘଟ ଜାଣିଶୁଣି ତା'ହାତରୁ ଖପରାଟିକୁ ଖସାଇ ପକାଇଲା ଓ କାନ୍ଦି କାନ୍ଦି କହିଲା– ହାୟଃ ହାୟଃ, ମୋର ପ୍ରିୟ କର୍ପର, ତମେ ଚାଲିଗଲ ।

ସିପାହୀମାନେ ଭାବିଲେ ଯେ ଏଇଟା ଗୋଟାଏ ଅଧା ପାଗଳ କାପାଳିକ ଓ ତା' ଖପରା (ଖପରାକୁ ଶୁଦ୍ଧ ସଂସ୍କୃତରେ କର୍ପର କୁହାଯାଏ) ଭାଙ୍ଗି ଯିବାରୁ କାନ୍ଦୁଛି ।

ତା'ପରଦିନ ଘଟ ଜଣେ ପାଗଳ ଗାଉଁଲି ଲୋକର ବେଶ ଧରି ତା'ର ଜଣେ ଚାକରକୁ ବୋହୂ ବେଶକରି ଓ ଆଉ ଗୋଟିଏ ଚାକରର ମୁଣ୍ଡ ଉପରେ ଦୁଦୁରା ମଞ୍ଜି ବିଷ ମିଶା ଭାତ ହାଣ୍ଡିଟିଏ ରଖି ପୁଣି ସେଇ ଶୂଳୀ ଜାଗାକୁ ବାହାରିଲା । ସେ ନିଶାରେ ଝୁଲି ଝୁଲି ପଡ଼ିଉଠି ନଡ଼ବଡ଼ ହୋଇ ଚାଲି ଜଣେ ଗାଉଁଲି ଲୋକର ଅଭିନୟ କରି କରି ସିପାହୀମାନଙ୍କ ସାମ୍ନାରେ ଚାଲିଲା । ସିପାହୀମାନେ କଡ଼ା ଗଳାରେ ପଚାରିଲେ— ତୁ କିଏ ? କୁଆଡ଼େ ଯାଉଛୁ ? ଏଇ ସ୍ତ୍ରୀଲୋକ କିଏ ? ଆଉ ଏଇ ହାଣ୍ଡିରେ କ'ଣ ଅଛି ?

ଘଟ ମାତାଲି ସ୍ୱରରେ ଉତ୍ତର ଦେଲା— ଆମେ ଗାଁରେ ରହୁ । ଏ ମୋ ସ୍ତ୍ରୀ । ଆମେ ମୋ ଶ୍ୱଶୁର ଘରକୁ ଯାଉଛୁ । ଏଇ ହାଣ୍ଡିରେ ଭାତ ଡିଅଣ ଅଛି, ତାକୁ ଆମେ ଶ୍ୱଶୁରଘର ଲୋକଙ୍କ ପାଇଁ ନେଉଛୁ । କିନ୍ତୁ ଆପଣମାନେ ମୋ ସହିତ ଏମିତି ସ୍ନେହରେ କଥାହେଲେ ତେଣୁ ଆପଣମାନେ ଆମର ବନ୍ଧୁ ହେଲେ । ଏଥର ଆପଣମାନେ ଏଇ ହାଣ୍ଡିରୁ ଅଧେ ଭାତ-ଡିଅଣ ନେଇ ଯାଆନ୍ତୁ ।

ଘଟର କଥା ଶୁଣି ସିପାହୀମାନେ ବଡ଼ ଖୁସିହୋଇ ହାଣ୍ଡିରୁ ଖାଇବା ଜିନିଷ କାଢ଼ି ଖାଇବାକୁ ଲାଗିଲେ । ଖାଇବା ଜିନଷରେ ଦୁଦୁରା ମଞ୍ଜି ମିଶିଥିବାରୁ ଖାଇବା ମାତ୍ରେ ସେମାନେ ସମସ୍ତେ ମୂର୍ଚ୍ଛା ଚାଲିଗଲେ । ଘଟ କର୍ପରର ଶବକୁ ଓହ୍ଲାଇଲା ଓ ନିଜ ଚାକରମାନଙ୍କ ସାହାଯ୍ୟରେ ଚିତା ସଜାଇ ନିଜ ବନ୍ଧୁର ସଂସ୍କାର କରିଦେଲା ।

ରାଜାଙ୍କ କାନକୁ ସେଇ ଖବର ଗଲା । ସେ ସେହି ସିପାହୀମାନଙ୍କୁ ଶ୍ମଶାନରୁ କାଢ଼ିଆଣି ଅନ୍ୟ ସିପାହୀମାନଙ୍କୁ ସେଠାରେ ରଖାଇଲେ । ସେ ସେମାନଙ୍କୁ କହିଲେ— ସେଇ ଚୋର ତା ବନ୍ଧୁର ଅସ୍ଥି ନେବାକୁ ଆସିବ । ତମେମାନେ ସାବଧାନରେ ଚିତାଭସ୍ମକୁ ଜଗ । କୌଣସି ଲୋକ କିଛି ଖାଇବାକୁ ଦେଲେ ଖାଇବ ନାହିଁ ।

ନୂଆ ସିପାହୀ ରାତିଦିନ ଚିତାକୁ ଜଗିଲେ । ଘଟ ବି ସେଇକଥା ଜାଣିଥିଲା । ଏଥର ସେ ମୋହନମନ୍ତ୍ର ଜାଣିଥିବା ଜଣେ ସାଧୁସହ ବନ୍ଧୁତା କଲା । ଅମାବାସ୍ୟା ତିଥିରେ ସେ ସାଧୁକୁ ସଙ୍ଗରେ ନେଇ ଶ୍ମଶାନକୁ ଗଲା ଓ ସାଧୁ ଦ୍ୱାରା ସିପାହୀମାନଙ୍କୁ ମୋହିତ କରି ତା' ବନ୍ଧୁର ଅସ୍ଥିକୁ ନେଇ ଆସି ଗଙ୍ଗାରେ ଭସାଇ ଦେଲା । ତା'ପରେ ସେ ସାଧୁ ଓ ରାଜକୁମାରୀ ସହିତ ସୁଖରେ ରହିଲା ।

ରାଜାଙ୍କୁ ଯେତେବେଳେ ଦ୍ୱିତୀୟଥରର ଖବର ମିଳିଲା ଯେ ସିପାହୀମାନଙ୍କୁ ମୋହକରି କେହି ଅସ୍ଥିଗୁଡ଼ିକ ନେଇଯାଇଛି, ସେ ଭାବିଲେ ଯେ ମରିଯାଇଥିବା ଚୋରର ସେଇ ବନ୍ଧୁ କୌଣସି ଯୋଗୀ ହୋଇଥିବ ଓ ତାକୁ ସହଜରେ ପାରିହେବ ନାହିଁ । ସେ ନଗରରେ ଘୋଷଣା କଲେ— ଯେଉଁ ଯୋଗୀ ମୋ ଝିଅକୁ ନେଇ ଯାଇଛି, ସେ ଯଦି ମୋ ପାଖକୁ ଆସିବ, ତାକୁ ମୁଁ ରାଜ୍ୟରୁ ଅଧେ ଦେଇଦେବି ।

ରାଜାଙ୍କ ଘୋଷଣା ଶୁଣି ଘଟ ରାଜକୁମାରୀକୁ କହିଲା— ଆମ ପାଇଁ ଭଲ ସୁଯୋଗ ଆସିଛି । ଚାଲ ରାଜାଙ୍କ ପାଖକୁ ଯିବା ।

ରାଜକୁମାରୀ କହିଲା— ମୋର ବାପାଙ୍କ ଉପରେ ବିଶ୍ୱାସ ନାହିଁ । ସେ ଆମ ସାଙ୍ଗରେ କପଟ କରିପାରନ୍ତି ।

ରାଜକୁମାରୀର କଥା ମାନି ସେ ସାଧୁ ଓ ରାଜକୁମାରୀକୁ ସଙ୍ଗରେ ନେଇ ଅନ୍ୟ ଦେଶକୁ ବାହାରିଲା । ସେ ବୁଝିପାରିଲା ନାହିଁ ଯେ ରାଜକୁମାରୀ ଭିତରେ କେହି ଡାହାଣୀ ଅଛି । ସେଇ ସାଧୁର ମନ୍ତ୍ର ଶକ୍ତିର ଦକ୍ଷତା ଜାଣି ରାଜକୁମାରୀ ତା'ପ୍ରତି ଆକର୍ଷିତ ହେଲା ଓ ବାଟରେ ଏକାନ୍ତରେ କହିଲା— ସେଇ କର୍ପରର ବନ୍ଧୁ ଘଟ ମୋର ସତୀତ୍ୱ ନଷ୍ଟ କରିଛି ଆଉ ସେ ତ ମୋତେ ଛାରଖାର କରି ଦେଇଛି । ମୁଁ ରାଜକୁମାରୀ ହୋଇ ଆଉ ରହିନାହିଁ । କିଛି ବି ହୋଇ ରହିନାହିଁ । ତମେ ମୋତେ ବହୁତ ଭଲ ଲାଗୁଛ । ଘଟକୁ ମାରି ତମେ ମୋତେ ଭୋଗ କର ।



ରାଜକୁମାରୀ କଥାରେ ସାଧୁ ସମ୍ମତି ହେଲା ଓ ସେମାନେ ଘଟକୁ ବିଷଦେଇ ମାରି ଦେଲେ । ତା'ପରେ ସେମାନେ ଆଗେଇ ଚାଲିଲେ ।

ବାଟରେ ଧନଦେବ ନାମରେ ଜଣେ ବଣିକ ସେମାନଙ୍କର ସାଙ୍ଗ ହେଲେ । ସେତେବେଳକୁ ରାଜକୁମାରୀର ମନ ସାଧୁଠୁଁ ଛାଡ଼ି ଯାଇଥିଲା । ସେ ବଣିକକୁ କହିଲା— ଏଇ କପଟୀ ବକଳରୁ ମୋତେ ଉଦ୍ଧାର କର । ତମେ ମୋତେ ବହୁତ ଭଲ ଲାଗୁଛ । ତା'ପରେ ରାତିରେ ସାଧୁ ଶୋଇଥିବା ବେଳେ ରାଜକୁମାରୀ ବଣିକ ସହିତ ପଳେଇଲା । ସକାଳେ ନିଦରୁ ଉଠି ସାଧୁ ସେମାନଙ୍କୁ ନଦେଖି କହିଲା— ମୋ ଯୋଗଭଲ ଯେ ସେଇ ଡାହାଣୀ ମୋତେ ମାରିଦେଇ ନାହିଁ ।

ରାଜକୁମାରୀ ଧନଦେବ ସଙ୍ଗରେ ତା' ନଗରକୁ ଗଲା କିନ୍ତୁ ଧନଦେବ ତାକୁ ତା' ନିଜ ଘରକୁ ନେବାକୁ ଚାହିଁଲା ନାହିଁ । ନଗର ବାହାରେ ଗୋଟିଏ ବୁଢ଼ୀ ଘରେ ସେମାନେ ରହିଲେ ।

ରାଜକୁମାରୀ ଓ ବୁଢ଼ୀ ଭିତର ଘରେ ଧୀରେ ଧୀରେ କଥା ହେଉଥିଲାବେଳେ ଧନଦେବ ଚୁପ୍ ଚୁପ୍ ଶୁଣୁଥିଲା । ରାଜକୁମାରୀ ବୁଢ଼ୀକୁ ପଚାରୁଥିଲା ଯେ ସେ ବଣିକ ଧନଦେବର ଘରର ହାଲଚାଲ ଜାଣ କି ?

ବୁଢ଼ୀ କହୁଥିଲା— ତା'ଘର କଥା କ'ଣ କହିବି ? ତା' ସ୍ତ୍ରୀର ନାଁ ନଗରସାରା ପଡ଼ୁଛି । ସେ ଦିନକୁ ଦିନ ନୂଆ ନୂଆ ପୁରୁଷ ଦେଖି ରଙ୍ଗରସ କରେ । ତା'ସ୍ୱାମୀ କେତେଦିନ ପାଇଁ ବାହାରକୁ ଯାଇଛି । ସେଇ ଦିନଗୁଡ଼ାକରେ ସଞ୍ଜ ହେଲା ମାତ୍ରେ ସେଇ ମାଇକିନିଆଁ ତା' ଘରର ଝରକାରୁ ଗୋଟାଏ ଚମଡ଼ା ପେଟରା ଟଙ୍ଗେଇ ଦିଏ, ରାତିରେ ଯୋଉ ପୁରୁଷ ସେଇ ପେଟରାରେ ବସିପଡ଼େ, ତାକୁ ସେ ପେଟରା ସହିତ ଟାଣି ଉଠାଇ ନିଏ । ତା'ପରେ ସେ ମଦ ପିଇ ସେଇ ପୁରୁଷ ସହିତ ରମଣ କରେ । ଏଇକ୍ଷଣି ତ ଏଇ କଥା ନଗରସାରା ଜାଣନ୍ତି ।

ବୁଢ଼ୀ କଥା ଶୁଣି ଧନଦେବ ସଙ୍ଗେ ସଙ୍ଗେ ସେଠାରୁ ଚାଲିଗଲା । ରାତି ହୋଇଯାଇଥିଲା । ସେ ତା' ନିଜଘର ପାଖରେ ପହଞ୍ଚି ସତକୁ ସତ ତା'ସ୍ତ୍ରୀର ବଖରାର ଝରକାରୁ ଟଙ୍ଗା ହୋଇଥିବା ଚମଡ଼ା ପେଟରାକୁ ଦେଖିଲା । ସେ ସେଥିରେ ବସିଗଲା । ଚାକରାଣୀ ପେଟରାକୁ ଟାଣି ଉପରକୁ ଉଠାଇ ନେଲେ ।

ବଣିକର ସ୍ତ୍ରୀ ମଦ ପିଇ ମାତାଲ ହୋଇ ବସିଥିଲା । ସେ ବଣିକକୁ ଚିହ୍ନି ନପାରି ତାକୁ ଆଲିଙ୍ଗନ କରି ଶେଜ ଉପରକୁ ନେଇଗଲା । ସେଇକ୍ଷଣି ଧନଦେବର ସାରା ସଂସାର ପ୍ରତି ବୈରାଗ୍ୟ ଜନ୍ମହେଲା । ତା' ସ୍ତ୍ରୀ ଏତେ ମଦ ପିଇଥିଲା ଯେ ଅଳ୍ପ ସମୟ ପରେ ଶୋଇ ପଡ଼ିଲା । ସକାଳ ହେବା ଆଗରୁ ଚାକରାଣୀମାନେ ଧନଦେବକୁ ପେଟରାରେ ପୁରେଇ ଝରକା ବାଟେ ରାସ୍ତା ଉପରେ ଛାଡ଼ିଦେଲେ ।

ଧନଦେବ ଘର-ପରିବାର, ବେପାର, ସ୍ତ୍ରୀ ଓ ବୁଢ଼ୀଘରେ ରହୁଥିବା ରାଜକୁମାରୀ— ସମସ୍ତଙ୍କ ମୋହ ତ୍ୟାଗକରି ସନ୍ନ୍ୟାସୀ ହୋଇ ବଣକୁ ବାହାରିଲା ।

ବାଟରେ ରୁଦ୍ରସୋମ ନାମରେ ଜଣେ ବ୍ରାହ୍ମଣ ସହିତ ତା'ର ଦେଖା ହେଲା । ବ୍ରାହ୍ମଣ ଦୀର୍ଘଦିନ ବିଦେଶରେ କଟାଇ ଘରକୁ ଫେରୁଥିଲା । ଦୁହିଁଙ୍କ ଭିତରେ ଖୁବ୍ ବନ୍ଧୁତା ହୋଇଗଲା । ଧନଦେବଠାରୁ ତା' ନିଜ କଥା ଶୁଣି ବ୍ରାହ୍ମଣର ତା' ନିଜ ସ୍ତ୍ରୀ ଉପରେ ସନ୍ଦେହ ହେଲା ।

ଦୁହେଁ ସଞ୍ଜବେଳେ ବ୍ରାହ୍ମଣ ଗାଁରେ ପହଞ୍ଚିଲେ । ରୁଦ୍ରସୋମର ଘର ନଦୀ କୂଳରେ ଥିଲା । ଦୁହେଁ ନଦୀ କୂଳରେ ପହଞ୍ଚି ଜଣେ ଗଉଡ଼କୁ ଦେଖିଲେ । ଗଉଡ଼ଟି ହସୁଥିଲା ଓ ଗୀତ ବୋଲୁଥିଲା । ରୁଦ୍ରସୋମ ତା' ସହିତ ହସୁ ହସୁ ପଚାରି ଦେଲା— ଭାଇ, ତମକୁ କ'ଣ କୋଉଠି ସୁନ୍ଦରୀ ପ୍ରେମିକା ମିଳିଯାଇଛି କି ଏମିତି ମସ୍ତହୋଇ ଗାନା ଛାଡ଼ୁଛ ?

ଗରଡ଼ କହିଲା– ଆଉ ମୁଁ କେତେ ଲୁଚାଇବି ! କଥା ତ କେବେ ନା କେବେ ଖୋଲିଯିବ । କଥା ହଉଛି କଣ କି ଏଇ ଗାଁରେ ଚୌଧୁରୀ ରୁଦ୍ରସୋମ ନାଁରେ ଜଣେ ବ୍ରାହ୍ମଣ ଅଛି । ସେତ ବାହାରକୁ ଯାଇଛି । ଘରେ ତା'ର ନବଯୁବତୀ ସ୍ତ୍ରୀ ଅଛି । ତା' ସହିତ ମୋର ପ୍ରେମ ଲାଗିରହିଛି । ସଞ୍ଜହେଲେ ତା' ଚାକରାଣୀ ମୋ ଘରକୁ ଆସି ମୋତେ ସ୍ତ୍ରୀବେଶ କରି ତା' ଘରକୁ ନେଇଯାଏ ।

ଗରଡ଼ କଥା ଶୁଣି ରୁଦ୍ରସୋମ କ୍ରୋଧରେ ବିଚଳିତ ହୋଇଗଲା । କିନ୍ତୁ ସେ କ୍ରୋଧକୁ ନିଜ ଭିତରେ ଚାପିରଖି ଗରଡ଼କୁ କହିଲା– ଏମିତିକା କଥା । ଭାଇ ! ତମେ ମୋତେ ତମ ଜ୍ୟୋତିଷ ବୋଲି ଜାଣ ଥାଇ ମୋତେ ଦିନେ ସ୍ତ୍ରୀବେଶ କରି ତା' ଘରକୁ ପଠାଇ ଦିଅ । ମୁଁ ଖାଲି ତମର ସୁନ୍ଦରୀ ପ୍ରେମିକାକୁ ଥରେ ଦେଖିବି ।

ଗରଡ଼ ରାଜି ହୋଇଗଲା । କିଛି ସମୟ ପରେ ଗରଡ଼ ଘରକୁ ରୁଦ୍ରସୋମର ଚାକରାଣୀ ଆସି ରୁଦ୍ରସୋମକୁ ଦେଖି ତାକୁ ଗରଡ଼ ଭାବି ସ୍ତ୍ରୀ ବେଶକରି ସାଙ୍ଗରେ ନେଇଗଲା । ଅନ୍ଧାର ଘର ଭିତରେ ତା' ସ୍ତ୍ରୀ ତାକୁ ଚିହ୍ନି ନପାରି ଗରଡ଼ ଭାବି ତାକୁ କୋଳେଇ ନେଲା । ରୁଦ୍ରସୋମ ଗରଡ଼ର କଣ୍ଠସ୍ୱରରେ ତା' ସହିତ କଥାବାର୍ତ୍ତା କରି ବାହାନାରେ ତାକୁ ଛାଡ଼ି ବାହାରକୁ ଚାଲି ଆସିଲା । ଧନଦେବ ପାଖକୁ ଆସି ସେ ତାକୁ ସବୁକଥା ଶୁଣାଇ କହିଲା– ଏବେ ମୋର ମଧ ଏଇ ସଂସାର ପ୍ରତି ବୈରାଗ୍ୟ ଆସିଯାଇଛି । ମୁଁ ତମ ସାଙ୍ଗରେ ଯିବି । ସେଇ ଘର-ସଂସାର ଚୁଲିକୁ ଯାଉ ।

ଧନଦେବ ଓ ରୁଦ୍ରସୋମ ସନ୍ନ୍ୟାସୀ ହୋଇ ବଣକୁ ଚାଲିଲେ । ବାଟରେ ସେମାନେ ଶଶୀକୁ ଭେଟିଲେ । ଶଶୀ ଧନଦେବର ପୁରୁଣା ବନ୍ଧୁ ଥିଲା । ସେ ଏଇ ଦୁଇଜଣଙ୍କ କଥା ଶୁଣି ତା' ନିଜ ସ୍ତ୍ରୀ ଉପରେ ଆହୁରି ଅଧିକ ସନ୍ଦେହ କଲା । ସେ ତ ପ୍ରଥମେ ବଡ଼ ସନ୍ଦେହୀ ସ୍ୱଭାବର ଥିଲା, ତେଣୁ ବିଦେଶ ଯିବା ପୂର୍ବରୁ ସେ ତା' ସ୍ତ୍ରୀକୁ ମାଟିତଳ ଘରେ ବନ୍ଦକରି ଦେଇଥିଲା । ସେ ସେଇ ଦୁଇଜଣଙ୍କୁ ନିଜ ସାଥିରେ ଯିବାକୁ କହିଲା ।

ତିନିଜଣ ସଞ୍ଜବେଳେ ଶଶୀ ଗାଁରେ ପହଁଚିଲେ । ଶଶୀ ଭାବିଥିଲା ଦୁଇ ବନ୍ଧୁଙ୍କୁ ଘରକୁ ନେଇ ସତ୍କାର କରିବ । ଘରେ ପଶିବା ପୂର୍ବରୁ ସେ ଗଳି ମୁଣ୍ଡରେ ଗୋଟିଏ କୁଷ୍ଠରୋଗୀକୁ ସଜବାଜ ହୋଇ ବସିଥିବାର ଦେଖିଲା । କୁଷ୍ଠରୋଗୀଟିର ହାତ ଓ ପାଦର ଆଙ୍ଗୁଠି ସବୁ ଖସି ପଡ଼ିଥିଲା, କିନ୍ତୁ ସେ ବଡ଼ ଖୁସି ଜଣା ପଡୁଥିଲା ଓ ବିହ୍ୱଳ ହୋଇ ଗୀତ ଗାଉଥିଲା ।

ଶଶୀ ତାକୁ ପଚାରିଲା– ତମେ କିଏ ?

କୁଷ୍ଠ ରୋଗୀ ଉତ୍ତର ଦେଲା– ମୁଁ କାମଦେବ ।

ଶଶୀ ତାକୁ ଉପହାସ କରି କହିଲା– ବଡ଼ ସଉକିଆ ତ ! ତମ ରୂପରୁ ତ ଜଣାପଡୁଛି ତମେ କାମଦେବ ।

କୁଷ୍ଠରୋଗୀ ରାଗିଯାଇ କହିଲା– ସାମ୍ନାରେ ସେଇ କୋଠାଘର ଦେଖୁଛ ତ ? ସେଠି ଶଶୀ ବୋଲି ଜଣେ ଧୂର୍ତ୍ତ ବଣିକ ରହେ । ତା'ର ତା ସ୍ତ୍ରୀ ଉପରେ ଭରସା ନାହିଁ । ସେ ତାକୁ ସେଇ କୋଠାଘରର ମାଟିତଳ ଘରେ ରଖି ଗୋଟିଏ ଚାକରାଣୀକୁ ଜଗେଇ ବିଦେଶ ଯାଇଛି । ସେଇ ଶଶୀ ସ୍ତ୍ରୀର ଆଖି ଥରେ ମୋ ଆଖି ସହିତ ମିଳିଗଲା ଓ ସେ ମୋ ଉପରେ ପ୍ରସନ୍ନ ହୋଇଗଲା । ଏବେ ତା'ର ସେଇ ଚାକରାଣୀ ପ୍ରତିଦିନ ରାତିରେ ଆସି ମୋତେ ପିଠିରେ ବସେଇ ତା'ପାଖକୁ ନେଇଯାଏ ଆଉ ମୁଁ ସେଇ ସ୍ତ୍ରୀ ସହିତ ରମଣ କରେ । ମୁଁ ସେଇ ଅପୂର୍ବ ସୁନ୍ଦରୀର ପ୍ରେମିକ । ତା'ହେଲେ ମୁଁ କାମଦେବ ନୁହେଁ ତ ଆଉ କିଏ ?

କୁଷ୍ଠରୋଗୀର କଥା ଶୁଣି ଶଶୀର ଛାତିରେ ଯେମିତି ବଜ୍ର ପଡ଼ିଲା । ସେ ତା' ବ୍ୟାକୁଳତାକୁ ଲୁଚାଇ କହିଲା– ହଁ ଭାଇ, ତୁ ସତକୁ ସତ କାମଦେବ । ମୋର ଗୋଟିଏ ମାଗୁଣି ରଖ । ତମକୁ



ଏଭଳି ହୃଦୟ ଦେଇଥିବା ସେଇ ଅପୂର୍ବ ସୁନ୍ଦରୀକୁ ମୁଁ ଦେଖିବାକୁ ଚାହେଁ । ତେଣୁ ଦୟାକରି ଆଜି ରାତିରେ ମୋତେ ତମ ବେଶହୋଇ ତା'ପାଖକୁ ଯିବାକୁ ଦିଅ । ତମର ତ ତା' ସହିତ ପ୍ରତିଦିନ ରମଣ ହେଉଛି ।

କୁଷ୍ଠରୋଗୀ କହିଲା– ଠିକ୍ ଅଛି । ତମ ଲୁଗା ମୋତେ ପିନ୍ଧାଇ ଦିଅ ଓ ମୋ ଲୁଗା ପିନ୍ଧି ମୋର ଏଇ ବସିବା ଜାଗାରେ ବସିପଡ଼ ।

ଶଶୀ ସେହିପରି କଲା । କିଛି ସମୟ ପରେ ସେଇ କୋଠାରୁ ଚାକରାଣୀ ଆସି ତାକୁ ପିଠିରେ ବସାଇ ଭିତରକୁ ନେଇଗଲା ।

କୋଠାର ମାଟିତଳ ଘରେ ପଶି ଶଶୀ ଅନ୍ଧାରରେ ଛୁଇଁ ମଧ ତା' ସ୍ତ୍ରୀକୁ ଚିହ୍ନିପାରିଲା । ତା'ର ମଧ ସଂସାର ଉପରେ ବୈରାଗ୍ୟ ଜନ୍ମିଲା । ସେ ନିଜ ଦୁଇ ବନ୍ଧୁଙ୍କ ପାଖକୁ ଫେରିଆସି କହିଲା– ଚାଲ, ମୁଁ ତମ ସାଙ୍ଗରେ ଯିବି । ଗାତରୁ ବାହାରିଥିବା ନଦୀ ପରି ସ୍ତ୍ରୀମାନଙ୍କୁ ଅଧଃପତନରୁ ରୋକାଯାଇ ପାରିବ ନାହିଁ ।

ତିନିହେଁ ଆଗକୁ ଚାଲିଲେ । ବାଟରେ ଗଛମୂଳେ ବାଟୋଇଟିଏ ଶୋଇଥିଲା । ଗଛ ପାଖରେ ଝଙ୍କାଳିଆ ବଡ଼ ବୁଦାଟିଏ ଥିଲା । ସେମାନେ ଦେଖିଲେ ଯେ ବୁଦା ଭିତରୁ ଯୋଡ଼ିଏ ସ୍ତ୍ରୀ-ପୁରୁଷ ବାହାରିଲେ । ସେମାନେ ଅନେକ ସମୟ ରଙ୍ଗରସ କଲେ । ତା'ପରେ ପୁରୁଷଟି ଶୋଇପଡ଼ିଲା । ସ୍ତ୍ରୀଟି ପୁରୁଷ ପାଖରୁ ଆସି ଗଛ ତଳେ ଶୋଇଥିବା ବାଟୋଇ ପାଖରେ ପେଟେଇ ପଡ଼ିଲା ।

ବାଟୋଇ ପଚାରିଲା ତମେ କିଏ ?

ସ୍ତ୍ରୀଲୋକଟି କହିଲା– ମୁଁ ନାଗ କନ୍ୟା । ମୁଁ ପ୍ରତିଦିନ ମୋ ସ୍ୱାମୀକୁ ଏମିତି ଶୋଇଥିବା ଅବସ୍ଥାରେ ଛାଡ଼ିଦେଇ ନୂଆ ନୂଆ ପୁରୁଷ ସହିତ ସଙ୍ଗମ କରେ । ମୋ ସ୍ୱାମୀ କିଛି ଜାଣିପାରେ ନାହିଁ । ମୁଁ ଏହିଭଳି ଅନେଶୋତ ପୁରୁଷଙ୍କ ସହ ସଙ୍ଗମ କରି ସାରିଲେଣି । ତମେ ହେଉଛ ଶହେ । ଡର ନାହିଁ ।

ଏଇ ସମୟରେ ସ୍ତ୍ରୀଲୋକଟିର ସ୍ୱାମୀର ନିଦ ଭାଙ୍ଗିଗଲା । ତା ସ୍ତ୍ରୀକୁ ବାଟୋଇ ପାଖରେ ଶୋଇଥିବା ଦେଖି ସେ କ୍ରୋଧରେ ଫୁତ୍କାର ଛାଡ଼ିଲା । ଫୁତ୍କାର ସହିତ ତା'ପାଟିରୁ ନିଆଁହୁଳା ବାହାରି ସେଇ ନାଗକନ୍ୟା ଓ ବାଟୋଇ ଉପରେ ପଡ଼ିଲା ଓ ସେ ଦୁହେଁ ପୋଡ଼ିହୋଇ ମରିଗଲେ ।

ଧନଦେବ, ରୁଦ୍ରସୋମ ଓ ଶଶୀ ଭୟରେ ସ୍ତବ୍ଧ ହୋଇଗଲେ । ତା'ପରେ ସେଇ ନାଗ ବୁଦାକୁ ଡେଇଁପଡ଼ି ଅଦୃଶ୍ୟ ହୋଇଗଲା ।

ତା'ପରେ ସକାଳ ହେଲାପରେ ତିନିଜଣ ଯାକ ବଣକୁ ଗଲେ ଓ ବଣରେ ପହଞ୍ଚି ତପ ଓ ସାଧନାରେ ଲୀନ ହୋଇଗଲେ । କଥାଟି ଶୁଣାଇ ସାରି ତପନ୍ତକ କହିଲେ : ଶୁଣିଲତ ବନ୍ଧୁମାନେ ! ସ୍ତ୍ରୀଲୋକମାନଙ୍କ ଚରିତ୍ର କଥା ।

ତପନ୍ତକ କଥା ଶୁଣି ସମସ୍ତେ ଆନନ୍ଦିତ ହେଲେ ।

## ମଦନମଞ୍ଜୁକା କଥା

ଯୁବରାଜ ନରବାହନଦତ୍ତ ତାଙ୍କ ଯୁବରାଣୀମାନଙ୍କ ଗହଣରେ କୌଶାମ୍ବୀ ନଗରରେ ସୁଖରେ ଦିନ କାଟୁଥିଲା ବେଳେ ଦିନେ ତାଙ୍କ ଜ୍ୟେଷ୍ଠ ଯୁବରାଣୀ ମଦନମଞ୍ଜୁକାଙ୍କର ଅନ୍ତଃପୁରରେ ପତ୍ତା ମିଳିଲା ନାହିଁ । କେବଳ ଜଣେ ବୃଦ୍ଧା ଦାସୀକୁ ଛାଡ଼ିଦେଲେ ଯୁବରାଣୀଙ୍କ ଅନ୍ୟ ଦାସୀମାନଙ୍କର ବି ପତା ମିଳିଲା ନାହିଁ । ରାଜା ବତ୍ସ ଓ ତାଙ୍କ ରାଣୀମାନେ ଏ ଖବର ଶୁଣି ଦୁଃଖରେ ଅଭିଭୂତ ଯୁବରାଜଙ୍କ

କକ୍ଷକୁ ଧାଇଁ ଆସିଲେ । ସମସ୍ତେ ଜଡ଼ ପାଲଟି ଗଲା ଭଳି ହୋଇଗଲେ । ମନ୍ତ୍ରୀ ରୁମଣ୍ୱାନ କହିଲେ ଯେ ଏ କାମ କୌଣସି ମଣିଷ ଦ୍ୱାରା ସମ୍ଭବ ନୁହେଁ । ନଗରର ଚାରି ପାଖରେ ପହରା ଦିଆଯାଇଥିଲା । କେହି ଆକାଶରୁ ଉଡ଼ିଆସି ଯୁବରାଣୀଙ୍କୁ ଉଠାଇ ନେଇଥିବ । କିନ୍ତୁ ବୃଦ୍ଧା ଦାସୀଟି ଆସି କହିଲା– ମାନସବେଗ ନାମରେ ଜଣେ ବିଦ୍ୟାଧର ମଦନମାଞ୍ଚୁକାକୁ ବିବାହ କରିବାକୁ ଚାହୁଁଥିଲା ଓ ତାଙ୍କ ମା' କଳିଙ୍ଗସେନାଙ୍କୁ ସେଥିପାଇଁ ଅନୁରୋଧ କରିଥିଲା । ଏଇ'କାମ ସେଇ ମାନସବେଗର ହୋଇଥିବ । ବିଦ୍ୟାଧରମାନେ ପର ସ୍ତ୍ରୀର ଶ୍ରୀଳତା ହାନି କରନ୍ତି ନାହିଁ । କିନ୍ତୁ କିଏ କହି ପାରିବ ? ପ୍ରେମରେ ଅନ୍ଧ ବ୍ୟକ୍ତି ନୀତି ନୀୟମ ମାନେ ନାହିଁ ଓ ଖରାପ କାମ କରେ ।

ରାଜା ବତ୍ସ ଭାବିଲେ– କିଛି ଅଘଟଣ ଘଟିବ ନାହିଁ । ଯୁବରାଜ ପାଟଯୁବରାଣୀ ମଦନମାଞ୍ଚୁକା ସହ ବିଦ୍ୟାଧର ରାଜ୍ୟରେ ଏକ ହଜାର ବର୍ଷ ଧରି ଶାସନ କରିବ ବୋଲି ଦେବତା ମାନେ ଭବିଷ୍ୟବାଣୀ କରିଛନ୍ତି । ଯୁବରାଜ ପ୍ରତି ସବୁ ଦେବତାଙ୍କର ଆଶୀର୍ବାଦ ରହିଛି । ତନ ତନ କରି ଅନୁସନ୍ଧାନ କରାଯାଉ ।

ମଦନମାଞ୍ଚୁକାର ଅନ୍ତଃପୁରରୁ ଅନ୍ତର୍ଦ୍ଧାନ ହୋଇଯିବାରୁ ଯୁବରାଜଙ୍କ ଅବସ୍ଥା ଶୋଚନୀୟ ହୋଇଗଲା । ମାଳୟ ପର୍ବତର ଚାରିପାଖରେ ଥିବା ପାହାଡ଼ ଓ ବଣରେ ସେ ଘୁରି ବୁଲିଲେ । ବସନ୍ତ ଋତୁର ଆଗମନର ସଙ୍କେତ– ଆମ୍ବ ବଉଳର ଗନ୍ଧ, କୋଇଲିର ମଧୁର ସ୍ୱର, ଧୀର ଦକ୍ଷିଣା ପବନ, ମହୁମାଛିଙ୍କ ଗୁଣୁଗୁଣୁ ତାନ ତାଙ୍କୁ ରାଜାପ୍ରସାଦରୁ ଦୂରକୁ ନେଇଗଲା । ଏହିପରି ସେ ପ୍ରାକୃତିକ ଶୋଭାପ୍ରତି ଆକର୍ଷିତ ହୋଇ ଗଙ୍ଗାନଦୀର ଅଦୂରରେ ଗୋଟିଏ ହ୍ରଦ କୂଳରେ ପହଞ୍ଚିଲେ । ହ୍ରଦକୂଳରେ ଗୋଟିଏ ଗଛ ଛାଇରେ କେତେଜଣ ବ୍ରାହ୍ମଣ ଯୁବକ ବସିଥିଲେ । ସେ ଯୁବରାଜଙ୍କୁ ଦେଖି ତାଙ୍କୁ କାମଦେବ ଭାବି ନମସ୍କାର କଲେ– ହେ ପୁଷ୍ପଧନୁଧାରୀ ପ୍ରେମର ଦେବତା ! ଆମେ ଆପଣଙ୍କୁ ନମସ୍କାର କରୁଛୁ । ଦୟାକରି ଆମକୁ କହନ୍ତୁ ଆପଣ ରତିଦେବୀଙ୍କୁ ଛାଡ଼ି ଏକା ଏକା କାହିଁକି ବୁଲୁଛନ୍ତି ? ଆପଣଙ୍କ ଫୁଲଧନୁ କାହିଁ ? ରତିଦେବୀଙ୍କୁ ଆପଣ କେଉଁଠି ଛାଡ଼ିଛନ୍ତି ?

ଯୁବରାଜ ଉତ୍ତର ଦେଲେ– ମୁଁ କାମଦେବ ନୁହେଁ । ମୁଁ ମଣିଷ । ଏକଥା ସତଯେ ମୋ ରତିକୁ ମୁଁ ହରାଇଛି । –ତା'ପରେ ସେ ତାଙ୍କ ବିଷୟରେ ସବୁକଥା କହି ସେମାନଙ୍କ ବିଷୟରେ ପଚାରିଲେ । ସେମାନଙ୍କ ଭିତରୁ ଜଣେ କହିଲା– ଆପଣଙ୍କ ଭଳି ରାଜାଙ୍କୁ ଆମେ କିପରି ଆମର ଗୋପନ କଥା ଶୁଣାଇ ପାରିବୁ ? ତଥାପି ଆପଣଙ୍କ ହୁକୁମକୁ ସାମିଲ୍ କରୁଛି । ଶୁଣନ୍ତୁ :

## ମଦିରାବତୀ କଥା

କଳିଙ୍ଗ ରାଜ୍ୟରେ ଶୋଭାବତୀ ନାମରେ ନଗର ଥିଲା । ସେଇ ନଗରରେ କେହି ଖଳଲୋକ ନଥିଲେ । ଶତ୍ରୁମାନେ ସେଇ ନଗରୀକୁ ଅବରୋଧ କରିପାରୁ ନଥିଲେ । କଳି ସେଠାରେ ପାଦ ପକାଇ ପାରୁ ନଥିଲା । ବ୍ରହ୍ମା ନଗରଟିକୁ ଏହିଭଳି ତିଆରି କରିଥିଲେ । ସେଠାରେ ଯଶକର ନାମରେ ଜଣେ ଧାର୍ମିକ ବ୍ରାହ୍ମଣ ରହୁଥିଲା । ସେ ଶହେଟି ଯଜ୍ଞ କରିଥିଲା । ମେଖଳା ନାମରେ ତା'ର ନିଷ୍ଠାବତୀ ସ୍ତ୍ରୀଟିଏ ଥିଲା । ସେମାନଙ୍କ ମଧ୍ୟ ବୟସରେ ମୁଁ ତାଙ୍କର ପୁଅହୋଇ ଜନ୍ମ ହେଲି । ସେ ମୋତେ ପାଳି ମୋର ଉପନୟନ କଲେ । ମୁଁ ଶିଶୁ ଥିବାବେଳେ ସେମାନେ ବେଦ ପଢ଼ିବାରେ ଲଗାଇଲେ । କିଛିଦିନ ପରେ ମରୁଡ଼ି ପଡ଼ିଲା ଓ ମୋ ବାପା-ମା' ଉଜ୍ଜୟିନୀ ଚାଲିଗଲେ । ମୋ ବାପାଙ୍କର ସେଇ ନଗରରେ ଜଣେ ବଣିକ ବନ୍ଧୁ ଥିଲେ । ସେ ସେମାନଙ୍କୁ ରହିବାକୁ ଘରଟିଏ ଦେଲେ । ଆମେ ସେଠାରେ ସୁଖରେ



ରହିଲୁ । ମୋତେ ଜଣେ ଗୁରୁଙ୍କ ପାଖରେ ଛାଡ଼ି ଦିଆଗଲା । ସେଇ ଗୁରୁଙ୍କ ପାଖରେ ପାଠ ପଢୁଥିବା ମୋ ବୟସର ଅନେକ ପିଲା ମୋର ବନ୍ଧୁ ଥିଲେ । ସେମାନଙ୍କ ଭିତରୁ ଜଣେ ଧନୀ କ୍ଷତ୍ରୀୟ ପିଲା ବିଜୟସେନ ମୋର ଘନିଷ୍ଠ ଥିଲା । ଦିନେ ସେ ତା'ର ଭଉଣୀ ମଦିରାବତୀକୁ ସଙ୍ଗରେ ନେଇ ଗୁରୁଙ୍କ ପାଖକୁ ଆସିଲା । ସେ ଅତି ସୁନ୍ଦରୀ ଥିଲା । ମୁଁ ତା' ପ୍ରେମରେ ପଡ଼ିଗଲି ଓ ସତୃଷ୍ଣ ଆଖିରେ ଚାହିଁଲି ଓ ସେ ମଧ୍ୟ ମୋ ସହିତ ପ୍ରେମପୂର୍ଣ୍ଣ ଭାବରେ ଆଖି ମିଳାଇଲା । ଖେଳିବା ବାହାନାରେ ଟିକେ ବେଶି ସମୟ ରହି ସେ ତା'ର ଭାଇ ସାଙ୍ଗରେ ଚାଲିଗଲା ।

ବିଚ୍ଛେଦର ଦୁଃଖ ଏତେ ହେଲା ଯେ ଧିରେ ଧିରେ ପଢ଼ାପଢ଼ିରେ ମୋର ନିଷ୍ଠା ରହିଲା ନାହିଁ ଓ ମୁଁ ମଦିରାବତୀକୁ ଦିନରାତି ସ୍ୱପ୍ନରେ ଦେଖିଲି । ମୋତେ ଆଉ ନିଦ ହେଲା ନାହିଁ । କିଛି ଦିନପରେ ଦିନେ ମୁଁ ଗୁରୁଙ୍କ ପାଖକୁ ଯାଇଥିଲି ଓ ବିଜୟସେନ ମଧ୍ୟ ଆସିଥିଲା । ଯାହା ଜଣାପଡୁଥିଲା ଯେ ତା' ବାପା-ମା' ତା' ଭଉଣୀ ମଦିରାବତୀର ବିବାହ ଅନ୍ୟ କେଉଁଠି ଠିକ୍ କରିଥିଲେ । ସେମାନେ ତା' ମନକଥା ଜାଣିବାକୁ ଚେଷ୍ଟାକରି ନଥିଲେ । ବିବାହ ଦିନ ଆସି ପହଞ୍ଚିଲା ଓ ରାତି ପାହିବା ପୂର୍ବରୁ ପ୍ରଥା ଅନୁଯାୟୀ ଦେବୀଙ୍କୁ ପୂଜା କରିବା ପାଇଁ ନଗର ବାହାରେ ଥିବା ମନ୍ଦିରକୁ ମଦିରାବତୀ ଆସିଲା । ମୁଁ ମନ୍ଦିରକୁ ଯିବା ବାଟରେ ଜଣେ ଯୁବ ବ୍ରାହ୍ମଣଙ୍କୁ ମୋ କଥା କହି ମୁଁ ଆତ୍ମହତ୍ୟା କରିବାକୁ ସ୍ଥିର କରିଥିବା କଥା କହିଲି । ସେ ମୋତେ ସେଭଳି କାର୍ଯ୍ୟ କରିବାକୁ ବାରଣ କଲେ ଓ ଗୋଟାଏ ସୁଯୋଗ ନେବାକୁ ଇଚ୍ଛାକରି ଆମେ ଦୁହେଁ ମନ୍ଦିର ଭିତରକୁ ଗଲୁ । ପାହାନ୍ତାରେ ତା'ର ସବୁ ଦାସୀମାନଙ୍କୁ ବାହାରେ ଛାଡ଼ିଦେଇ ମଦିରାବତୀ ମନ୍ଦିର ଭିତରକୁ ଆସିଲା ।

ସେ ଭିତରକୁ ଆସି ବାଟ ବନ୍ଦ କରି ଦେବୀଙ୍କୁ ପ୍ରାର୍ଥନା କରିବାକୁ ଲାଗିଲା । ତା'ପରେ ସେ ରୁମାଲଟିଏ ବାହାର କରି ତା' ବେକରେ ଫାଶି ଲଗାଇବାକୁ ଚେଷ୍ଟା କଲା । ମୋ'ର ବନ୍ଧୁ ମୋତେ ଆଗେଇ ଯାଇ ତା' ବେକରୁ ଫାଶି ଖୋଲି ଦେବାକୁ କହିଲା । ମଦିରାବତୀ ମୋତେ ଦେଖି ପ୍ରେମରେ ଆନ୍ତରିକ ଭାବେ ଆଲିଙ୍ଗନ କଲା । ସେ ମୂଲ୍ୟବାନ ଅଳଙ୍କାର ପିନ୍ଧିଥିଲା । ମୋର ବନ୍ଧୁ ଆମକୁ ପଛ ଦରଜା ଦେଇ ଦୂରକୁ ପଳାଇ ଯିବାକୁ କହିଲା । ସେ ଲୁଗା ବଦଳାଇ ନିଜକୁ ମଦିରାବତୀ ଭାବରେ ସଜାଇ ଦେଲା । ମଦିରାବତୀର ଦାସୀମାନଙ୍କ ଅଲକ୍ଷ୍ୟରେ ଆମେ ପଳାଇଗଲୁ । ଆମେ ପଳାଇଗଲା ପରେ ମୋର ବନ୍ଧୁ ମନ୍ଦିରର ଦରଜା ଖୋଲିଲା । ଅନ୍ଧାର ହୋଇଥିବା ଯୋଗୁ ଦାସୀମାନେ ସେ ମଦିରାବତୀ ନୁହେଁ ବୋଲି ଜାଣି ପାରିଲେ ନାହିଁ । ତା' ମୁଣ୍ଡରେ ଓଢ଼ଣା ଥିଲା । ତାକୁ ରାଜପ୍ରାସାଦକୁ ନିଆଗଲା ଓ ମଦିରାବତୀର କକ୍ଷରେ ଛାଡ଼ି ଦିଆଗଲା । ମଦିରାବତୀର ଜଣେ ଅନ୍ତରଙ୍ଗ ବାନ୍ଧବୀ ତାକୁ ସାନ୍ତ୍ୱନା ଦେବାକୁ ଆସିଲା । ସେ ମଦିରାବତୀର କକ୍ଷ ଭିତରକୁ ଯାଇ ଛଦ୍ମବେଶୀ ମୋର ବନ୍ଧୁକୁ ମଦିରାବତୀ ଭାବି ତା' ପାଖରେ ଯାଇ ବସିଲା । ସେ ତା' ଓଢ଼ଣା ଉଠାଇ ଦେଇ ତାକୁ ତତ୍‌କ୍ଷଣାତ୍ ଚିହ୍ନି ପାରିଲା । ବାସ୍ତବରେ ସେ ମୋର ସେଇ ବନ୍ଧୁକୁ ଆଗରୁ ଭଲ ପାଉଥିଲା, କିନ୍ତୁ ତା'ର ନାଁ ବା ଠିକଣା ଜାଣି ନଥିଲା । ଦାସୀମାନେ ସେ ଦୁହିଁଙ୍କୁ ଏକାଠି ଛାଡ଼ିଦେଇ ଚାଲିଗଲେ । ସେମାନେ ଦୂରକୁ ପଳାଇଯାଇ ଏକାଠି ରହିବେ ବୋଲି ଠିକ୍ କଲେ, ଯେମିତି ମୁଁ ଓ ମଦିରାବତୀ କରିଥିଲୁ । ସେଇ ଝିଅଟି ମଦିରାବତୀର ଘରୁ ବଗିଚାକୁ ବାହାରି ଯିବା ବାଟଟିଏ ଥିବା ବିଷୟ ଜାଣିଥିଲା । ସେମାନେ ବଗିଚାକୁ ଚାଲିଗଲେ ଓ ତା'ପରେ ଆଉ ଗୋଟିଏ ନଗରକୁ ଯାଇ ସୁଖରେ ରହିଲେ । ଆମେ ଦୁଇଜଣ ହେଉଛୁ ସେଇ ଦୁଇ ବନ୍ଧୁ ।

ଯୁବରାଜ ଦୁଇ ବ୍ରାହ୍ମଣ ଯୁବକଙ୍କ କଥା ଶୁଣି ଖୁସି ହେଲେ । ଏତିକି ବେଳେ ତାଙ୍କ ମନ୍ତ୍ରୀ ଗୋମୁଖ ଓ ଅନ୍ୟମାନେ ତାଙ୍କୁ ଖୋଜି ଖୋଜି ସେଠାରେ ଆସି ପହଞ୍ଚିଲେ ଓ ତାଙ୍କୁ ସାଙ୍ଗରେ ଫେରାଇ

ନେଲେ । ଯୁବରାଜ ଫେରି ଗଲାବେଳେ ବୃଦ୍ଧ ବ୍ରାହ୍ମଣ ଯୁବକଙ୍କୁ ତାଙ୍କ ପ୍ରାସାଦରେ କିଛିଦିନ କଟାଇବାକୁ ଅନୁରୋଧ କଲେ ।

ଯୁବରାଜଙ୍କ ମନ ତଥାପି ବଦଳିଲା ନାହିଁ ଓ ମଦନମାଞ୍ଚୁକାଙ୍କ କଥା ଭାବି ଭାବି ବିଚଳିତ ହେଲେ । ଗୋମୁଖ ଓ ଅନ୍ୟ ମନ୍ତ୍ରୀମାନେ ତାଙ୍କୁ ସଙ୍ଗ ଦେବା ପାଇଁ ତାଙ୍କ କକ୍ଷରେ ଶୋଇଲେ ।

ଦିନ ଗତ ହେଲା । ତଥାପି ଯୁବରାଜ ମଦନମାଞ୍ଚୁକାଙ୍କ ପାଇଁ ବିଚଳିତ ହେଲେ ଓ ତାଙ୍କୁ କେହି ବୋଧଦେଇ ପାରିଲେ ନାହିଁ । ଗୋମୁଖ କହିଲେ— ସାହସୀମାନେ କେବେବି ଆଶା ହରାନ୍ତି ନାହିଁ । ସେମାନେ ବିପଦରେ ସ୍ଥିର ରୁହନ୍ତି । ସେମାନେ ଐଶ୍ୱର୍ଯ୍ୟରେ ଉଲ୍ଲସିତ ହୁଅନ୍ତି ନାହିଁ କି ବିପଦରେ ଅଧୈର୍ଯ୍ୟ ହୁଅନ୍ତି ନାହିଁ । ମହାନ୍ ବ୍ୟକ୍ତିମାନେ ହିଁ ବଡ଼ ବଡ଼ ବିପଦର ସମ୍ମୁଖୀନ ହୁଅନ୍ତି ଓ ସେଇ ବିପଦକୁ ଅତିକ୍ରମ କରି ଲାଭବାନ ହୁଅନ୍ତି । ଉଦାହରଣ ସ୍ୱରୂପ ମୁଁ ଗପଟିଏ କହୁଛି, ଶୁଣନ୍ତୁ :

# ସୁନ୍ଦରସେନ କଥା

ଉତ୍ତରରେ ନିଶାଧ ରାଜ୍ୟରେ କୁବେର ରାଜତ୍ୱ କରୁଥିଲେ । ସେଇ ରାଜ୍ୟରେ ଅଳକା ନାମରେ ନଗରଟିଏ ଥିଲା । ନଗରର ଅଧିବାସୀମାନେ ବେଶ୍ ସୁଖୀ ଥିଲେ ଓ ସେମାନଙ୍କର କିଛି ଅଭାବ ନଥିଲା । ସେଇ ନଗରରେ ରାଜା ମହାସେନ ରାଜତ୍ୱ କରୁଥିଲେ । ଗୁଣପାଳିତ ତାଙ୍କର ମନ୍ତ୍ରୀ ଥିଲେ । ସହସ୍ର-ମୁଖ ସର୍ପ ଶେଷାଙ୍ଗ ମସ୍ତକରେ ପୃଥିବୀର ଭାର ବହନ କଲାପରି ମନ୍ତ୍ରୀ ଗୁଣପାଳିତ ରାଜ୍ୟର ସବୁ ଭାର ବହନ କରୁଥିଲେ । ରାଜା ତାଙ୍କ ଦାୟିତ୍ୱରେ ସବୁ ରାଜକାର୍ଯ୍ୟ ଛାଡ଼ିଦେଇ ସୁଖରେ ତାଙ୍କ ରାଣୀ ଶିଶିପ୍ରଭାଙ୍କ ସହିତ ସମୟ କଟାଉଥିଲେ । ତାଙ୍କର ପୁଅଟିଏ ହୋଇଥିଲା ଓ ପୁଅଟି ଦେଖିବାକୁ ଅତି ସୁନ୍ଦର ହୋଇଥିବାରୁ ସେ ତା'ର ନାମ ସୁନ୍ଦରସେନ ରଖିଥିଲେ । ଯୁବକ ହେଲେ ବି ସୁନ୍ଦରସେନ ଠାରେ ସବୁ ଗୁଣ ପୂରି ରହିଥିଲା । ରାଜାଙ୍କର ମନ୍ତ୍ରୀମାନଙ୍କର ପାଞ୍ଚୋଟି ପୁଅ ଥିଲେ— ଚଣ୍ଡପ୍ରଭ, ଭୀମଭୁଜ, ବ୍ୟାଘ୍ରପରାକ୍ରମ, ବିକ୍ରମଶକ୍ତି ଓ ଦୃଢ଼ବୁଦ୍ଧି । ସେମାନେ ସମସ୍ତେ ସମବୟସ୍କ ଥିଲେ ଓ ଏକାଠି ବଡ଼ ହୋଇଥିଲେ । ସେମାନେ ସମ୍ଭ୍ରାନ୍ତ, ଶକ୍ତିଶାଳୀ, ବୁଦ୍ଧିମାନ ଓ ନିଷ୍ଠାବାନ ସେବକ ଥିଲେ । କିନ୍ତୁ ଦୃଢ଼ବୁଦ୍ଧି ପ୍ରଧାନ ସୁନ୍ଦରସେନର ଘନିଷ୍ଠ ବନ୍ଧୁ ଥିଲା । ବୟସ ହୋଇଥିଲେ ବି ଉପଯୁକ୍ତ ପାତ୍ରୀ ମିଳି ନ ମିଳିବାରୁ ସୁନ୍ଦରସେନ ବାହା ହୋଇ ନଥିଲେ । ତିନୋଟି ପଦାର୍ଥ ମଣିଷକୁ ସମ୍ମାନ ଦିଏ— ସୌନ୍ଦର୍ଯ୍ୟ ଓ ନିଷ୍ଠାରେ ତା' ଉପଯୁକ୍ତ ସ୍ତ୍ରୀ, ନିଜ ଅର୍ଜିତ ସମ୍ପତ୍ତି ଓ ଶତ୍ରୁକୁ ପରାହତ କରୁଥିବା ଶକ୍ତି ।

ଦିନେ ବନ୍ଧୁମାନଙ୍କ ସହିତ ସୁନ୍ଦରସେନ ଶିକାର କରିବାକୁ ବାହାରିଲା ବେଳେ କାତ୍ୟାୟନୀ ନାମରେ ଜଣେ ବୃଦ୍ଧା ଯୋଗିନୀ ଆସି ପହଞ୍ଚିଲା । ସେ ଯୁବରାଜକୁ ଦେଖି ବିସ୍ମୟରେ ଅବାକ୍ ହୋଇ କହିଲା— ଓଃ ! ଏଇ ରାଜକୁମାର ରତିଙ୍କ ବିନା କାମଦେବ ଓ ରୋହିଣୀଙ୍କ ବିନା ଚନ୍ଦ୍ର ଭଳି ଦେଖା ଯାଉଛନ୍ତି । ତା'ପରେ ସେ ତା'ପାଖକୁ ଆସି ଅସ୍ପଷ୍ଟ ସ୍ୱରରେ କହିଲା— ରାଜକୁମାର ! ତମର ଜୟ ହେଉ ।

ସୁନ୍ଦରସେନ ବନ୍ଧୁମାନଙ୍କ ସହିତ କଥା ହେଉଥିଲା, ତେଣୁ ସେ ଯୋଗିନୀର ଆଶୀର୍ବାଦ ଶୁଣି ପାରିଲେ ନାହିଁ । ଯୋଗିନୀ ରାଗିଯାଇ ବଡ଼ ପାଟିରେ କହିଲା— ରାଜ ବଂଶଜ ! ତମେ ମୋ ଆଶୀର୍ବାଦ ନେବ ନାହିଁ ? ଏଇ ପୃଥିବୀରେ ମୋତେ ପୂଜା ନ କରୁଥିବା ରାଜା କି ରାଜକୁମାର ନାହାନ୍ତି । ତମେ ଯଦି ତମର ସୌନ୍ଦର୍ଯ୍ୟ ଓ ଯୌବନରେ ଏତେ ଗର୍ବିତ, ହଂସଦ୍ୱୀପର ରାଜା ଝିଅ ମନ୍ଦାରବତୀକୁ ତମେ ବାହାହେବା ଉଚିତ୍ । ତା'ହେଲେ ମୋ ଭଳି ଛାର ସ୍ତ୍ରୀଲୋକ କ'ଣ, ତମେ ସ୍ୱର୍ଗର ଇନ୍ଦ୍ରକୁ ବି ମାନିବ ନାହିଁ ।



ଯୋଗିନୀଟି ବଡ଼ ପାଟିରେ ଏସବୁ କଥା କହିବାରୁ ରାଜକୁମାର ତାକୁ ଚାହିଁଲା । ସେ ଯୋଗିନୀକୁ କ୍ଷମା ମାଗି ତା'ର ବନ୍ଧୁ ବିକ୍ରମତୁଙ୍ଗ ଘରେ ସେ ଶିକାରରୁ ଫେରିବା ପର୍ଯ୍ୟନ୍ତ ବିଶ୍ରାମ କରିବାକୁ ଅନୁରୋଧ କଲା ଓ ବିକ୍ରମତୁଙ୍ଗର ସେବକମାନଙ୍କୁ ଯୋଗୀର ଭଲଭାବେ ଚର୍ଚ୍ଚା କରିବାକୁ ଆଦେଶ ଦେଲା । ଶିକାରରୁ ଫେରି ପୂର୍ବାହ୍ନର ନିତ୍ୟକର୍ମ ସାରି ସେ ସେଇ ଯୋଗିନୀକୁ ଡକାଇଲା । ସେ ତାକୁ ବିନୟର ସହିତ କହିଲା— ମା ! ତମେ ମନ୍ଦାରବତୀ କଥା କହିଥିଲ । ସେ କିଏ ? ତମ କଥା ମୋତେ ଉତ୍କଣ୍ଠିତ କରିଛି । ଦୟାକରି ମୋତେ ତା' ବିଷୟରେ ସବୁକଥା କୁହ ।

ଯୋଗିନୀ କହିଲା— ରାଜକୁମାର ! ଶୁଣ । ପୃଥିବୀ ସାରା ବୁଲି ତୀର୍ଥସ୍ଥାନ ଦେଖିବା ଓ ପବିତ୍ର ପୁଷ୍କରିଣୀମାନଙ୍କରେ ସ୍ନାନ କରିବା ମୋର ଅଭ୍ୟାସ । ମୁଁ ହଂସଦ୍ୱୀପକୁ ଯାଇଥିଲି । ମନ୍ଦରଦେବ ସେଠିକାର ରାଜା । ମନ୍ଦାରବତୀ ନାମରେ ତା'ର ଝିଅଟିଏ ଅଛି । ମୁଁ ତାକୁ ଭେଟିଥିଲି । ସେ ପ୍ରକୃତରେ ନନ୍ଦନକାନନର ଶ୍ରେଷ୍ଠ ଫୁଲ ମନ୍ଦାର ସହ ସମାନ । ମନେହୁଏ ବ୍ରହ୍ମା ତାକୁ ଅମୃତରୁ ସୃଷ୍ଟିକରିଛନ୍ତି । ତାକୁ ପୁରୁଷଟିଏ ଦେଖିବା ମାତ୍ରେ କାମଦେବଙ୍କ ବାଣରେ ବାନ୍ଧି ହୋଇଯିବ । ସୌନ୍ଦର୍ଯ୍ୟରେ ଓ ଗୁଣରେ ତା' ସମାନ ମୁଁ ସାରା ସଂସାରରେ ଆଉ କାହାକୁ ଦେଖିନି ।

ଏତକ କହି ଯୋଗିନୀ ତା' ମୁଣାରୁ ମନ୍ଦାରବତୀର ଚିତ୍ରଟିଏ କାଢ଼ି ସୁନ୍ଦରସେନକୁ ଦେଖାଇଲା । ଚିତ୍ରଟିକୁ ଦେଖି ସୁନ୍ଦରସେନ ଉନ୍ମାଦିତ ହୋଇଗଲା । ସେ ଚିତ୍ରଟିକୁ ବହୁତ ସମୟଧରି ଚାହିଁ ରହିଲା, ଯେମିତି ସେ ନିଜେ ଚିତ୍ରଟିଏ ପାଲଟି ଯାଇଛି । ତା' ବନ୍ଧୁମାନେ ସୁନ୍ଦରସେନର ଚିତ୍ରଟିଏ ଆଙ୍କି ଦେବାକୁ ଯୋଗିନୀକୁ ଅନୁରୋଧ କଲେ । ଯୋଗିନୀ ଚିତ୍ର ଅଙ୍କିବାରେ ଦକ୍ଷଥିଲା ଓ ଅଳ୍ପ ସମୟ ଭିତରେ ରାଜକୁମାରର ଚିତ୍ର ଆଙ୍କି ରାଜକୁମାର ଓ ତା' ବନ୍ଧୁମାନଙ୍କୁ ଦେଖାଇଲା । ସେମାନେ ସମସ୍ତେ ସେମାନଙ୍କର ଆଖିକୁ ବିଶ୍ୱାସ କରିପାରିଲେ ନାହିଁ । ସୁନ୍ଦରସେନ ଦୁଇଟିଯାକ ଚିତ୍ରକୁ ନେଇ ଯୋଗିନୀକୁ ବହୁ ମୂଲ୍ୟବାନ ଉପହାର ଦେଲା ଓ ଭିତର କକ୍ଷକୁ ଚାଲିଗଲା । ଅଳ୍ପ ସମୟ ପରେ ସେ ଏମିତି ପ୍ରେମ-ରୋଗୀ ହୋଇଗଲା ଯେ ତା' ବାପା-ମା'ଙ୍କ ପାଇଁ ଏହା ସମସ୍ୟା ହୋଇ ଦେଖାଦେଲା । ସେମାନେ ତା' ବେମାରର ପ୍ରକୃତ କଥା ଜାଣିଗଲା ପରେ ରାଜା ଆଶ୍ୱସ୍ତ ହେଲେ । ସେ ତାଙ୍କ ପୁଅକୁ ସମସ୍ୟା କିଛି ଗୁରୁତର ନୁହେଁ ଯେହେତୁ ରାଜକୁମାରୀର ବାପା ତାଙ୍କର ଘନିଷ୍ଠ ବନ୍ଧୁ ବୋଲି କହିଲେ । ବାପାଙ୍କ କଥା ଶୁଣି ସୁନ୍ଦରସେନ କିଛିଟା ଆଶ୍ୱସ୍ତ ହେଲା ।

ରାଜା ମହାସେନ ତାଙ୍କ ପୁଅର ଚିତ୍ର ସହ ଚିଠି ଦେଇ ମନ୍ଦରଦେବଙ୍କ ନିକଟକୁ ଦୂତ ପଠାଇଲେ । ଅଳ୍ପ ସମୟରେ ଦୂତ ବନ୍ଦର ସହର ଶଶାଙ୍କପୁର ଗଲା ଓ ସେଠାରୁ ଜାହାଜ ଚଢ଼ି ହଂସଦ୍ୱୀପରେ ପହଞ୍ଚିଲା । ସେ ମନ୍ଦରଦେବଙ୍କୁ ଭେଟି ରାଜା ପଠାଇଥିବା ଉପହାର ସୁନ୍ଦରସେନର ଚିତ୍ର ଓ ରାଜାଙ୍କ ଚିଠି ଦେଲା । ତାଙ୍କ ସବୁଠୁଁ ଉତ୍ତମ ବନ୍ଧୁଙ୍କର ପୁଅକୁ ଜ୍ୱାଇଁ ରୂପେ ପାଇବାରୁ ମନ୍ଦରଦେବ ଉଲ୍ଲସିତ ହେଲେ । ସେ ତାଙ୍କ ଝିଅ ମନ୍ଦାରବତୀକୁ ଡାକି ସୁନ୍ଦରସେନର ଚିତ୍ର ଦେଖାଇଲେ । ମନ୍ଦାରବତୀ ସୁନ୍ଦରସେନର ସ୍ତ୍ରୀ ହେବାକୁ ସମ୍ମତ ହେଲା । ବାର୍ତ୍ତା ଆଦାନ ପ୍ରଦାନ ହେଲା ଓ ତିନିମାସ ପରେ ଶୁଭଦିନ ଦେଖି ତିଥି ସ୍ଥିର କରାଗଲା । ଉଭୟ ପକ୍ଷ ସମ୍ମତ ହୋଇ ଶୁଭ ତିଥିକୁ ଅପେକ୍ଷା କରିବାକୁ ଲାଗିଲେ ।

କିନ୍ତୁ ଦୁଇ ପ୍ରେମୀ, ରାଜକୁମାର ଓ ରାଜକୁମାରୀଙ୍କର ଧୈର୍ଯ୍ୟ ରହିଲା ନାହିଁ । ତିନି ମାସ ଅପେକ୍ଷା କରିବା ସେମାନଙ୍କ ପକ୍ଷରେ କଠିନ ଥିଲା । ଯେତେବେଳେ ଦିନଟିଏ ସେମାନଙ୍କୁ ଯୁଗଟିଏ ପରି ଲାଗୁଥିଲା, ତିନି ମାସ ବା ସେମାନେ କେମିତି ଅପେକ୍ଷା କରିଥା'ନ୍ତେ ? ମନ୍ଦାରବତୀ ବିଚ୍ଛେଦ ଦୁଃଖ ସହିପାରିଲା ନାହିଁ । ରାଜକୁମାରର ମଧ୍ୟ ସେଇ ଅବସ୍ଥା ହେଲା । ମନ୍ଦାରବତୀର ବାପ-ମା' ତାକୁ ଅଳକାକୁ ପଠାଇବାକୁ ଠିକ୍ କଲେ ଓ ତାକୁ ଜଣେ ମନ୍ତ୍ରୀଙ୍କ ସହିତ ପଠାଇ ଦେଲେ । ସେମାନେ

ଯାଉଥିବା ଜାହାଜ ବୁଡ଼ିଗଲା ଓ ମଦାରବତୀ ଭାସି ଭାସି କୂଳରେ ଲାଗିଲା । ସେ ଏକାକୀ ଥିଲା ଓ ସ୍ଥାନଟି ଅଜଣା ଥିଲା । ସେ କାନ୍ଦକୁ ସମ୍ଭାଳି ପାରିଲା ନାହିଁ ଓ ପାଟିକରି କାନ୍ଦିବାକୁ ଲାଗିଲା । ସେତିକିବେଳେ ନିକଟ ଆଶ୍ରମରୁ ମାତଙ୍ଗ ଋଷି ସମୁଦ୍ର ସ୍ନାନ କରିବାକୁ ସେଠାକୁ ଆସିଥିଲେ । ସେ ମଦାରବତୀକୁ ପଚାରି ତା' ବିଷୟରେ ସବୁକଥା ଜାଣିଲେ । ଧ୍ୟାନବଳରେ ସେ ମଦାରବତୀର କଥାର ସତ୍ୟତା ଜାଣିଲେ ଓ ମଦାରବତୀକୁ କହିଲେ– ରାଜକୁମାରୀ ! କାନ୍ଦ ନାହିଁ । ଧୈର୍ଯ୍ୟ ଧର । ବୟସ ସ୍ତ୍ରୀ-ପୁରୁଷ ନିର୍ବିଶେଷରେ ସମସ୍ତଙ୍କୁ ବିପଦ ପଡ଼େ । ଶିଘ୍ର ତମ ପ୍ରେମୀ ସହ ତମର ମିଳନ ହେବ । ମୋ ଆଶ୍ରମକୁ ଆସ । ମୋ ଝିଅ ତମର ସାଙ୍ଗ ହେବ । ଦେବତାମାନଙ୍କୁ ପୂଜାକରି ସମୟ କଟାଅ ।

ଋଷିଙ୍କ କଥାରେ ମଦାରବତୀ ସାନ୍ତ୍ୱନା ପାଇ ତାଙ୍କ ସହିତ ତାଙ୍କ ଆଶ୍ରମକୁ ଗଲା ଓ ତା' ପ୍ରେମିକ ସହିତ ମିଳନର ମଧୁର ଆଶାରେ ସମୟ ବିତାଇବାକୁ ଲାଗିଲା ।

ଏହି ସମୟରେ ଅଳକାରେ ରାଜକୁମାର ସୁନ୍ଦରସେନ ବଡ଼ କଷ୍ଟରେ ଜୀବନ ବିତାଇଲେ । ସାହସୀ ହୋଇଥିବାରୁ ସେ ଧୈର୍ଯ୍ୟ ଧରିଥିଲେ । ଶୁଭତିଥି ପହଞ୍ଚିବାରୁ ମହାସେନ ତାଙ୍କୁ ହଂସଦ୍ୱୀପକୁ ପଠାଇବା ପାଇଁ ଆୟୋଜନ କଲେ । ସୁନ୍ଦରସେନ ବନ୍ଦର-ସହର ଶଶାଂକପୁରରେ ବରଯାତ୍ରୀ ଦଳ ସହ ପହଞ୍ଚିଲା । ଶଶାଂକପୁରର ରାଜା ମହେନ୍ଦ୍ରଦିତ୍ୟ ତାଙ୍କୁ ଉପଯୁକ୍ତ ସମ୍ମାନ ଦେଲେ ଓ ତାଙ୍କ ଅନୁରୋଧରେ ସୁନ୍ଦରସେନ ଦିନକ ପାଇଁ ତାଙ୍କର ଅତିଥି ହେଲେ ।

ପରଦିନ ରାଜା ମହେନ୍ଦ୍ରଦିତ୍ୟ ଦୁଇଟି ଜାହାଜ ପ୍ରସ୍ତୁତି କଲେ– ଗୋଟିଏ ରାଜକୁମାର ସୁନ୍ଦରସେନ, ବନ୍ଧୁ ଓ ସେବକମାନଙ୍କ ପାଇଁ ଓ ଅନ୍ୟଟି ବରଯାତ୍ରୀ ଦଳ ଓ ଜିନିଷପତ୍ର ପାଇଁ । ଦୁଇ ଦିନ କାଳ ସେମାନେ ଆନନ୍ଦରେ ଯାତ୍ରା କଲେ, କିନ୍ତୁ ତୃତୀୟ ଦିନ ଭୟଙ୍କର ଝଡ଼ଟିଏ ଉଠି ଜାହାଜ ଦୁଇଟିକୁ ଅତି ପ୍ରଖର ଗତିରେ ଭସାଇ ନେଲା । ସୁନ୍ଦରସେନ ନିଜର ଦୁର୍ଭାଗ୍ୟ ଯୋଗୁ ଏଭଳି ଘଟଣା ସବୁ ଘଟୁଛି ଭାବି ମହେନ୍ଦ୍ରଦିତ୍ୟଙ୍କୁ ଡାକ ପକାଇଲା– ରାଜା ! ଏସବୁ ମୋ ଯୋଗୁ ଘଟୁଛି । ମୁଁ ଜାହାଜରୁ ଡେଇଁ ପଡୁଛି, ଆପଣମାନେ ସମସ୍ତେ ବଞ୍ଚିଯିବେ । ଏତିକି କହି ରାଜା ବା ଆଉ କେହି ବାଧା ଦେବା ଆଗରୁ ସେ ଜାହାଜରୁ ଡେଇଁ ପଡ଼ିଲା ଓ ତା' ପଛେ ପଛେ ତାଙ୍କ ବନ୍ଧୁ ପାଞ୍ଚଜଣଯାକ ଜାହାଜରୁ ଡେଇଁ ପଡ଼ିଲେ । ସେମାନେ ଡେଇଁ ପଡ଼ିବା ପରେ ଝଡ଼ ଶାନ୍ତ ହୋଇଗଲା ଓ ଜାହାଜଗୁଡ଼ିକ ଧୀରେ ଚାଲିବାକୁ ଲାଗିଲା । କିନ୍ତୁ ଜାହାଜରେ ଥିବା ଲୋକମାନେ ରାଜକୁମାର ଓ ତା'ର ବନ୍ଧୁମାନଙ୍କୁ ଉଦ୍ଧାର କରିବା ପାଇଁ ଯାଇ ପାରିଲେ ନାହିଁ, କାରଣ ସେମାନେ ଜାଣିଥିଲେ ରାଜକୁମାର ସୁନ୍ଦରସେନ ଓ ତା'ର ବନ୍ଧୁମାନେ ଜାହାଜ ଦୁଇଟି ଠାରୁ ଦୂରରେ ଥିଲେ । ତା'ଛଡ଼ା ସମୁଦ୍ରର କେଉଁ କୂଳକୁ ସେମାନେ ପହଁରି ଗଲେ ଜାଣି ନଥିଲେ । ଜଣେ ବନ୍ଧୁ ଦୃଢ଼ବୁଦ୍ଧି ରାଜକୁମାର ପାଖେ ପାଖେ ନିଜକୁ ରଖିପାରିଲା ଓ ସେମାନେ ସମୟକ୍ରମେ କୂଳରେ ପହଞ୍ଚିଲେ । ରାଜକୁମାର ତାଙ୍କ ସଙ୍ଗୀ ଦେଇଥିବା ରାଜାଙ୍କ ପାଇଁ ଦୁଃଖ କଲା । ଦୃଢ଼ବୁଦ୍ଧି ତାଙ୍କୁ ଧୈର୍ଯ୍ୟ ନ ହରାଇବାକୁ କହିଲା । ସେ କହିଲା ଯେ ସମୟକ୍ରମେ ସବୁ ଠିକ୍ ହୋଇଯିବ ବୋଲି ସେ ଅନୁଭବ କରୁଛି ।

ରାଜକୁମାର ଓ ଦୃଢ଼ବୁଦ୍ଧି ସମୁଦ୍ର କୂଳରେ ବୁଲୁଥିବା ବେଳେ ଦୁଇଜଣ ସନ୍ୟାସୀ ଆସିଲେ । ସେମାନେ ରାଜକୁମାର ଓ ତାଙ୍କ ବନ୍ଧୁ ବିଷୟରେ ସବୁକଥା ଶୁଣି କହିଲେ– ମଣିଷମାନଙ୍କୁ ଉଭୟ ଦୁର୍ଭାଗ୍ୟ ଓ ସୌଭାଗ୍ୟର ସମ୍ମୁଖୀନ ହେବାକୁ ହେବ, ଯେହେତୁ ଉଭୟ ସେମାନଙ୍କ ପୂର୍ବ ଜନ୍ମର କର୍ମଫଳ । ଏପରିକି ଦେବତାମାନେ ସେମାନଙ୍କର କୁ-କର୍ମ ପାଇଁ ଫଳଭୋଗ କରିଛନ୍ତି । ଜଣେ ସୁଖଭୋଗ କରିବା ପାଇଁ ଚାହୁଁଥିଲେ ଭଲ କାମ କରିବା ଉଚିତ । ଭାଗ୍ୟ ସହାୟ ହେଲେ ତମେ ତମର ପ୍ରେମିକାକୁ ନିଶ୍ଚୟ ପାଇବ ।



ତା'ପରେ ସେମାନେ ରାଜକୁମାର ଓ ବନ୍ଧୁକୁ ଭଲ ଦିନକୁ ଅପେକ୍ଷା କରି ତାଙ୍କ ଆଶ୍ରମରେ କିଛି ଦିନ ବିତାଇବାକୁ ଅନୁରୋଧ କଲେ । ଅଳ୍ପ କେତେ ଦିନ ପରେ ରାଜକୁମାରର ଆଉ ଦୁଇଜଣ ବନ୍ଧୁ ପହଁରି ପହଁରି ସେଇ କୂଳରେ ପହଞ୍ଚିଲେ ଓ ତାଙ୍କୁ ଖୋଜିବାକୁ ଲାଗିଲେ । କିନ୍ତୁ ମାଲିକକୁ ନ ପାଇ ଶଶାଂକପୁରକୁ ଫେରିଗଲେ । ରାଜା ଓ ବରଯାତ୍ରୀ ଦଳଥିବା ଦୁଇଟି ଜାହାଜ ଧୀରେ ଧୀରେ ଶଶାଂକପୁରକୁ ଫେରି ଆସିଲା । ଏହା ଭିତରେ ମନ୍ଦରଦେବ ଉଭୟ ଜାହାଜ ଦୁର୍ଘଟଣାର ସମ୍ମୁଖୀନ ହୋଇଥିବା ଜାଣିଲେ ଓ ଦୁଇଜଣ ମନ୍ତ୍ରୀ ଅଳକାକୁ ଫେରି ଯାଇଥିଲେ । ରାଜା ଓ ରାଜକନ୍ୟାଙ୍କର ଖବର କିଛି ଜଣା ପଡ଼ିଲା ନାହିଁ । ମନ୍ଦରଦେବ ତାଙ୍କ ବନ୍ଧୁ ମହାସେନଙ୍କ ସହିତ ସମୟ ବିତାଇବାକୁ ଅଳକା ଆସିଲେ । ଉଭୟ ରାଜା ସବୁ ବିଳାସ ତ୍ୟାଗକରି ଅଳ୍ପାହାରରେ ରହି ଧ୍ୟାନ ଓ ଜପରେ ସମୟ କଟାଇଲେ ।

ମାତଙ୍ଗ ଋଷିଙ୍କ ଆଶ୍ରମ ସନ୍ନିକଟ ଜଙ୍ଗଲରେ ଦୃଢ଼ବୁଦ୍ଧି ସହିତ ବୁଲୁ ବୁଲୁ ଦିନେ ସେମାନେ ହ୍ରଦଟିଏ ଦେଖିଲେ । ସେଇ ହ୍ରଦରେ କେତେଜଣ ଯୁବତୀ ଗାଧୋଉ ଥିଲେ । ହଠାତ୍ ସେମାନେ ଚିତ୍କାରଟିଏ ଶୁଣି ହ୍ରଦ ପାଖକୁ ଦଉଡ଼ି ଗଲେ । ଯୁବତୀମାନଙ୍କ ଭିତରୁ ଜଣକୁ କୁମ୍ଭୀରଟିଏ ହ୍ରଦ ମଝିକୁ ଟାଣି ନେଉଥିଲା । ଅନ୍ୟ ଯୁବତୀମାନେ କୂଳକୁ ଉଠିଆସି ଚିତ୍କାର କରି କାନ୍ଦୁଥିଲେ । ହାତରେ ଖଣ୍ଡାଧରି ରାଜକୁମାର ହ୍ରଦକୁ ଡେଇଁ ପଡ଼ିଲା । ସେ ପହଁରି ପହଁରି କୁମ୍ଭୀର ପାଖକୁ ଯାଇ ତାକୁ ଖଣ୍ଡାରେ ଦୁଇଖଣ୍ଡ କରି ହାଣିଦେଲା ଓ ଯୁବତୀଟିକୁ ଉଦ୍ଧାର କରି ବାହୁରେ ଜାକିଧରି ପହଁରି ପହଁରି କୂଳକୁ ଫେରି ଆସିଲା । ଯୁବତୀଟିର ସାଙ୍ଗମାନେ ତା'ପାଖକୁ ଦଉଡ଼ିଯାଇ ତା'ର ସେବା କଲେ । ଯୁବତୀଟି ଧୀରେ ଧୀରେ ଆଖି ଖୋଲିଲା ଓ ତା' ଦୃଷ୍ଟି ତାକୁ ଉଦ୍ଧାର କରିଥିବା ରାଜକୁମାରର ଦୃଷ୍ଟିରେ ମିଳିଗଲା । ସେମାନେ ପରସ୍ପରକୁ ମଦାରବତୀ ଓ ସୁନ୍ଦରସେନ ବୋଲି ଚିହ୍ନିପାରିଲେ । ମଦାରବତୀ ତା'ର ପ୍ରେମିକର ପାଦ ତଳେ ପଡ଼ିଗଲା ଓ ସୁନ୍ଦରସେନ ତାକୁ ଉଠାଇ ନେଇ ତା' ଛାତିରେ ଜାକି ଧରିଲା । ଦୁଇଜଣଙ୍କ ଆଖିରୁ ଆନନ୍ଦର ଲୁହ ଝରି ସେମାନଙ୍କର ଗାଲକୁ ଭିଜାଇ ଦେଲା । ଜଣେ ଯୁବତୀ ଆଶ୍ରମକୁ ଦଉଡ଼ିଯାଇ ମାତଙ୍ଗ ଋଷିଙ୍କୁ ଖବର ଦେଲା । ଋଷି ତାଙ୍କ ଝିଅ ଯମୁନା ସହିତ ଆସିଲେ । ସେମାନେ ସମସ୍ତେ ଆଶ୍ରମକୁ ଯାଇ ସେଦିନ ପାଇଁ ବିଶ୍ରାମ କଲେ । ପରଦିନ ଋଷି ରାଜକୁମାରଙ୍କୁ ପାଖକୁ ଡାକି କହିଲେ– ତମେ ତମ ପ୍ରେମିକାକୁ ନେଇ ଅଳକାକୁ ଯାଅ । ମଦାରବତୀ ସହିତ ତମେ ତମ ରାଜ୍ୟକୁ ବହୁ ଦିନଧରି ଶାସନ କରିବ । ଶିଘ୍ର ତମେ ତମର ଅନ୍ୟ ବନ୍ଧୁମାନଙ୍କୁ ଭେଟିବ । ମୋତେ ଗୋଟିଏ ଜରୁରୀ କାମରେ ଡାକରା ଆସିଛି । ମୁଁ ଶ୍ୱେତଦ୍ୱୀପକୁ ଯାଉଛି । –ଏତକ କହି ଋଷି ତାଙ୍କ ଝିଅ ଯମୁନାକୁ ନେଇ ଶ୍ୱେତଦ୍ୱୀପ ଅଭିମୁଖେ ଆକାଶମାର୍ଗରେ ଉଡ଼ିଗଲେ ।

ଅଳକାକୁ ଯିବାର ସୁବିଧା କରିବାକୁ ସୁନ୍ଦରସେନ ମଦାରବତୀ ଓ ଦୃଢ଼ବୁଦ୍ଧିକୁ ସଙ୍ଗରେ ନେଇ ସମୁଦ୍ର କୂଳକୁ ଗଲା । ସେ ଜଣେ ବଣିକ ଯୁବକର ଜାହାଜଟିଏ ଦେଖିଲା । ସେମାନଙ୍କୁ ତା' ଜାହାଜରେ ନେଇ ଅଳକାରେ ପହଞ୍ଚାଇ ଦେବାକୁ ସେ ବଣିକ ଯୁବକକୁ ଅନୁରୋଧ କଲା । ବଣିକ ଯୁବକଟି ଖଳ ସ୍ୱଭାବର ଥିଲା । ନୀଚମନା ହେତୁ ସେ ମଦାରବତୀର ରୂପରେ ପାଗଳ ହୋଇଗଲା । ସେ ଜାହାଜ ଭିତରକୁ ଯାଇ ଅନ୍ୟ ନାବିକମାନଙ୍କ ସହିତ ପରାମର୍ଶ କଲା ଓ ମୁହୂର୍ତ୍ତକ ପରେ ଜାହାଜଟି କୂଳରେ ଲାଗିଲା । ରାଜକୁମାର ପ୍ରଥମେ ମଦାରବତୀକୁ ଜାହାଜ ଉପରକୁ ଉଠିବାରେ ସାହାଯ୍ୟ କଲା । ହେଲେ ସେ ଓ ତା ବନ୍ଧୁ ଦୃଢ଼ବୁଦ୍ଧି ଜାହାଜ ଉପରକୁ ଉଠିବା ପୂର୍ବରୁ ଜାହାଜଟି କୂଳ ଛାଡ଼ି ଦେଲା । ସେମାନେ ଠକି ଯାଇଛନ୍ତି ବୋଲି ଜାଣିଲେ । ଭାଗ୍ୟକୁ ଭରସାକରି ସେମାନେ କୂଳରୁ ଚାଲି ଆସିଲେ ଓ ସନ୍ଧ୍ୟାବେଳକୁ ଗୋଟିଏ ବଣ ଭିତରେ ପହଞ୍ଚିଲେ ।

ସେଇ ଜଙ୍ଗଲରେ ଦୁର୍ଦ୍ଧର୍ଷ ବଣୁଆ ଲୋକମାନେ ରହୁଥିଲେ । ବିନ୍ଧ୍ୟକେତୁ ସେମାନଙ୍କର ରାଜା ଥିଲା ଓ ତା' ଆଦେଶରେ ତା' ଲୋକମାନେ ଚଣ୍ଡୀ ଠାକୁରାଣୀଙ୍କ ପାଖରେ ବଳୀ ଦେବାକୁ ଲୋକ ଖୋଜୁଥିଲେ । ସେମାନେ ସୁନ୍ଦରସେନ ଓ ଦୃଢ଼ବୁଦ୍ଧିକୁ ପାଇଗଲେ । ସେମାନଙ୍କ ଚେହେରାରୁ ସେମାନେ ବୀର ବୋଲି ସେମାନେ ଜାଣିଗଲେ ଓ ସେମାନଙ୍କୁ ଧରିବା ସହଜ ହେବନାହିଁ ବୋଲି ମନେ କଲେ । ତାଥାପି ରାଜାର ଆଦେଶକୁ ମାନି ସେମାନେ ରାଜକୁମାର ଓ ତା' ବନ୍ଧୁକୁ ଆକ୍ରମଣ କଲେ । ପାଞ୍ଚୋଟି ଅଗ୍ନି– ବିଦେଶ ଜାଗା, ବିଚ୍ଛେଦ ଦୁଃଖ, ଜଣେ ନୀଚ ଲୋକର ପ୍ରତାରଣା, ଅନାହାର ଓ ଭ୍ରମଣ ଜନିତ କ୍ଳାନ୍ତି– ରାଜକୁମାରକୁ ଧ୍ୱଂସ-ପ୍ରାୟ କରି ଦେଇଥିଲା । ବର୍ତ୍ତମାନ ଭାଗ୍ୟ ଷଷ୍ଠ ଅଗ୍ନିକୁ ଜନ୍ମ ଦେଲା– ବଣୁଆ ଲୋକଙ୍କ ସହିତ ଘମାଘୋଟ ଲଢ଼େଇ ଯେମିତି ତା' ସାହସକୁ ଜାକରା ଦେଲା । ନିଜକୁ ରକ୍ଷା କରିବା ପାଇଁ ତା' ପାଖରେ କେବଳ ଛୋଟ ଖଣ୍ଡାଟିଏ ଥିଲା । ସେଇଥିରେ ସେ ତାକୁ ଆକ୍ରମଣ କରିବାକୁ ଆସିଥିବା ଅନେକ ବଣୁଆ ଲୋକଙ୍କୁ ମାରି ପକାଇଲା । ଦୃଢ଼ବୁଦ୍ଧି ବି ରାଜକୁମାର ଭଳି ସମାନ ସାହସ ଓ ବୀରତ୍ୱରେ ଲଢ଼ିଲା । ସେ ବଣୁଆ ଲୋକଙ୍କୁ ସଂହାର କରି ଚାଲିଲା । ଖୁବ୍ କମ୍ ବଣୁଆ ଲୋକ ବଞ୍ଚିଗଲେ । ଏହା ଭିତରେ ଆହୁରି ବହୁତ ବଣୁଆ ଲୋକ ଆସି ପହଞ୍ଚି ଯାଇଥିଲେ । ରାଜକୁମାର ଓ ତା' ବନ୍ଧୁ ଦୃଢ଼ବୁଦ୍ଧି ସେମାନଙ୍କ ଦେହରେ ବହୁତ ଅସ୍ତ୍ରାଘାତ ପାଇଥିଲେ ଏ ରକ୍ତସ୍ରାବ ହେତୁ ଦୁର୍ବଳ ହୋଇପଡ଼ିଥିଲେ ଓ ବେଶୀ ସମୟ ଲଢ଼ିପାରିଲେ ନାହିଁ । ସେମାନେ ଲଢ଼ି ଲଢ଼ି ଶେଷରେ ସେଇ ବଣୁଆ ଲୋକମାନଙ୍କ ହାତରେ ଧରାପଡ଼ିଲେ । ସେମାନଙ୍କୁ ବାନ୍ଧି ନିଆଗଲା ଏବଂ ମଇଳା ଓ ପୋକ ଭଣଭଣ ଅନ୍ଧାରିଆ ଗୁମ୍ଫା ଭିତରକୁ ସେମାନଙ୍କୁ ଠେଲି ଦିଆଗଲା । ସେମାନେ ସେଇ ଗୁମ୍ଫାରେ ଆଉ କେତେଜଣଙ୍କୁ ଦେଖିଲେ । ସେମାନଙ୍କୁ ନିରିଖେଇ ଦେଖି ରାଜକୁମାର ତା' ବନ୍ଧୁ ବୀରଭଦ୍ର ଓ ବିକ୍ରମଶକ୍ତିକୁ ଚିହ୍ନିପାରିଲେ । ସେମାନେ ମଧ ସେମାନଙ୍କର ରାଜକୁମାରକୁ ଚିହ୍ନପାରି ପାଦତଳେ ପଡ଼ିଗଲେ । ନିଜର ଓ ନିଜ ବନ୍ଧୁମାନଙ୍କର ଏଭଳି ଦୁର୍ଦ୍ଦଶା ରାଜକୁମାରର ଦୁଃଖକୁ ଦୁଇଗୁଣ କରିଦେଲା, କିନ୍ତୁ ତାକୁ ଅନ୍ୟମାନେ ସାନ୍ତ୍ୱନା ଦେଲେ । ବନ୍ଦୀମାନଙ୍କ ଭିତରେ ଅନ୍ୟ କେତେଜଣ ଥିଲେ, ଯେଉଁମାନଙ୍କୁ ରାଜକୁମାର କି ତାଙ୍କର ବନ୍ଧୁମାନେ ଜାଣି ନଥିଲେ । ସେମାନଙ୍କ ଭିତରେ ଜଣେ କହିଲା ମହାଶୟ, କାନ୍ଦୁଛନ୍ତି କାହିଁକି ? ପୂର୍ବ ଜନ୍ମରେ ଅର୍ଜିଥିବା କର୍ମର ଫଳକୁ କିଏ ବା ବଦଳିପାରିବ ? କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ଦିନ ଅଧ ରାତିରେ ଆମ ସମସ୍ତଙ୍କୁ ଚଣ୍ଡୀଙ୍କ ପାଖରେ ବଳି ଦିଆଯିବା କଥା ଆପଣ କ'ଣ ଜାଣି ନାହାନ୍ତି ? ବଣୁଆ ଲୋକମାନଙ୍କର ରାଜା ଆମକୁ ସେଇଥିପାଇଁ ଏଠାରେ ଆଣି ରଖିଛି । ତେଣୁ କାନ୍ଦି ଲାଭ ନାହିଁ । ଭାଗ୍ୟର ନିଷ୍ପତ୍ତି ଅଦ୍ଭୁତ । ଆମେ ବିପଦକୁ କୋଳେଇ ନଥିଲୁ । ତେଣୁ ଭାଗ୍ୟ ଆମକୁ ସୁଖବି ଦେଇପାରେ ।

ସେଇ କାଳରାତି ପହଞ୍ଚିଲା । ରାତି ଅଧରେ ସମସ୍ତଙ୍କୁ ହାତ ପଛୁଆ ବାନ୍ଧି ଆଲୁଅରେ ଚଣ୍ଡୀ ମନ୍ଦିରକୁ ନିଆଗଲା । ସୁନ୍ଦରସେନ ଦେବୀଙ୍କ ଉପରେ ଦୃଷ୍ଟି ସ୍ଥିରରଖି ପ୍ରାର୍ଥନା କଲା– ହେ ମା ! ତମେ ତ୍ରିଶୂଳରେ ଅସୁରମାନଙ୍କୁ ମାରି ଦେବତାଙ୍କ ବିପଦକୁ ଦୂର କରିଛ । ତମେ ତମ ଭକ୍ତମାନଙ୍କୁ ସବୁ ଅବସ୍ଥାରେ ଓ ସବୁବେଳେ ରକ୍ଷା କରି ଆସିଛ । ତମେ ତମର ଅମୃତମୟ କୃପା ଦୃଷ୍ଟିରେ ଥରେ ଦୁଃଖରେ ଧ୍ୱଂସ ପ୍ରାୟ ହୋଇଥିବା ତମର ବିନୀତ ଭକ୍ତକୁ ଚାହଁ । ମାତାମାନଙ୍କର ମାତା ! ସର୍ବନାଶକାରୀମାନଙ୍କର ସର୍ବନାଶକାରିଣୀ ! ମୁଁ ତମକୁ ପ୍ରଣିପାତ କରୁଛି ।– ଏତକ ପ୍ରାର୍ଥନା କରି ସୁନ୍ଦରସେନ ତା' ଆଖି ବନ୍ଦକଲା । ସେତିକିବେଳେ ବିନ୍ଧ୍ୟକେତୁ ଦେବୀଙ୍କୁ ପୂଜା କରିବାକୁ ଓ ବଳି ଦେଖିବାକୁ ଆସିଲା । ସୁନ୍ଦରସେନ ତାକୁ ଚିହ୍ନିପାରିଲା ଓ ବନ୍ଧୁମାନଙ୍କୁ ନିମ୍ନ ସ୍ୱରରେ କହିଲା– ଯେ ମୋ ବାପାଙ୍କର ସାମନ୍ତମାନଙ୍କ ଭିତରୁ ଜଣେ– ବିନ୍ଧ୍ୟକେତୁ । ମୋ ବାପାଙ୍କୁ ସଲାମୀ ଦେଇ ସେ ବଣ ରାଜ୍ୟକୁ ଶାସନ କରୁଛି । ଦେଖାଯାଉ କ'ଣ ହେଉଛି । ଆମେ ତାକୁ ଚିହ୍ନାଦେବା ନାହିଁ । ବିପଦରେ



ପଡ଼ି ଥିଲାବେଳେ ଚିହ୍ନାଦେଇ ରକ୍ଷାପାଇବା ଜଣେ ଆତ୍ମସମ୍ମାନବନ୍ତ ଲୋକ ପକ୍ଷରେ ମରିବା ସହିତ ସମାନ ।

ବିନ୍ଧ୍ୟକେତୁ ପୂଜାସାରି ତା' ଲୋକମାନଙ୍କୁ ପାଖକୁ ଡାକି ଜାଣିବାକୁ ଚାହିଁଲା ଯେ କେଉଁ ଲୋକ ଧରା ହେବା ପୂର୍ବରୁ ତା'ର ଏତେଗୁଡ଼ାଏ ଲୋକଙ୍କୁ ମାରି ପକାଇଲା । ସେମାନେ ତାକୁ ବହୁ ଶସ୍ତ୍ରାଘାତର ଚିହ୍ନ ଦେହରେ ଥିବା ସୁନ୍ଦରସେନକୁ ଦେଖାଇ ଦେଲେ । ବିନ୍ଧ୍ୟକେତୁର ଝାପସା ମନେପଡ଼ିଲା ଯେ, ସେ ସେଇ ଯୁବକକୁ କୋଉଠି ଦେଖିଛି, କିନ୍ତୁ ଠିକ୍‌ଭାବେ ମନେ ପକାଇ ପାରିଲା ନାହିଁ । ସେ ତା' ସନ୍ଦେହ ଦୂର କରିବାକୁ ପଚାରିଲା– ତମେ କିଏ ଓ କେଉଁଠୁ ଆସିଛ ?

ସୁନ୍ଦରସେନ ଉତ୍ତର ଦେଲା– ସେସବୁ ତମର ଜାଣିବା ଦରକାର ନାହିଁ । ତମେ ତମ କାମ କର ।

ବିନ୍ଧ୍ୟକେତୁ ସୁନ୍ଦରସେନର କଣ୍ଠସ୍ୱରରୁ ତାକୁ ଚିହ୍ନିପାରିଲା ଏବଂ ଅନୁତାପ କରି ତା' ପାଦତଳେ ପଡ଼ିଗଲା । ସେ ବଡ଼ ପାଟିରେ କହିଲା– ହେ ମହାନ୍ ରାଜା ମହାସେନ ! ମୁଁ ଜାଣେନାହିଁ ଆପଣଙ୍କ ପୁଅ ରାଜକୁମାର ସୁନ୍ଦରସେନ କାହିଁକି ଏଠାକୁ ଆସିଥିଲେ । ମୁଁ ତାଙ୍କୁ ଅନେକ ଅତୁଳ ଓ ଅକ୍ଷମଣୀୟ ଯନ୍ତ୍ରଣା ଦେଇଛି । ତାଙ୍କୁ ଆଦର ଅଭ୍ୟର୍ଥନା ନକରି ମୁଁ ତାଙ୍କୁ କଷ୍ଟ ଦେଇଛି, ସେଥିପାଇଁ ଦେବତାମାନେ ମୋତେ ଅଭିଶାପ ଦେବା ଉଚିତ । –ଏମିତି ଅନୁତାପ କରି ସେ ଉଚ୍ଚସ୍ୱରରେ କାନ୍ଦିବାକୁ ଲାଗିଲା । ରାଜକୁମାର ତାକୁ ସାନ୍ତ୍ୱନା ଦେଇ କହିଲେ– ଆମେ ଉଭୟ ଭାଗ୍ୟବାନ । ନିୟତି ଓ ଦେବୀଙ୍କ କରୁଣା ଆମକୁ ରକ୍ଷା କରିଛି ।

ବିନ୍ଧ୍ୟକେତୁ ଚଣ୍ଡୀଙ୍କୁ ପୂଜାକଲା ଓ ବଳିପଡ଼ିବାକୁ ବନ୍ଦୀ ହୋଇଥିବା ସବୁ ଲୋକଙ୍କୁ ମୁକୁଳାଇ ଦେଲା । ସେ ସେମାନଙ୍କୁ ସ୍ନାନ କରାଇ ସୁସ୍ୱାଦୁ ଭୋଜନ ଦେଲା । ସେମାନେ କିଛି ସମୟ ବିଶ୍ରାମ କରି ଯେ ଯାହା ଘରକୁ ଚାଲିଗଲେ ।

ବିନ୍ଧ୍ୟକେତୁ ରାଜକୁମାରର ଯତ୍ନ ନେଲା । ତା'ର କ୍ଷତ ଚିହ୍ନ ସବୁକୁ ଧୋଇ ସଫା କରାଯାଇ ଔଷଧ ଲଗାଇ ଦିଆଗଲା । ଅଳ୍ପଦିନ ଭିତରେ ରାଜକୁମାର ତା' ପୂର୍ବ ସ୍ୱାସ୍ଥ୍ୟ ଓ ବଳ ଫେରି ପାଇଲା । ଏଇ ସମୟରେ ବିନ୍ଧ୍ୟକେତୁର ଲୋକମାନେ ତା' ସମ୍ମୁଖରେ ଜଣେ ବଣିକ ଯୁବକ ଓ ତା'ର ନାବିକମାନଙ୍କ ସହ ଜଣେ ଯୁବତୀକୁ ହାଜର କରାଇଲେ । ଦୁଷ୍ଟ ବଣିକ ମନ୍ଦାରବତୀକୁ ସଙ୍ଗରେ ନେଇ ତା' ଘରକୁ ଯାଉଥିଲା । ବଣିକ ତା'ର ସବୁ ଦୋଷ ମାନିଗଲା । ରାଗରେ ବିନ୍ଧ୍ୟକେତୁ ତାକୁ ଫାଶି ଦେବାକୁ ହୁକୁମ ଦେଲା । ମନ୍ଦାରବତୀ ଦଉଡ଼ିଯାଇ ରାଜକୁମାରର ପାଦତଳେ ପଡ଼ିଗଲା । ରାଜକୁମାର ତାକୁ ଉଠାଇ ସାନ୍ତ୍ୱନା ଦେଲା । ତା'ପରେ ସେ ବିନ୍ଧ୍ୟକେତୁକୁ ବଣିକକୁ କ୍ଷମା କରିବା ପାଇଁ କହିଲା । ବିନ୍ଧ୍ୟକେତୁ ସୁନ୍ଦରସେନର କଥା ରଖି ବଣିକକୁ ଜୀବନରେ ମାରିଲା ନାହିଁ, କିନ୍ତୁ ତା'ର ଧନ ସମ୍ପତ୍ତି ସବୁ ବାଜ୍ୟାପ୍ତ କରିଦେଲା ।

ରାଜକୁମାର ଓ ତାଙ୍କ ବନ୍ଧୁମାନଙ୍କୁ ଆଉ ଅଧିକ ଦିନ ରଖିବା ଉଚିତ୍ ନୁହେଁ ବୋଲି ବିନ୍ଧ୍ୟକେତୁ ମନେକଲା । ସେମାନଙ୍କର ପିଲାମାନଙ୍କ ଅବସ୍ଥା ଜାଣି ନପାରି ସେମାନେ ଦୁଃଖରେ ଥିଲେ । ରାଜକୁମାର, ରାଜକନ୍ୟା ଓ ରାଜକୁମାରର ବନ୍ଧୁମାନଙ୍କ ପାଇଁ ଉତ୍ତମ ଯାନବାହନର ବ୍ୟବସ୍ଥା କରିଦିଆଗଲା । ରାଜକୁମାର ଓ ତାଙ୍କ ସ୍ତ୍ରୀ ଆସୁଛନ୍ତି ବୋଲି ଆଗତୁରା ଖବର ଦେବାପାଇଁ ଅଳକାକୁ ଦୂତ ପଠାଗଲା । ଅଳକାରେ ଖବର ପାଇ ଦୁଇ ରାଜା ବିଧାତାଙ୍କୁ ଧନ୍ୟବାଦ ଜଣାଇ ପୂଜାପାଠ କଲେ । ରାଜକୁମାର ଓ ତା'ର ବନ୍ଧୁମାନେ ସୁନ୍ଦର ସୁନ୍ଦର ଘୋଡ଼ାରେ ଚଢ଼ିଲେ ଓ ରାଜକୁମାରୀକୁ ଗୋଟିଏ ସୁନ୍ଦର ପାଲିଙ୍କିରେ ନିଆଗଲା । କମ୍ ସମୟ ଭିତରେ ସେମାନେ ଅଳକାରେ ପହଞ୍ଚିଲେ । ସେମାନଙ୍କ ଆଗମନ ପାଇଁ ଅଳକାକୁ ସୁନ୍ଦର ଭାବରେ ସଜାଯାଇଥିଲା । ନର-ନାରୀ, ବାଳକ-

ବାଜିଲା, ସମସ୍ତେ ସୁନ୍ଦର ସୁନ୍ଦର ପୋଷାକ ପିନ୍ଧି ହର୍ଷୋଲ୍ଲାସରେ ରାଜକୁମାର ଓ ରାଜକନ୍ୟାଙ୍କୁ ସ୍ୱାଗତ କଲେ । ରାଜପଥର ଦୁଇ ପାର୍ଶ୍ୱରେ ଥିବା କୋଠାମାନଙ୍କ ଉପରୁ ଲୋକମାନେ ସେମାନଙ୍କ ଉପରେ ପୁଷ୍ପବୃଷ୍ଟି କଲେ । ରାଜା ମହାସେନ ଓ ମନ୍ଦରଦେବ ତାଙ୍କ ପିଲାମାନଙ୍କ ପାଖକୁ ଆଗେଇ ଗଲେ । ବାପାଙ୍କୁ ଦୂରରୁ ଦେଖି ରାଜକୁମାର ଘୋଡ଼ାରୁ ଓହ୍ଲାଇ ପାଖକୁ ଆସି ତାଙ୍କ ପାଦତଳେ ପଡ଼ିଗଲେ । ତା'ର ବନ୍ଧୁମାନେ ମଧ୍ୟ ଅନୁରୂପ କଲେ । ମନ୍ଦାରବତୀ ବସିଥିବା ପାଲିଙ୍କିକୁ ଅନ୍ତଃପୁରକୁ ନିଆଗଲା । ରାଜକୁମାର ତା'ର ପ୍ରେମିକାର ହାତଧରି ତା' ମାଆଙ୍କ ପାଖକୁ ନେଲା ଓ ଦୁହେଁ ରାଣୀଙ୍କ ପାଦତଳେ ପଡ଼ିଗଲେ । ରାଣୀ ସେମାନଙ୍କୁ ଆନନ୍ଦରେ ଆଲିଙ୍ଗନ କଲେ ଓ ଲୁହ ଭରି ଆଖିରେ ଆଶୀର୍ବାଦ କଲେ ।

ମନ୍ଦରଦେବଙ୍କର ପୁଅ ନଥିଲା । ସେ ତତ୍‌କ୍ଷଣାତ୍ ସେଇଠାରେ ତାଙ୍କର ଝିଅର ବିବାହ ଉତ୍ସବ ପାଳନ କଲେ ଓ ତାଙ୍କର ସମସ୍ତ ସମ୍ପତ୍ତି ଓ ରାଜ୍ୟ ତାଙ୍କ ଜ୍ୱାଇଁକୁ ଦେଇ ଦେଲେ । ରାଜା ମହାସେନ ସୁନ୍ଦରସେନଙ୍କୁ ରାଜା କରାଇଲେ । ସୁନ୍ଦରସେନ ରାଜା ହୋଇ ବହୁତ ଦେଶ ଜୟ କଲା ଓ ତା'ର ମନ୍ତ୍ରୀ ବୃଦ୍ଧବୁଦ୍ଧି ଓ ଅନ୍ୟ ମନ୍ତ୍ରୀମାନଙ୍କ ସହାୟତାରେ ଅନେକ ବର୍ଷଧରି ଶାସନ କଲା ।

ଉପସଂହାରରେ ଗୋମୁଖ କହିଲେ– ହେ ଯୁବରାଜ ! ମୁହୂର୍ତ୍ତକ ପାଇଁ ବିଚ୍ଛେଦ ଦୁଃଖ ସହିବା ହିଁ ବୀରତ୍ୱ । ଆପଣଙ୍କର ଯୁବରାଣୀ ମଦନମଞ୍ଚୁକାଙ୍କ ସହିତ ଖୁବ୍ ଶିଘ୍ର ମିଳନ ହେବ । ବୀରମାନଙ୍କୁ ହିଁ ଏମିତି ବିପଦ ପଡ଼େ ଓ ସେଇ ବିପଦକୁ ଅତିକ୍ରମ କରି ସେମାନେ ସ୍ଥାୟୀ ସୁଖ ପାଆନ୍ତି ।

ଗୋମୁଖଙ୍କ କଥା ଶୁଣି ଯୁବରାଜ କିଛି ସାନ୍ତ୍ୱନା ପାଇଲେ କିନ୍ତୁ ରାତିରେ ସେ ଶୋଇ ପାରିଲେ ନାହିଁ ।

## ବେଗବତୀ ଓ ପ୍ରଭାବତୀ କଥା

ପରଦିନଟି ମଧ୍ୟ ଯୁବରାଜ ନରବାହନଦତ୍ତଙ୍କର ମଦନମଞ୍ଚୁକାକୁ କିପରି ଓ କେଉଁଠୁ ପାଇବେ ଚିନ୍ତାକରି କରି ଦିନ କଟାଇଲେ । ମନ୍ତ୍ରୀ ଓ ବନ୍ଧୁମାନଙ୍କର ଆଶ୍ୱାସନା ତାଙ୍କୁ ସାନ୍ତ୍ୱନା ଦେଇ ପାରିଲା ନାହିଁ । ସଞ୍ଜ ହେବାକୁ ଯାଉଥିଲା ଓ ଅନ୍ୟମନସ୍କ ଭାବରେ ପ୍ରାସାଦରୁ ବାହାରି ପ୍ରମୋଦଉଦ୍ୟାନକୁ ଯାଉଥିଲାବେଳେ ମରୁଭୂତି ମଦନମଞ୍ଚୁକାଙ୍କୁ ସାଙ୍ଗରେ ଧରି ଆସି ପହଞ୍ଚିଲେ । ସେ ରାଜକୁମାରଙ୍କୁ ଦେଖି ହସି ହସି କହିଲେ– ମହିମା ! ମୁଁ ଯୁବରାଣୀଙ୍କୁ ପାଇଛି । ଆପଣଙ୍କୁ ପ୍ରାସାଦରେ ନପାଇଁ କାଳେ ଏଇଠିକୁ ଆସିଥିବେ ଭାବି ଆସେ ଦେଖେ ତ ଯୁବରାଣୀ ଦକ୍ଷିଣ କୋଣର ଅଶୋକ ଗଛ ମୂଳେ ଠିଆ ହୋଇଛନ୍ତି ।

ନରବାହନଦତ୍ତ ତାଙ୍କ ପ୍ରିୟାଙ୍କୁ ପାଇ ଆନନ୍ଦରେ ବିହ୍ୱଳ ହୋଇଗଲେ । ସେ ତାଙ୍କୁ କୋଳାଗ୍ରତ କରିବାକୁ ଗଲାବେଳେ ମଦନମଞ୍ଚୁକା କହିଲେ– ମୋତେ ଛୁଅଁନା । କଥା ହେଉଛି ତମକୁ ବିବାହ କରିବାକୁ ମୁଁ ଯକ୍ଷମାନଙ୍କୁ ପୂଜା କରିଥିଲି । ସେଇ ଯକ୍ଷମାନେ ମୋର ତମ ସହିତ ବିବାହ ହେବବୋଲି ବରଦାନ ତ ଦେଇଥିଲେ କିନ୍ତୁ ସର୍ତ୍ତ ରଖିଥିଲେ ଯେ, ବିବାହ ବେଳେ ମୁଁ ସେମାନଙ୍କ ଉଦ୍ଦେଶ୍ୟରେ ବଳି ଚଢ଼ାଇବି । ବିବାହ ବେଳେ ମୁଁ ସେଇଭଳି କରିନାହିଁ । ତେଣୁ ସେମାନେ ରାଗିଯାଇ ମୋତେ ଅପହରଣ କରି ନେଇଥିଲେ । ମୁଁ ସେମାନଙ୍କୁ ମୋତେ ଛାଡ଼ିଦେବାକୁ ବହୁତ କାକୁତି ମିନତି କରିବାରୁ ସେମାନେ ମୋତେ ଛାଡ଼ିଦେଲେ । କିନ୍ତୁ ସେମାନେ ସର୍ତ୍ତ ରଖିଛନ୍ତି ଯେ ମୁଁ ତମକୁ ଆଉଥରେ ବିବାହ କରିବି ଓ ବିବାହବେଳେ ସେମାନଙ୍କ ଉଦ୍ଦେଶ୍ୟରେ ବଳି ଚଢ଼ାଇବି । ତେଣୁ ତମକୁ ପୁଣି ଥରେ ବିବାହ କରିବାକୁ ହେବ ।



ରାଜକୁମାର ସଙ୍ଗେ ସଙ୍ଗେ ପୁରୋହିତଙ୍କୁ ଡକାଇଲେ ଓ ମଦନମଞ୍ଚୁକାଙ୍କ ସହିତ ଦ୍ୱିତୀୟ ବିବାହ କଲେ । ମଦନମଞ୍ଚୁକା ଯକ୍ଷମାନଙ୍କର ପୂଜା କଲେ ଓ ପଶୁ ମାଂସ ବଳି ଚଢ଼ାଇଲେ । ସେଦିନ ରାତିରେ ନରବାହନଦତ୍ତ ମଦନମଞ୍ଚୁକାଙ୍କର ଭବନରେ ରହିଲେ । ଶୋଇବାକୁ ଯିବା ପୂର୍ବରୁ ମଦନମଞ୍ଚୁକା ତାଙ୍କୁ କହିଲେ– ମୁଁ ମୁହଁ ଘୋଡ଼େଇ ଶୋଇବି । ମୋତେ ନିଦରୁ ଉଠାଇବନି ।

ନରବାହନଦତ୍ତ କହିଲେ– ଠିକ୍ ଅଛି ।

ସେ ସିନା କହିଦେଲେ, କିନ୍ତୁ ତାଙ୍କ ମନରେ କୌତୁହଳ ହେଲା ଯେ, ମଦନମଞ୍ଚୁକା ସେହିଭଳି କହିଲେ କାହିଁକି । ତେଣୁ ମଦନମଞ୍ଚୁକା ନିଘୋଡ଼ ନିଦରେ ଶୋଇଥିଲାବେଳେ ସେ ତାଙ୍କ ମୁହଁ ଉପରୁ ଚାଦରଟି ଉଠାଇ ଦେଲେ । ଚାଦରଟି ଉଠାଇ ନରବାହନଦତ୍ତ ଚମକି ପଡ଼ିଲେ । ସେ ପ୍ରକୃତରେ ମଦନମଞ୍ଚୁକା ନଥିଲେ । ତା'ପରେ ନରବାହନଦତ୍ତ ବୁଝିଗଲେ ଯେ ସେଇ ଯୁବତୀଟି ତାଙ୍କ ସହିତ ଛଳନା କରି ତାଙ୍କୁ ବାହା ହୋଇଛି । ସେତିକି ବେଳେ ଯୁବତୀଟିର ନିଦ ମଧ୍ୟ ଭାଙ୍ଗିଗଲା । ନରବାହନଦତ୍ତ ତାକୁ ପଚାରିଲେ– ତମେ କିଏ ? ମୋ ସାଥିରେ ଏମିତି ଛଳନା କଲ କାହିଁକି ?

ଯୁବତୀଟି କହିଲା– ମୋତେ ଅଭୟ ଦିଅନ୍ତୁ ତେବେ ଯାଇ ମୁଁ କହିବି ।

ନରବାହନଦତ୍ତ ତାକୁ ଅଭୟ ଦେଲେ । ଯୁବତୀଟି କହିଲା– ବିଦ୍ୟାଧରମାନଙ୍କର ଆଷାଢ଼ପୁର ନାମରେ ନଗରଟିଏ ଅଛି । ସେଠାରେ ବେଗବାନଙ୍କ ପୁଅ ମାନସବେଗ ରାଜତ୍ୱ କରେ । ମୁଁ ସେଇ ମାନସବେଗର ସାନ ଭଉଣୀ ବେଗବତୀ । ଭାଇର ମୋ ସହିତ ଆଉସରୁ ମୋତେ ପଡ଼େ ନାହିଁ । ଆଉ ସେ ମଧ୍ୟ ମୋତେ ବିଦ୍ୟାଧରମାନଙ୍କର ବିଦ୍ୟା ଦେବାକୁ ଚାହୁଁ ନଥିଲେ । ତେଣୁ ମୁଁ ମୋ ବାପାଙ୍କ ପାଖକୁ ଗଲି । ସେ ଆଶ୍ରମରେ ରହୁଛନ୍ତି । ତାଙ୍କର ସେବାକରି ତାଙ୍କଠୁଁ ବରଦାନ ପାଇ ମୁଁ ବିଦ୍ୟାଧରମାନଙ୍କର ବିଦ୍ୟା ସବୁ ହାସଲ କଲି । ଆଷାଢ଼ପୁର ଫେରି ପହଞ୍ଚି ଦେଖେ ତ ଭଉଣୀମାନଙ୍କ ଘେରରେ ମଦନମଞ୍ଚୁକା ବନ୍ଦୀ ହୋଇଛନ୍ତି । ମୁଁ ମୋ ଭାଇକୁ ଅନ୍ୟ ସ୍ତ୍ରୀ ଉପରେ ଏମିତି ଅତ୍ୟାଚାର ନ କରିବାକୁ ବୁଝାଇଲି । ସେ ମୋ ଉପରେ ଚିଡ଼ିଗଲା । ତା'ପରେ ମୁଁ ଆପଣଙ୍କୁ ମଦନମଞ୍ଚୁକାଙ୍କର ଠିକଣା ବତାଇବାକୁ ଏଠାକୁ ଆସିଲି । ଏଠାକୁ ଆସି ଆପଣଙ୍କୁ ଦେଖି ମୁଁ ମୁଗ୍ଧହୋଇ ସ୍ଥିରକଲି ଯେ ମୋତେ ଆପଣଙ୍କୁ ପାଇବାକୁ ପଡ଼ିବ । ତା'ପରେ ମୁଁ ମୋ ବିଦ୍ୟାବଳରେ ମଦନମଞ୍ଚୁକାଙ୍କ ରୂପ ଧାରଣ କଲି ଓ ଆପଣଙ୍କୁ ବିବାହ କଲି । ଶୋଇବା ବେଳେ ଆମମାନଙ୍କର ପ୍ରଭାବ ରହେ ନାହିଁ ତେଣୁ ମୁଁ ଶୋଇବା ବେଳେ ମୁହଁ ଘୋଡ଼ାଇ ଶୋଇବି ବୋଲି ଆପଣଙ୍କୁ କହିଥିଲି । ଚାଲନ୍ତୁ, ଏଇକ୍ଷଣି ମୁଁ ଆପଣଙ୍କୁ ଦେବୀ ମଦନମଞ୍ଚୁକାଙ୍କ ପାଖକୁ ନେଇଯିବି ।

ନରବାହନଦତ୍ତ ସଙ୍ଗେ ସଙ୍ଗେ ବେଗବତୀ ସାଥିରେ ବାହାରି ପଡ଼ିଲେ । ବେଗବତୀ ନିଜ ଶକ୍ତିବଳରେ ତାଙ୍କୁ ନିମିଷକରେ ଆଷାଢ଼ପୁରରେ ପହଞ୍ଚାଇ ଦେଲା । ମାନସବେଗ ନରବାହନଦତ୍ତ ଆଷାଢ଼ପୁରରେ ପହଞ୍ଚିବା ଜାଣିଗଲା ଓ ସେ ନରବାହନଦତ୍ତଙ୍କୁ ମାରିଦେବା ପାଇଁ ସଙ୍ଗେ ସଙ୍ଗେ ପହଞ୍ଚିଲା ।

ନରବାହନଦତ୍ତ ମାନସବେଗର ଦିବ୍ୟଶକ୍ତି ପାଖରେ ଅବଶ ହୋଇଗଲେ । ସେତିକି ବେଳେ ବେଗବତୀ ତା' ବିଦ୍ୟା ବଳରେ ମାନସବେଗକୁ ସ୍ଥାଣୁ କରିଦେଲା ଓ ନରବାହନଦତ୍ତଙ୍କୁ କହିଲା– ଏଇକ୍ଷଣି ଆପଣଙ୍କ ପାଇଁ ସମୟ ଭଲ ନୁହେଁ, ମୁଁ ଆପଣଙ୍କୁ ଗୋଟାଏ ନିରାପଦ ସ୍ଥାନକୁ ନେଇ ଯାଉଛି । –ଏତକ କହି ସେ ନରବାହନଦତ୍ତଙ୍କୁ ଗନ୍ଧର୍ବପୁରକୁ ନେଇଗଲା ଓ ସେଠାରେ ତାଙ୍କୁ ଗୋଟିଏ କୂଅରେ ଲୁଚାଇ ଦେଲା । ତା'ପରେ ସେ ତାଙ୍କୁ କହିଲା– ଭାଇ ସହିତ ମୁକାବିଲା କରି ମୋ'ର ବିଦ୍ୟା କ୍ଷୀଣ ହୋଇଯାଇଛି । ଆପଣ କିଛି ସମୟ ପାଇଁ ଏଇ କୂଅରେ ଲୁଚି ରୁହନ୍ତୁ । ସେଇ ସମୟ ଭିତରେ ପୁଣି ମୋ ବିଦ୍ୟାକୁ ମୁଁ ଅର୍ଜନ କରିପାରିବି । –ଏତକ କହି ସେ ଚାଲିଗଲା ।

ନରବାହନଦତ୍ତ କିଛି ସମୟ ଧରି ସେଇ କୂଅରେ ରହିଲେ । ସେତିକି ବେଳେ ଜଣେ ଗନ୍ଧର୍ବ ତାଙ୍କୁ ସେଇ କୂଅ ଭିତରେ ଦେଖିଲା । ସେ ତାଙ୍କୁ କହିଲା– ମୁଁ ଗନ୍ଧର୍ବ । ମୋ ନାଁ ବୀଣାଦତ୍ତ । ତମେ ଯେବେ ମଣିଷ, ମଣିଷ ପାଇଁ ଅଗମ୍ୟ ଏ କୂଅ ଭିତରକୁ ପଶିଲ କିପରି ?

ନରବାହନଦତ୍ତ ତାକୁ ତାଙ୍କ ନିଜ କଥା ଜଣାଇଲେ । ସେଇ ଗନ୍ଧର୍ବ ନରବାହନଦତ୍ତଙ୍କ ରୂପ, ଶ୍ରୀଳତା ଓ ତେଜସ୍ୱୀ ଭାବରେ ଖୁବ୍ ପ୍ରଭାବିତ ହେଲା । ସେ କହିଲା– ମୁଁ ତମକୁ ଏଇ କୂଅରୁ ବାହାର କରି ତମକୁ ସାହାଯ୍ୟ କରିବି ।

କୂଅରୁ ସେ ନରବାହନଦତ୍ତଙ୍କୁ ବାହାର କରି ତାଙ୍କ ହାତରେ ସମ୍ରାଟ ହେବାର ଚିହ୍ନ ଦେଖିଲା । ସେ ମନେ ମନେ ନରବାହନଦତ୍ତଙ୍କୁ ପ୍ରଶଂସା କରି ତାଙ୍କୁ ତା' ଘରକୁ ନେଇଗଲା । ତାଙ୍କ ଘରକୁ ଯିବା ବାଟରେ ନରବାହନଦତ୍ତ ଦେଖିଲେ ବାଟରେ ଯାଉଥିବା ସବୁ ଲୋକମାନେ ଗୋଟିଏ ଲେଖା ବୀଣା ଧରିଥିଲେ । କୌତୂହଳରେ ସେ ସେଇ ଗନ୍ଧର୍ବଙ୍କୁ ପଚାରିଲେ– ଏମାନେ ପ୍ରତ୍ୟେକ ଗୋଟିଏ ଲେଖା ବୀଣା କାହିଁକି ଧରିଛନ୍ତି ?

ଗନ୍ଧର୍ବ କହିଲା– ସାଗରଦତ୍ତ ଏଇ ଗନ୍ଧର୍ବପୁରର ରାଜା । ତାଙ୍କ ଝିଅ ଗନ୍ଧର୍ବଦତ୍ତା ଅପ୍ସରାମାନଙ୍କୁ ରୂପରେ ମଳିନ କରିଦେବ । ସେ ସଙ୍ଗୀତରେ ବଡ଼ ନିପୁଣା । ଲୋକେ କହନ୍ତି ଯେ, ତା' ସଙ୍ଗୀତରେ ପ୍ରସନ୍ନ ହୋଇ ଭଗବାନ ବିଷ୍ଣୁ ତାଙ୍କ ବୀଣା ତାକୁ ଦେଇ ଦେଇଛନ୍ତି । ସେଇ ଦିନଠୁଁ ସେ ପ୍ରତିଜ୍ଞା କରିଛି ଯେ ଯେଉଁ ପୁରୁଷ ବୀଣାର ତିନୋଟିଯାକ ତାନରେ ଗାଇପାରିବ ଓ ନିଜେ ବୀଣା ବାଜାଇବାରେ ନିପୁଣ, ଗାନ୍ଧର୍ବ ବିଦ୍ୟାରେ ପ୍ରବୀଣ ଓ ବୈଷ୍ଣବ ଗାନ ଗାଇ ପାରୁଥିବ, ସେ ତାକୁ ବିବାହ କରିବ । ବାସ୍, ସେଇ ଦିନଠୁଁ ଆମର ଏଇ ଗନ୍ଧର୍ବପୁର ସଙ୍ଗୀତମୟ ହୋଇଯାଇଛି । ଯାହାକୁ ଦେଖିବ– ସେ ବୀଣା ବଜାଇବା ଅଭ୍ୟାସ କରୁଛି ବା ରାଗ-ଆଳାପ କରୁଛି ।

ଗନ୍ଧର୍ବର କଥା ଶୁଣି ନରବାହନଦତ୍ତ କହିଲେ– ମୁଁ ବି ସଙ୍ଗୀତ ଶାସ୍ତ୍ର ଜାଣେ । ମୁଁ ସେଇ ରାଜକୁମାରୀଙ୍କୁ ଦେଖିବାକୁ ଚାହୁଁଛି ।

ସେଇ ଗନ୍ଧର୍ବ ବୀଣାଦତ୍ତ ଏତେବେଳକୁ ନରବାହନଦତ୍ତଙ୍କର ବନ୍ଧୁ ହୋଇସାରିଥିଲା । ସେ ନରବାହନଦତ୍ତଙ୍କୁ ତା'ଘରେ କିଛି ସମୟ ବିଶ୍ରାମ କରାଇ ରାଜା ସାଗରଦତ୍ତଙ୍କ ପାଖକୁ ନେଇଗଲା ଓ ରାଜାଙ୍କୁ କହିଲା– ଏ ବତ୍ସରାଜ ଉଦୟନଙ୍କ ପୁଅ ନରବାହନଦତ୍ତ । ସେ ସଙ୍ଗୀତ ଶାସ୍ତ୍ରରେ ନିପୁଣ ଓ ରାଜକୁମାରୀଙ୍କ ସହିତ ସଙ୍ଗୀତ କରିବାକୁ ଚାହାନ୍ତି ।

ସାଗରଦତ୍ତ କହିଲେ– ଏମିତି କଥା ! ତା'ହେଲେ ଗନ୍ଧର୍ବଦତ୍ତାକୁ ଡାକିଦିଅ । ମୁଁ ବି ବତ୍ସ ରାଜକୁମାରଙ୍କ ସଙ୍ଗୀତ କୌଶଳ ପରଖି ନେବି ।

ରାଜକୁମାରୀ ଆସିଲା । ନରବାହନଦତ୍ତ କହିଲେ– ମୁଁ ପ୍ରଥମେ ରାଜକୁମାରୀଙ୍କଠୁଁ ଗୀତ ଶୁଣିବି ।

ରାଜକୁମାରୀ ବୀଣା ଉଠାଇ ବଜାଇବା ସଙ୍ଗେ ସଙ୍ଗେ ଗୀତ ଗାଇଲେ । ତାଙ୍କର ସ୍ୱର, ଶ୍ରୁତି ଓ ନାଦ ଉପରେ ଅସାଧାରଣ ଜ୍ଞାନ ଦେଖି ନରବାହନଦତ୍ତ ଚକିତ ହୋଇଗଲେ । ଗାଇବା ଓ ବଜାଇବାରେ କେଉଁଠି କିଛି ଦୋଷତ୍ରୁଟି ନଥିଲା । ଗୀତ ଶେଷ ହେବାପରେ ସେ ରାଜକୁମାରୀଙ୍କୁ କହିଲେ– ରାଜକୁମାରୀ ! ସବୁ ଠିକ୍ ଅଛି; କିନ୍ତୁ ତମ ବୀଣା ସୁସ୍ୱର ନୁହେଁ । ମନେ ହେଉଛି ସେଇ ବୀଣାର ତା'ରମାନଙ୍କର ଛୋଟ କେଶଟିଏ ପୁରେଇ ହୋଇଯାଇଛି ।

ରାଜକୁମାରଙ୍କ କଥା ଶୁଣି ସମସ୍ତେ ବୀଣାର ତାରରେ କେଶ ଖୋଜିବାକୁ ଲାଗିଲେ । ବହୁ ଖୋଜାଖୋଜି ପରେ ସତକୁ ସତ ସେଥିରୁ ଛୋଟ କେଶଟିଏ ମିଳିଲା । ସମସ୍ତେ ଚକିତ ହୋଇଗଲେ ।



ତା'ପରେ ରାଜା ସାଗରଦତ୍ତ ନିଜ ଝିଅ ହାତରୁ ବୀଣା ନେଇ ନରବାହନଦତ୍ତଙ୍କ ହାତରେ ବଢ଼େଇ କହିଲେ– ରାଜକୁମାର ! ଏଥର ତମେ କିଛି ଶୁଣାଅ ।

ନରବାହନଦତ୍ତ ବୀଣା ବଜାଇ ବୈଷ୍ଣବଗୀତ ଗାଇଲେ । ସମସ୍ତ ଗନ୍ଧର୍ବ ଶୁଣି ସ୍ତବ୍ଧ ହୋଇ ରହିଗଲେ । ରାଜକୁମାରୀ ଗନ୍ଧର୍ବଦତ୍ତା ନରବାହନଦତ୍ତଙ୍କୁ ପ୍ରେମପୂର୍ଣ୍ଣ ଚାହାଣୀରେ ଚାହିଁ ରହିଲେ ।

ନରବାହନଦତ୍ତଙ୍କ ଗାଇବା ଓ ବଜାଇବା ଶେଷ ହେବା ପରେ ରାଜକୁମାରୀ ସ୍ୱୀକାର କଲେ ଯେ, ସେ ହିଁ ତାଙ୍କର ଯୋଗ୍ୟ ସ୍ୱାମୀ । ସଙ୍ଗେ ସଙ୍ଗେ ସାଗରଦତ୍ତ ତାଙ୍କ ଝିଅର ହାତକୁ ନରବାହନଦତ୍ତଙ୍କ ହାତରେ ଧରାଇ ଦେଲେ । ବଡ଼ ଧୁମ୍‌ଧାମ୍‌ରେ ସେମାନଙ୍କର ବିବାହ ଉତ୍ସବ ସମ୍ପନ୍ନ ହେଲା ।

ଗନ୍ଧର୍ବଦତ୍ତାଙ୍କ ସହ ନରବାହନଦତ୍ତ ବିହାର କରୁ କରୁ କିଛି ଦିନ କଟିଗଲା । ଦିନେ ରାତିରେ ଦୁଇଜଣଯାକ ଏକାଠି ଶୋଇଥିଲେ । ମଦନମାଞ୍ଚୁକାଙ୍କ ସ୍ମୃତି ଯୋଗୁ ନରବାହନଦତ୍ତଙ୍କୁ ନିଦ ହେଉ ନଥିଲା । ସେତିକିବେଳେ ତାଙ୍କ ଦୃଷ୍ଟି ଝରକା ଆଡ଼କୁ ପଡ଼ିଲା । ସେ ଦେଖିଲେ ଯେ ଝରକାରେ କେହି ସ୍ତ୍ରୀଲୋକ ହାତ ହଲାଇ ତାଙ୍କୁ ବାହାରକୁ ଆସିବାକୁ ସଙ୍କେତ ଦେଉଛି । ସେ ଚୁପ୍‌ଚାପ୍ ଉଠି ବାହାର ଉଦ୍ୟାନକୁ ଚାଲି ଆସିଲେ । ସେଇ ସ୍ତ୍ରୀଲୋକଟି ତାଙ୍କୁ କହିଲା– ମୁଁ ପ୍ରଭାବତୀ ନାମକ ବିଦ୍ୟାଧରୀ । ମଦନମାଞ୍ଚୁକା ମୋର ସଖି ହୋଇଯାଇଛି । ବିଦ୍ୟାଧର ମାନସବେଗ ତାଙ୍କୁ ବଡ଼ କଷ୍ଟ ଓ ଯନ୍ତ୍ରଣା ଦେଉଛି । କୌଣସି ସ୍ତ୍ରୀ ଉପରେ ବଳାତ୍କାର କଲେ ସେ ନିଜେ ଧ୍ୱଂସ ହୋଇଯିବ ବୋଲି ଅଭିଶାପ ପାଇଛି, ତେଣୁ ସେ ମଦନମାଞ୍ଚୁକାକୁ ଛୁଇଁ ପାରୁନାହିଁ । ଆପଣ କହିବେ ତ ମୁଁ ଆପଣଙ୍କୁ ମଦନମାଞ୍ଚୁକା ପାଖକୁ ନେଇଯିବି ।

ନରବାହନଦତ୍ତ ସଙ୍ଗେ ସଙ୍ଗେ ବିଦ୍ୟାଧରୀ ସହିତ ବାହାରିଗଲେ । ସେ ତାଙ୍କୁ ଆକାଶମାର୍ଗରେ ଉଡ଼ାଇ ନେଇଗଲା । ତଳକୁ ଓହ୍ଲାଇ ଓହ୍ଲାଇ ତଳେ ଗୋଟିଏ ସ୍ଥାନରେ ନିଆଁ ଜଳୁଥିବା ବିଦ୍ୟାଧରୀ ଦେଖିଲା । ସେ ସଙ୍ଗେ ସଙ୍ଗେ ନରବାହନଦତ୍ତଙ୍କୁ ଅଟକାଇ ତାଙ୍କୁ ସାଥିରେ ଧରି ନିଆଁ ଚାରିପାଖରେ ସାତଥର ବୁଲିଗଲା । ନରବାହନଦତ୍ତ କ'ଣ ହେଉଛି ବୁଝିପାରିଲେ ନାହିଁ ।

ମାନସବେଗର ରାଜପ୍ରାସାଦରେ ନରବାହନଦତ୍ତଙ୍କୁ ପହଞ୍ଚାଇ ଦେଇ ପ୍ରଭାବତୀ କହିଲା– ବର୍ତ୍ତମାନ ଆପଣ ମୋର ମଧ୍ୟ ସ୍ୱାମୀ । ଆପଣଙ୍କୁ ରକ୍ଷା କରିବା ମୋର ଧର୍ମ । ମୁଁ ଏଇଠି ଆପଣଙ୍କୁ ଲୁଚିଥିବି ଓ ସାହାଯ୍ୟ ମଧ୍ୟ କରୁଥିବି ।

ନରବାହନଦତ୍ତ ବହୁତ ଦିନ ପରେ ମଦନମାଞ୍ଚୁକାକୁ ଦେଖିଲେ ଓ ଦେଖିଲା ମାତ୍ରେ ତାଙ୍କ ଆଖି ଲୁହରେ ଛଳଛଳ ହୋଇଗଲା । ମଦନମାଞ୍ଚୁକା ମଧ୍ୟ ତାଙ୍କ ବିରହରେ ଦୁର୍ବଳ ହୋଇଯାଇଥିଲେ । ସେ ବେଣୀଟିଏ ବାନ୍ଧି ଥିଲେ କିନ୍ତୁ ତାଙ୍କ ଦେହରେ କିଛି ଅଳଙ୍କାର ନଥିଲା । ନରବାହନଦତ୍ତ ତାଙ୍କ ସହିତ କିଛି ସମୟ କଟାଇବା ଭିତରେ ବିଦ୍ୟାଧର ରାଜା ମାନସବେଗ ସେଇ ଖବର ପାଇଗଲା । ସେ ସଙ୍ଗେ ସଙ୍ଗେ ନରବାହନଦତ୍ତଙ୍କୁ ମାରିବା ପାଇଁ ଖଣ୍ଡା ଉଠାଇ ଦଉଡ଼ି ଆସିଲା । ନରବାହନଦତ୍ତ ମଧ୍ୟ ତାକୁ ଖଣ୍ଡାଧରି ଦଉଡ଼ି ଆସୁଥିବା ଦେଖି ଖୋଳ ମଧ୍ୟରୁ ନିଜ ଖଣ୍ଡା ବାହାର କଲେ । ଦୁଇଜଣଙ୍କ ଭିତରେ ଘମାଘୋଟ ଲଢ଼େଇ ଲାଗିଗଲା । ବେଗବତୀ ଓ ପ୍ରଭାବତୀ ସେମାନଙ୍କ ବିଦ୍ୟାବଳରେ ମାନସବେଗର ବିଦ୍ୟା ହରଣ କରିନେଲେ ଓ ସେ ଶକ୍ତିହୀନ ହୋଇଗଲା । ନରବାହନଦତ୍ତଙ୍କ ଖଣ୍ଡାର ଆଘାତରେ ତା'ର ଖଣ୍ଡା ଭାଙ୍ଗିଗଲା ଓ ଶେଷରେ ଖଣ୍ଡା ତା' ହାତରୁ ଖସିପଡ଼ିଲା । ନରବାହନଦତ୍ତ ତା' କେଶକୁ ଧରି ତାକୁ ହାଣି ଦେବାକୁ ଖଣ୍ଡା ଉଠାଇଲା ବେଳେ ମାନସବେଗର ମା' ପୃଥ୍ୱୀଦେବୀ ସେଠାରେ ପହଞ୍ଚିଗଲେ । ମାନସବେଗକୁ ହାଣିବା ପାଇଁ ଖଣ୍ଡା ଉଠାଇଲା ବେଳେ ନରବାହନଦତ୍ତଙ୍କ ଦୃଷ୍ଟି ପୃଥ୍ୱୀଦେବୀଙ୍କ ଉପରେ ପଡ଼ିଗଲା ଓ ସେ ଟେକିଥିବା ଖଣ୍ଡାକୁ ତଳକୁ କରିଦେଲେ । ବେଗବତୀ

ଚେହେରା ସହିତ ପୃଥ୍ୱୀଦେବୀଙ୍କ ଚେହେରାର ସାମଞ୍ଜସ୍ୟ ଥିବାରୁ ନରବାହନଦତ୍ତ ତାଙ୍କୁ ଚିହ୍ନି ପାରିଥିଲେ ।

ପୃଥ୍ୱୀଦେବୀ ନରବାହନଦତ୍ତଙ୍କୁ ମାନସବେଗକୁ ଦେଖାଇ କହିଲେ– ବାପା ! ତାକୁ ଜାଣିଚିଥ । ସେଇଟା ମୋ କୁଳର କଳଙ୍କ ।

ନରବାହନଦତ୍ତ ମାନସବେଗକୁ ଛାଡ଼ିଦେଇ ପୃଥ୍ୱୀଦେବୀଙ୍କୁ ନଇଁପଡ଼ି ନମସ୍କାର କଲେ ।

ମାନସବେଗ ତଳକୁ ମୁହଁକରି ଠିଆ ହୋଇଥିଲା । ଲଜ୍ଜା, ଅପମାନ ଓ ଅନୁତାପରେ ସେ ଭାଙ୍ଗି ପଡ଼ିଥିଲା । ସେ ନରବାହନଦତ୍ତଙ୍କ ପାଖକୁ ଆସି ତାଙ୍କୁ କୋଡ଼ାଗ୍ରତ କରି କହିଲା– ରାଜକୁମାର ! ତମେ ମୋତେ ହରାଇଛ । ମାରି ନଦେଇ ଛାଡ଼ିଦେଇ କାହିଁକି ? ଆଜିଠୁଁ ଏ ରାଜ୍ୟ ତମର । ମୁଁ ପାପମୁକ୍ତ ହେବାପାଇଁ ତପସ୍ୟା କରିବାକୁ ବଣକୁ ଚାଲିଯିବି ।

ମାନସବେଗର କଥାରେ ସମସ୍ତେ ସାଧୁବାଦ ଦେଲେ । ଅନୁତାପ ହିଁ ତମର ପାପ ମୋଚନ ପାଇଁ ଯଥେଷ୍ଟ । ମୁଁ ମୋ ଶ୍ୱଶୁର ଓ ଶାଳଙ୍କ ରାଜ୍ୟ ଚାହେଁନାହିଁ । ତମେ ସୁଖରେ ପ୍ରଜା ପାଳନକର ।

ନରବାହନଦତ୍ତଙ୍କୁ ତାଙ୍କର ଉଦାରତାରେ ସମସ୍ତେ ସାଧୁବାଦ କଲେ ।

ମାନସବେଗର ଅନୁରୋଧରେ ନରବାହନଦତ୍ତ ତା'ର ଅତିଥି ହୋଇ ମଦନମଞ୍ଚୁକା, ବେଗବତୀ ଓ ପ୍ରଭାବତୀଙ୍କ ମେଳରେ ଆଷାଢ଼ପୁରରେ କିଛିଦିନ ଆନନ୍ଦରେ କଟାଇ କୌଶାମ୍ବୀକୁ ଫେରିଗଲେ ।

# କୈଳାସ ପର୍ବତ ଓ ବିଦ୍ୟାଧର କଥା

କୌଶାମ୍ବୀକୁ ଫେରିଆସି ରାଜକୁମାର ନରବାହନଦତ୍ତ ତାଙ୍କ ବନ୍ଧୁ ଓ ପତ୍ନୀମାନଙ୍କ ଗହଣରେ ଆନନ୍ଦରେ ଦିନ ବିତାଇବାକୁ ଲାଗିଲେ । ଦିନେ ସେ ବନ୍ଧୁ ଓ ରାଣୀମାନଙ୍କ ଗହଣରେ ବସିଥିବା ବେଳେ ତାଙ୍କୁ କୁଆଡ଼ୁ ଉଦ୍ଧାର କରିଥିବା ବିଦ୍ୟାଧର ବୀଣାଦତ୍ତ ଆକାଶମାର୍ଗରୁ ଓହ୍ଲାଇ ସେମାନଙ୍କ ଆଗରେ ଉଭାହେଲେ ଏବଂ ରାଜକୁମାର ଓ ଅନ୍ୟମାନଙ୍କୁ ଅଭିବାଦନ ଜଣାଇଲେ । ରାଜକୁମାର ତାଙ୍କୁ ସମ୍ମାନ ପୂର୍ବକ ଆସନରେ ବସାଇ ଉତ୍ତମ ରୂପେ ତାଙ୍କର ସତ୍କାର କଲେ । ବୀଣାଦତ୍ତ କହିଲେ– ପ୍ରଭୁ ପରମେଶ୍ୱରଙ୍କୁ ତମେ ତପସ୍ୟା କଲେ ସିଦ୍ଧିଲାଭ କରିବ । ସେଥିପାଇଁ ତମକୁ ପରମେଶ୍ୱରଙ୍କର ଅନ୍ୟତମ ପ୍ରିୟା ମନ୍ଦାକିନୀଙ୍କ କୂଳରେ ତପସ୍ୟା କରିବା ଉଚିତ ହେବ ।

ରାଜକୁମାର ବୀଣାଦତ୍ତଙ୍କ ପରାମର୍ଶ ଗ୍ରହଣ କରି ମନ୍ଦାକିନୀ କୂଳକୁ ଯାଇ ତପସ୍ୟା କଲେ ଓ ଶଙ୍କର ତାଙ୍କ ସାଧନାରେ ସନ୍ତୁଷ୍ଟ ହେଲେ । ସେ ଆବିର୍ଭୂତ ହୋଇ କହିଲେ– ବତ୍ସ ! ତମେ ସବୁ ବିଦ୍ୟାଧରମାନଙ୍କର ସମ୍ରାଟ୍ ହେବ । ସବୁ ବିଦ୍ୟା ତମେ ଲାଭ କର । ଇଚ୍ଛାମତେ ତମେ ସବୁ ଶତ୍ରୁଙ୍କୁ ଦମନ କରିବ । ତମ ସମ୍ମୁଖରେ ତମର ଶତ୍ରୁମାନେ ସବୁ ବିଦ୍ୟା ଭୁଲିଯିବେ । ସେମାନେ ଶକ୍ତିହୀନ ହେବେ । ତମେ ଗୌରୀ ବିଦ୍ୟା ମଧ୍ୟ ଲାଭ କରିବ । –ଏତକ କହି ପରମେଶ୍ୱର ଅନ୍ତର୍ଦ୍ଧାନ ହୋଇଗଲେ । ରାଜକୁମାରଙ୍କୁ ସମସ୍ତ ବିଦ୍ୟା ଲାଭହେଲା । ସେ ପଦ୍ମ ବିମାନରେ ବସି ସବୁ ବିଦ୍ୟାମାନଙ୍କ ପରିଚାଳନାରେ ବିକ୍ରମପୁରରେ ପହଞ୍ଚିଲେ । ବିକ୍ରମପୁରର ରାଜା ତାଙ୍କୁ ସ୍ୱାଗତ କରି ତାଙ୍କ ଝିଅ ସୁଲୋଚନାକୁ ତାଙ୍କ ସହିତ ବିବାହ ଦେଲେ । ପରେ ତାଙ୍କ ବିଦ୍ୟାଧର ବନ୍ଧୁମାନଙ୍କ ପରାମର୍ଶରେ ରାଜକୁମାର ଅମୂଲ୍ୟ ଚନ୍ଦନ ବୃକ୍ଷ ଲାଭ କଲେ । ସେଇ ବୃକ୍ଷ ତାଙ୍କୁ ଉପଦେଶ ଦେଲା ଯେ, ସେ ଗୋବିନ୍ଦକୂଟ ଗିରିକୁ ଯାଇ ମୂଲ୍ୟବାନ ମଣିମୁକ୍ତା ସଂଗ୍ରହ କରନ୍ତୁ । ରାଜକୁମାର ଗୋବିନ୍ଦକୂଟ ଗିରିକୁ ଯାଇ ମଣିମୁକ୍ତା ସଂଗ୍ରହ କଲେ । ସେଠାରେ ତାଙ୍କୁ ବିଦ୍ୟାଧର ଓ ଗନ୍ଧର୍ବମାନେ ସେବାକଲେ ।



ଦିନେ ସେ ଦରବାରରେ ବସିଥିବା ବେଳେ ଜଣେ ଦିବ୍ୟପୁରୁଷ ଆକାଶମାର୍ଗରୁ ଓହ୍ଲାଇ ତାଙ୍କ ସମ୍ମୁଖରେ ଆବିର୍ଭୂତ ହେଲେ । ସେ ରାଜକୁମାରଙ୍କୁ ସମ୍ମାନ ଜଣାଇଲେ । ରାଜକୁମାର ମଧ୍ୟ ତାଙ୍କୁ ସମ୍ମାନ ଜଣାଇଲେ । ଦିବ୍ୟପୁରୁଷ ଜଣକ କହିଲେ– ଯୁବରାଜ ! ମୁଁ ବିଦ୍ୟାଧର ଅମର୍ଷପ୍ରଭୁ । ଦକ୍ଷିଣରେ ଅମଳୟ ପର୍ବତ ଅଛି । ସେଠାରେ ଋଷି ବାମଦେବଙ୍କ ଆଶ୍ରମ ଅଛି । ସେ ଆପଣଙ୍କୁ ବିଶେଷ କାମରେ ତାଙ୍କ ପାଖକୁ ଡକାଇଛନ୍ତି । ମୁଁ ଏହା ପୂର୍ବରୁ ମଧ୍ୟ ଆପଣଙ୍କୁ ମାଲିକ ରୂପେ ସେବା କରିଛି । ବିଳମ୍ବ ନକରି ଋଷିଙ୍କ ପାଖକୁ ଚାଲନ୍ତୁ । ସେଥିରେ ଆପଣଙ୍କର ଶୁଭହେବ ।

ରାଜକୁମାର ନରବାହନଦତ୍ତ ଅମର୍ଷପ୍ରଭୁଙ୍କ ସହିତ ଯିବାକୁ ସମ୍ମତ ହେଲେ । ସେ ତାଙ୍କର ରାଣୀ, ସେନାବାହିନୀକୁ ଗୋବିନ୍ଦକୂଟରେ ଛାଡ଼ିଦେଇ ବିଦ୍ୟାଧରଙ୍କ ସହିତ ଆକାଶମାର୍ଗରେ ଋଷି ବାମଦେବଙ୍କ ଆଶ୍ରମକୁ ଚାଲିଗଲେ । ସେଠାରେ ସେ ଜଟାଜୁଟଧାରୀ ଋଷିଙ୍କୁ ସୁନାର ମେରୁ ପର୍ବତ ଭଳି ଉଜ୍ଜ୍ୱଳମୟ ଦେଖିଲେ । ବାର୍ଦ୍ଧକ୍ୟ ହେତୁ ଋଷି କ୍ଷୀଣ ଓ ହଡ଼ଦିଆ ଦେଖାଯାଉଥିଲେ । ତାଙ୍କ ଆଖିଗୁଡ଼ିକ କୋଟରରେ ପଶିଥିଲା କିନ୍ତୁ ଚକ୍ଷୁର ଡୋଳାଗୁଡ଼ିକ ହୀରାଭଳି ଚକ୍‌ଚକ୍ ଦିଶୁଥିଲା । ବିଦ୍ୟାଧରମାନଙ୍କର ଭାବୀ ସମ୍ରାଟ୍‌ଙ୍କୁ ଉପହାର ଦେବାପାଇଁ ତାଙ୍କ ଆଶ୍ରମରେ ଅଦ୍ଭୁତ ଶକ୍ତି ସମ୍ପନ୍ନ ମଣିମୁକ୍ତା ସଙ୍ଗୃହୀତ କରି ରଖା ହୋଇଥିଲା । ରାଜକୁମାର ଋଷିଙ୍କୁ ସାଷ୍ଟାଙ୍ଗ ପ୍ରଣାମ କଲେ । ବାମଦେବ ତାଙ୍କ ରାଜ ଅତିଥିଙ୍କୁ ସମ୍ମାନ ଜଣାଇ କହିଲେ– ତମେ କାମଦେବ, ବିଦ୍ୟାଧରମାନଙ୍କର ଭାବୀ ସମ୍ରାଟ ରୂପେ ଜନ୍ମ ନେଇଛ । କାମଦେବ ରୂପରେ ତମେ ଶିବଙ୍କ ଆଖିରୁ ବାହାରିଥିବା ନିଆଁରେ ପୋଡ଼ି ପାଉଁଶ ହୋଇଯାଇଥିଲ । ତମ ସ୍ତ୍ରୀ ରତିଙ୍କ ନିଷ୍ଠା, ତ୍ୟାଗ ଓ ତପସ୍ୟା ଫଳରେ ଶିବ ପୁଣି ତମକୁ ସୃଷ୍ଟି କରିଛନ୍ତି । ମୋର ଏଇ ଆଶ୍ରମ ଭିତରେ ଗଭୀର ଗୁମ୍ଫାଟିଏ ଅଛି । ଉତ୍ତରଯୋଷ୍ଠର ବିଦ୍ୟାଧର ରାଜା ମନ୍ଦରଦେବଙ୍କ ସହିତ ଯୁଦ୍ଧକରିବାକୁ ଯିବା ପୂର୍ବରୁ ତମେ ସେଇ ଗୁମ୍ଫାରେ ଥିବା ମଣିମୁକ୍ତା ସଂଗ୍ରହ କରିବା ଉଚିତ । ସେଇ ମଣିମୁକ୍ତା ପାଇଲେ ତମେ ମନ୍ଦରଦେବଙ୍କୁ ଜିତିବାକୁ ସକ୍ଷମ ହେବ । ଈଶ୍ୱରଙ୍କ ଆଦେଶରେ ମୁଁ ତୁମକୁ ସେଇଥିପାଇଁ ଡକାଇଛି ।

ଋଷି ବତାଇଥିବା ଉପାୟ ମୁତାବକ ରାଜକୁମାର ଆନନ୍ଦରେ ଗୁମ୍ଫା ମଧ୍ୟରେ ପ୍ରବେଶ କଲେ । ସେ ଗୁମ୍ଫା ଭିତରେ ସାବଧାନରେ ଯାଉଥିଲା ବେଳେ ହାତୀଟିଏ ତାଙ୍କୁ ଆକ୍ରମଣ କଲା ସେ ହାତୀର ମଥାରେ ମୁଥଟିଏ ମାରିଲେ ଓ ତା' ଦୁଇ ଦାନ୍ତରେ ପାଦ ଦେଇ ଡେଇଁପଡ଼ି ତା' ପିଠି ଉପରେ ବସିଗଲେ ଓ ଠିକ୍ ସେତିକିବେଳେ ଶୁଣିଲେ– ଚମତ୍କାର ! ଏଇ ହାତୀ ରତ୍ନଟି ସମ୍ରାଟଙ୍କର ହେଲା । କିଛି ଦୂର ଯିବା ପରେ, ସେ ଭୟଙ୍କର ସାପଟିଏ ଦେଖିଲେ । ସାପଟି ତାଙ୍କୁ ଚୋଟ ମାରିବା ପୂର୍ବରୁ ସେ ତାକୁ ଉଠାଇନେଲେ ଓ ସାପଟି ଗୋଟିଏ ସୁନ୍ଦର ଖଣ୍ଡା ହୋଇଗଲା । ସଙ୍ଗେ ସଙ୍ଗେ ସେଇ ଅଦୃଶ୍ୟ ସ୍ୱର କହିଲା– ଖଣ୍ଡାଟି ସମ୍ରାଟଙ୍କର ହୋଇଗଲା । ତା'ପରେ ସେ ଚନ୍ଦ୍ରିକା, କାମିନୀ ଓ ବିଧ୍ୱଂସିନୀ ଆଦି ମଣି ପାଇଲେ । ଏହିଭଳି ଚନ୍ଦନ ବୃକ୍ଷ ଓ ଅମୃତ-ହ୍ରଦ ସମେତ ସାତୋଟିଯାକ ମଣି ଭାବୀ ସମ୍ରାଟ୍ ନରବାହନଦତ୍ତଙ୍କର ସମ୍ପତ୍ତି ହୋଇଗଲା । ସେ ଗୁମ୍ଫାରୁ ବାହାରି ଆସି ଋଷିଙ୍କୁ ଦେଖା କଲେ । ସେ ନିଜେ ଦେବଅଂଶୀ ହୋଇଥିବାରୁ ମଣିମାନେ ତାଙ୍କୁ ଅଦୃଶ୍ୟ ଭାବରେ ସେବା କଲେ । ଋଷି ବାମଦେବ କହିଲେ– ବତ୍ସ ! ସମ୍ରାଟଙ୍କ ସବୁ ଯୋଗ୍ୟ ମଣି ବା ରତ୍ନ ତମର । ବର୍ତ୍ତମାନ ତମେ ଯାଇ କୈଳାସର ଉତ୍ତର ଦିଗରେ ମନ୍ଦରଦେବଙ୍କୁ ଭେଟ । ତମେ ବିଦ୍ୟାଧର ଜଗତର ଉଭୟ ଉତ୍ତର ଓ ଦକ୍ଷିଣ ଗୋଲାର୍ଦ୍ଧରେ ରାଜତ୍ୱ କରିବ ।

ରାଜକୁମାର ଋଷିଙ୍କୁ ସମ୍ମାନ ଜଣାଇ ଅମର୍ଷପ୍ରଭୁଙ୍କ ସହ ଆକାଶରେ ଉଡ଼ି ଉଡ଼ି ତାଙ୍କ ରାଣୀମାନେ, ମନ୍ତ୍ରୀମାନେ ଓ ସେନାବାହିନୀ ତାଙ୍କୁ ଉତ୍କଣ୍ଠିତ ହୋଇ ଅପେକ୍ଷା କରିଥିବା

ଗୋବିନ୍ଦକୂଟରେ ପହଞ୍ଚିଲେ । ଗୁମ୍ଫାରେ ଘଟିଥିବା ସବୁ ଘଟଣା ରାଜକୁମାର ସେମାନଙ୍କୁ ଜଣାଇଲେ । ଆନନ୍ଦରେ ସମସ୍ତେ ବିହ୍ୱଳିତ ହୋଇ ନୃତ୍ୟ କଲେ ।

ତା'ପରେ ଜ୍ୟୋତିଷ ପରାମର୍ଶ କରି ନିଜର ଶୁଭ ସମୟ ଓ ଶତ୍ରୁମାନଙ୍କର ଅଶୁଭ ସମୟ ପହଞ୍ଚିବେ ରାଜକୁମାର ବ୍ରହ୍ମା ଦେଇଥିବା ପଦ୍ମବିମାନରେ ବସି ସେମାନଙ୍କୁ ନେଇ ମନ୍ଦରଦେବଙ୍କ ବିରୁଦ୍ଧରେ ଯୁଦ୍ଧ କରିବାକୁ ବାହାରିଲେ । ସମସ୍ତେ ଆକାଶମାର୍ଗରେ ଉଡ଼ି ଚାଲିଲେ ଓ ରାଜକୁମାରଙ୍କ ଅନ୍ତଃପୁର ବାସିନୀମାନେ ସେମାନଙ୍କୁ ଅନୁସରଣ କଲେ ।

ପ୍ରଧାନ ସେନାପତି ହରିଶଖଙ୍କ ନେତୃତ୍ୱରେ ଅଭିଯାନ ଆରମ୍ଭ ହେଲା ଓ ରାଜକୁମାରଙ୍କ ଆକାଶଯାନର ଚାରିପାଖରେ ବିଦ୍ୟାଧର ଓ ଗନ୍ଧର୍ବମାନେ ଘେରି ଅଭିଯାନରେ ବାହାରିଲେ । ଚଣ୍ଡସିଂହ, ପିଙ୍ଗଳଗାନ୍ଧାର, ବାୟୁପଥ, ବିଦ୍ୟୁତ ପୁଞ୍ଜ, ଅମିତଗତି, ମହାଦମାସ୍ତ, ମନ୍ଦର, ଅମର୍ଷପ୍ରଭୁ ଓ ଅନ୍ୟ ଯୋଦ୍ଧା ବନ୍ଧୁମାନେ ସେମାନଙ୍କ ସେନାମାନଙ୍କୁ ନେଇ ରାଜକୁମାରଙ୍କ ସାଥୀରେ ବାହାରିଲେ । ମାନସ ହ୍ରଦ ଓ ଦେବକନ୍ୟାମାନଙ୍କର ପ୍ରେମୋଦଭଦ୍ୟାନ ଗଙ୍ଗଶିଳା ପାରହୋଇ ରାଜକୁମାର କୈଳାସ ପର୍ବତର ପାଦଦେଶରେ ପହଞ୍ଚିଲେ ।

ସ୍ୱର୍ଗରୁ ପ୍ରବାହିତ ମନ୍ଦାକିନୀ ନଦୀର କୂଳରେ ରାଜକୁମାର ବସିରହିଲେ ଓ ତାଙ୍କର ଜଣେ ବନ୍ଧୁ ମନ୍ଦର ତାଙ୍କ ପାଖକୁ ଆସି କହିଲା– ରାଜକୁମାର ! ଆମେ ଏଇଠି ଅପେକ୍ଷା କରିବା । ତ୍ରିଶିରାର ଗୁମ୍ଫା ଯୋଜନ । ଉତ୍ତରାଞ୍ଚଳରେ ଆମକୁ ସେଇ ଗୁମ୍ଫା ଭିତର ଦେଇ ଯିବାକୁ ହେବ । କୈଳାସ ଉପର ଦେଇ ଉଡ଼ିଯିବା ଉଚିତ୍ ନୁହେଁ । ଆମେ ଯଦି କୈଳାସ ଉପରେ ଦେଇ ଉଡ଼ିଯିବା, ଆମର ସେଇ ମୁହୂର୍ତ୍ତରେ ସବୁ ବିଦ୍ୟା ନଷ୍ଟ ହୋଇଯିବ । ଶକ୍ତିଶାଳୀ ଯୋଦ୍ଧା ରାଜା ଦେବମାୟା ଗୁମ୍ଫା ଦ୍ୱାରକୁ ଜଗିଛି । ତାକୁ ହରାଇ ବଶ ନକଲେ ଆଉ ଆଗକୁ ଯିବା ସମ୍ଭବ ନୁହେଁ ।

ରାଜକୁମାର ମନ୍ଦର କଥାରେ ସମ୍ମତ ହୋଇ ସେଦିନ ସେଠାରେ ରହିଲେ । ସେ ଦେବମାୟା ପାଖକୁ ତାଙ୍କର ବଶ୍ୟତା ସ୍ୱୀକାର କରିବାକୁ ଦୂତ ପଠାଇଲେ । ଦେବମାୟା ତାଙ୍କ କଥା ଶୁଣିଲା ନାହିଁ । ତା' ପରଦିନ ସେ ଦେବମାୟାକୁ ଆକ୍ରମଣ କଲେ । ଦେବମାୟା ତା'ର ବନ୍ଧୁ ବର୍ଷ, ବଜ୍ରମୁଷ୍ଟି ଓ ଅନ୍ୟମାନଙ୍କ ସହ ଗୋଟିଏ ବିରାଟ ସେନାବାହିନୀ ନେଇ ରାଜକୁମାରଙ୍କର ପ୍ରତିରୋଧ କଲା । ଭୟଙ୍କର ଯୁଦ୍ଧ ଲାଗିଲା । ଶେଷରେ ଦେବମାୟାର ସେନାପତି ଚଣ୍ଡସିଂହ ହାତରେ ମଲା । ରାଜକୁମାର ଦେବମାୟାକୁ ପରାସ୍ତ କରି ତା' ହାତ ଓ ଗୋଡ଼କୁ ବାନ୍ଧି କଏଦୀ କଲେ । ଦେବମାୟାକୁ ସାହାଯ୍ୟ କରିବାକୁ ଆସିଥିବା ରାଜାମାନେ ହାତ ଯୋଡ଼ି ରାଜକୁମାରଙ୍କ ସମ୍ମୁଖରେ ନତମସ୍ତକ ହୋଇ ଠିଆ ହେଲେ । ଦେବମାୟା ଓ ସେଇ ରାଜାମାନେ ବିନମ୍ରଭାବରେ ରାଜକୁମାରଙ୍କ ସେବକ ହେବେ ବୋଲି ଶପଥ କଲେ ।

ତା'ପରଦିନ ସକାଳେ ଗୁମ୍ଫା ଭିତର ଦେଇ ସେ କୈଳାସ ପର୍ବତର ଉତ୍ତର ପାଖକୁ ଯିବାକୁ ଇଚ୍ଛାକଲେ । ତାଙ୍କ ପାଖେ ପାଖେ ଥିବା ଦେବମାୟା ଗୁମ୍ଫାର ଇତିହାସ ଏହିଭଳି ଭାବେ ବର୍ଣ୍ଣନା କଲା– ରାଜକୁମାର ! ଉତ୍ତର ଗୋଲାର୍ଦ୍ଧ ଓ ଦକ୍ଷିଣ ଗୋଲାର୍ଦ୍ଧକୁ, ପ୍ରତ୍ୟେକକୁ ଜଣେ ଲେଖାଏଁ ସମ୍ରାଟ୍ ଶାସନ କରୁଥିଲେ । ଋଷଭ ତପସ୍ୟାରେ ଶଙ୍କରଙ୍କୁ ସନ୍ତୁଷ୍ଟକରି ଉଭୟ ଗୋଲାର୍ଦ୍ଧର ସମ୍ରାଟ୍ ହୋଇଗଲେ । ପରେ ସେ ଉତ୍ତର ଗୋଲାର୍ଦ୍ଧକୁ ଯିବାପାଇଁ ଇଚ୍ଛାକରି କୈଳାସ ପର୍ବତ ଉପରେ ଦେଇ ଉଡ଼ିଯିବାକୁ ଚେଷ୍ଟା କଲେ । କୈଳାସବାସୀ ହରଙ୍କ କୋପରେ ତାଙ୍କର ସବୁ ବିଦ୍ୟା ନଷ୍ଟ ହୋଇଗଲା ଓ ସେ ଚେତା ହରାଇ ତଳେ ପଡ଼ିଗଲେ । ଚେତାପାଇ ଶିବଙ୍କୁ ସନ୍ତୁଷ୍ଟ କରିବାକୁ ସେ କଠିନ ତପ କଲେ । ଏଥର ସେ ଶିବଙ୍କୁ ପ୍ରାର୍ଥନା କରି ଉତ୍ତର ଓ ଦକ୍ଷିଣକୁ ସଂଯୋଗ କରୁଥିବା ବାଟଟିଏ ଦେଖାଇଦେବାକୁ ନିବେଦନ କଲେ । ସମ୍ରାଟଙ୍କ ଅନୁରୋଧ ରକ୍ଷାକରି ଶିବ ପର୍ବତ ତଳେ ଓସାରିଆ



ଗୁମ୍ଫାଟିଏ ସୃଷ୍ଟି କରିଦେଲେ ଯେଉଁ ବାଟଦେଇ ସମ୍ରାଟ୍ ଇଚ୍ଛା ଅନୁସାରେ ଦକ୍ଷିଣରୁ ଉତ୍ତରକୁ ଯାଇ ପାରିବେ । କୈଳାଶ ପର୍ବତ ଦେବତା ରୂପରେ ଶିବଙ୍କ ସମ୍ମୁଖରେ ହାତଯୋଡ଼ି କାନ୍ଦି କାନ୍ଦି କହିଲେ– ପ୍ରଭୁ ! ମୋର ଏଇ ଉତ୍ତର ଗୋଲାର୍ଦ୍ଧ ମରଣଶୀଳଙ୍କ ପାଇଁ ଅଗମ୍ୟ । ବର୍ତ୍ତମାନ ଏଇ ଗୁମ୍ଫା ହେବାଦ୍ୱାରା ସେମାନେ ସହଜରେ ଉତ୍ତରାଞ୍ଚଳକୁ ଯାଇପାରିବେ । ଦୟାକରି ମୋର ଦୀର୍ଘ ଦିନର ସମ୍ମାନକୁ ରକ୍ଷା କରନ୍ତୁ ।

ଶିବ କୈଳାସଙ୍କୁ ସାନ୍ତ୍ୱନା ଦେଲେ ଓ ସାଧାରଣ ମରଣଶୀଳ ଅତିକ୍ରମ ନକରି ପାରିବା ପାଇଁ ବିରାଟ ବିରାଟ ହାତୀ, ବିଷଧର ସାପ ଓ ଗୁହ୍ୟକ ମାନଙ୍କ ଦ୍ୱାରା ଦ୍ୱାର ଅବରୋଧ କରାଇଲେ । ଗୁମ୍ଫାର ଦକ୍ଷିଣଦ୍ୱାର ମହାମାୟା ଜଗିଛନ୍ତି । ଉତ୍ତର ଦ୍ୱାରକୁ ଚଣ୍ଡିକା ଓ କାଳରାତ୍ରି ଜଗିଛନ୍ତି । ସେମାନଙ୍କୁ ପରାସ୍ତ କଲେ ସେମାନେ ଶକ୍ତି ଓ ସୁଯୋଗରେ ପରିବର୍ତ୍ତିତ ହୋଇଯା'ନ୍ତି । ମହାପ୍ରଭୁ ଶିବ ଗୁମ୍ଫା ତିଆରି କରାଇ କେତେକ ନିୟମ ମଧ୍ୟ ରଖିଛନ୍ତି । କେବଳ ସ୍ୱର୍ଗର ଅଧିବାସୀମାନେ ସେମାନଙ୍କର ସ୍ତ୍ରୀ ଓ ରାଜଦୂତମାନେ ଗୋଟିଏ ପାଖରୁ ଅନ୍ୟ ପାଖକୁ ଯାଇ ପାରିବେ । ସବୁ ରତ୍ନ ବିଦ୍ୟା ଓ ସିଦ୍ଧି ଲାଭ କରିଥିବା ସମ୍ରାଟମାନେ ମଧ୍ୟ ସେଇ ସୁବିଧା ପାଇପାରିବେ । ଉତ୍ତରାଞ୍ଚଳର ରାଜାମାନେ, ସେମାନଙ୍କର ସାମନ୍ତ ଓ ଦୂତମାନେ ସମ୍ରାଟଙ୍କ ଅନୁମତି ନେଇ ସେଇ ସୁଯୋଗ ମଧ୍ୟ ପାଇପାରିବେ । ଅନ୍ୟମାନଙ୍କର ଏପାଖରୁ ସେପାଖକୁ ଓ ସେପାଖରୁ ଏପାଖକୁ ଆସିବାକୁ ଶକ୍ତି ନାହିଁ ।

ଋଷଭ ବହୁ ଦିନଧରି ସମ୍ରାଟ୍ ଥିଲେ । ଥରେ ସେ ଅହଙ୍କାରରେ ଇନ୍ଦ୍ର ଓ ଦେବତାମାନଙ୍କ ସହିତ ଲଢ଼ି କଲେ । ଯୁଦ୍ଧରେ ସେ ଇନ୍ଦ୍ରଙ୍କ ବଜ୍ରର ଆଘାତରେ ମରିଗଲେ । ରାଜକୁମାର ! ଏଇ ହେଉଛି ଗୁମ୍ଫାର ଇତିହାସ । ଏଥର ମୁଁ ଆପଣଙ୍କୁ ମୋ ବିଷୟରେ କହୁଛି । ଗୁମ୍ଫା ଦ୍ୱାରର ଦେବମାୟାଙ୍କ ପରିବାରରେ ମୋର ଜନ୍ମ । ମୋ ଜନ୍ମବେଳେ ଶୂନ୍ୟବାଣୀ ହେଲା– ସେ ବିଦ୍ୟାଧର ଅଂଶରେ ଜନ୍ମ ହୋଇଛି । ତାକୁ ମଣିଷ ଯୁଦ୍ଧରେ ଜିଣିପାରିବେ ନାହିଁ । ତାକୁ ଯିଏ ଜିଣିବ, ସେ ସମ୍ରାଟ ହେବ । ସେ ତା'ର ପ୍ରଭୁ ହେବ ଓ ତା'ର ସେବା ପାଇବ । ଆପଣ ମୋତେ ଜିଣିଲେ । ଆପଣଙ୍କ ପାଖରେ ସବୁ ରତ୍ନ ଅଛି । ହେ ପ୍ରଖ୍ୟାତ ବୀର । ଗୁମ୍ଫା ଦେଇ ଯାଆନ୍ତୁ ଓ ଆପଣଙ୍କର ସବୁ ଶତ୍ରୁଙ୍କୁ ଧ୍ୱଂସ କରନ୍ତୁ ।

ରାତିକ ପାଇଁ ଗୁମ୍ଫା ଦ୍ୱାର ନିକଟରେ ଡେରା ପକାଇବାକୁ ରାଜକୁମାର ତାଙ୍କର ସେନାବାହିନୀକୁ ଆଦେଶ ଦେଲେ । ପରଦିନ ସକାଳେ ଅଭିଯାନର ଯୋଜନା ବିଷୟରେ ସ୍ଥିର କରିବେ ବୋଲି କହିଲେ । ସମସ୍ତେ ଗୁମ୍ଫା ନିକଟକୁ ଯାଇ ଗୁମ୍ଫା ଦ୍ୱାରରେ ବିପରୀତ ସ୍ଥାନରେ ଡେରା ପକାଇଲେ । ଗୁମ୍ଫା ଭିତର ଗଭୀର ଅନ୍ଧକାର ଥିଲା । ପରଦିନ ସକାଳେ ରାଜକୁମାର ଗୁମ୍ଫାକୁ ପୂଜାକଲେ ଓ ତାଙ୍କ ଆକାଶଯାନରେ ଚଢ଼ିଲେ । ସଙ୍ଗେ ସଙ୍ଗେ ତାଙ୍କର ସବୁପାର୍ଶ୍ୱ ରତ୍ନ ତାଙ୍କ ପାଖକୁ ଆସିଗଲା ଓ ସେ ତାଙ୍କର ସେନାବାହିନୀ ଓ ଦଳବଳଙ୍କୁ ନେଇ ଗୁମ୍ଫା ଭିତରକୁ ପଶିଲେ । ଇନ୍ଦ୍ରଙ୍କ ଚନ୍ଦ୍ରଲୋକିତ ଚନ୍ଦ୍ରିକା ରତ୍ନ ସାହାଯ୍ୟରେ ସେ ଗୁମ୍ଫା ଭିତରର ଅନ୍ଧାରକୁ ଦୂର କରିଦେଲେ । ଚନ୍ଦନ ବୃକ୍ଷର ଗନ୍ଧରେ ବିଷଧର ସାପମାନେ ପଳାଇ ଗଲେ । ତାଙ୍କ ପଥରେ ବାଧା ଦେବାକୁ ଥିବା ହାତୀମାନେ ତାଙ୍କ ବଡ଼ ହାତୀର ଉଜ୍ଜ୍ୱଳ ଆଲୋକରେ ଅନ୍ଧ ହୋଇଗଲେ । ଏହିପରି ସେ ଗୁମ୍ଫା ପାରହୋଇ ଉତ୍ତର ଦ୍ୱାରର ନିକଟରେ ପହଞ୍ଚିଲେ ।

ରାଜକୁମାରଙ୍କୁ ତାଙ୍କର ବିଦ୍ୟାଧର ଓ ଗନ୍ଧର୍ବ ବନ୍ଧୁମାନେ ଆଗରୁ କହିଥିଲେ ଯେ, କାଳରାତ୍ରି ଉତ୍ତର ଦ୍ୱାରରେ ସବୁବେଳେ ଜଗି ରହିଥାନ୍ତି ଓ ତାଙ୍କୁ ପୂଜା ନକଲେ ସଫଳତା ମିଳିବାର ନିଶ୍ଚିତତା ନଥାଏ । ସମୁଦ୍ର ମନ୍ଥନ ବେଳେ ଅସୁରମାନଙ୍କୁ ଧ୍ୱଂସ କରିବା ପାଇଁ ଭଗବାନ ବିଷ୍ଣୁ ତାଙ୍କୁ ସୃଷ୍ଟି କରିଥିଲେ । କେବଳ ରାଜକୁମାରଙ୍କ ଭଳି ଅଳ୍ପ କେତେଜଣ ଲୋକ ସେଇ ବାଧାକୁ ଅତିକ୍ରମ କରି

ସୁଙ୍ଗାରୁ ବାହାରିଯାଇ ପାରିବେ । ତେଣୁ କାଳରାତ୍ରିଙ୍କୁ ପୂଜାକରି ତାଙ୍କର ଆଶୀର୍ବାଦ ପାଇବାକୁ ରାଜକୁମାରଙ୍କୁ ଉପଦେଶ ଦିଆଯାଇ ଥିଲା । ରାଜକୁମାର ତାଙ୍କର ବନ୍ଧୁମାନଙ୍କର ପରାମର୍ଶରେ କାଳରାତ୍ରିଙ୍କୁ ପୂଜା କଲେ ଓ ତାଙ୍କର ସ୍ତୁତି ଗାନ କଲେ । କିଛି ସମୟ ପାଇଁ କାଳରାତ୍ରି ତାଙ୍କର ଶକ୍ତି ଦେଖାଇଲେ । ସେ ମନ୍ତ୍ର କଲେ ଓ ରାଜକୁମାରଙ୍କ ବ୍ୟତୀତ ଅନ୍ୟ ସମସ୍ତେ ଅଚେତ ହୋଇଗଲେ । ରାଜକୁମାର ତାଙ୍କର ସ୍ତୁତି କରିଚାଲିଲେ ଓ ସେ ଆବିର୍ଭୂତା ନ ହେଉଥିବା ଜାଣି ନିଜ ମୁଣ୍ଡ କାଟି ତାଙ୍କୁ ଭେଟି ଦେବାକୁ ଖଣ୍ଡା ଉଠାଇଲେ । କାଳରାତ୍ରି ତାଙ୍କ ଖଣ୍ଡାକୁ ଧରି ଅଟକାଇ ଦେଲେ । ସେ ରାଜକୁମାରଙ୍କ ସମ୍ମୁଖରେ ଆବିର୍ଭୂତା ହୋଇ କହିଲେ– ମୁଁ ତମ ଉପରେ ସନ୍ତୁଷ୍ଟ । ତମ ପାଖେ ପାଖେ ରହି ମୁଁ ତୁମକୁ ସାହାଯ୍ୟ କରିବି । –ଏତିକି କହି ସେ ଅନ୍ତର୍ଦ୍ଧାନ ହୋଇଗଲେ । ରାତି ତଥାପି ଥିଲା । କଣକ ପରେ ଜଣେ ସମସ୍ତ ସେନାବାହିନୀ ଚେତା ପାଇ ଉଠି ବସିଲେ । ରାତିର ଅବଶିଷ୍ଟ ସେମାନେ ସୁଙ୍ଗାର ଭିତର ଦ୍ୱାରରେ କଟାଇ ଦେଲେ ।

ସକାଳେ ରାଜକୁମାର ପୁଣି କାଳରାତ୍ରିଙ୍କୁ ପୂଜାକରି ସେନାବାହିନୀ ନେଇ ବାହାରିଲେ । ମନ୍ଦରଦେବଙ୍କ ଜଣେ ପ୍ରଧାନ ବନ୍ଧୁ ଧୂମଶିଖା ତାଙ୍କୁ ବାଧା ଦେଲା । ତା'ର ମାୟାରେ ଆକାଶ ତରବାରୀରେ ଭର୍ତ୍ତି ହେବାଭଳି ଓ ଯୋଦ୍ଧାମାନଙ୍କ ମୁଣ୍ଡରେ ଆକାଶ ଘୋଡ଼େଇ ହେଲାଭଳି ଦେଖାଗଲା । ଭୟଙ୍କର 'ମାର' 'ହାଣ' ଧ୍ୱନିମାନ ଶୁଣାଗଲା । କିନ୍ତୁ ରାଜକୁମାରଙ୍କ ସୈନ୍ୟମାନେ ଧୂମଶିଖାକୁ କାବୁ କରିନେଇ ତାଙ୍କ ସମ୍ମୁଖରେ ହାଜର କରାଇଲେ । ସେ ତାଙ୍କ ନିକଟରେ ଆତ୍ମସମର୍ପଣ କରି ତା' ନଗରରେ ଦିନଟିଏ ପାଇଁ ଅତିଥି ହେବାକୁ ତାଙ୍କୁ ନିମନ୍ତ୍ରଣ କଲା । ରାଜକୁମାର ତା'ର ନିମନ୍ତ୍ରଣ ଗ୍ରହଣ କଲେ ଓ ସେ ତାଙ୍କର ଉପଯୁକ୍ତ ସତ୍କାର କଲା ।

ପରଦିନ ମନ୍ଦରଦେବ ରାଜକୁମାରଙ୍କୁ ଆକ୍ରମଣ କରିବାକୁ ଆସୁଛି ବୋଲି ଖବର ପାଇଗଲା । ନରବାହନଦତ୍ତ ତାଙ୍କର ସେନାବାହିନୀ ନେଇ ମନ୍ଦରଦେବଙ୍କୁ ଯୁଦ୍ଧରେ ଭେଟିବାକୁ ଗଲେ । ଖୁବ୍ କମ ସମୟ ଭିତରେ ମନ୍ଦରଦେବ ତାଙ୍କୁ ବିରୋଧ କରିବା ପାଇଁ ତାଙ୍କ ସେନାବାହିନୀକୁ ଅର୍ଦ୍ଧ ଚନ୍ଦ୍ରାକାର ବ୍ୟୂହରେ ସଜାଇ ଥିବା ସ୍ଥାନରେ ଯାଇ ପହଞ୍ଚିଲେ । ରାଜକୁମାର ତାଙ୍କ ସେନାବାହିନୀକୁ ଧନୁରେ ଶର ଯୋଖା ଯାଇଥିବା ଆକାରରେ ସଜାଇଲେ । ତା'ପରେ ସେ ବିଦ୍ୟୁତ୍ ବେଗରେ ଝପଟି ଯାଇ ଶତ୍ରୁ ସୈନ୍ୟଙ୍କ ବ୍ୟୂହରେ ପଶିଗଲେ ଓ ତାଙ୍କ ପଛେ ପଛେ ସୈନ୍ୟମାନେ ବି ପଶିଗଲେ । କଣକୁ କଣେ ଲଢ଼େଇ ଭୟଙ୍କର ଭାବରେ ଲାଗିଗଲା । ଧର୍ମବତୀଙ୍କ ପୁଅ ଚଣ୍ଡସିଂହ କାଞ୍ଚନଦଂଷ୍ଟ୍ରଙ୍କ ମାଡ଼ରେ ଟଳି ପଡ଼ି ଚେତା ହରାଇଦେଲେ । ରାଗରେ ଧର୍ମବତୀ ଉଭୟ ପକ୍ଷର ସେନାବାହିନୀକୁ ଅଚେତ କରିଦେଲେ ।

କେବଳ ମନ୍ଦରଦେବ ଓ ନରବାହନଦତ୍ତଙ୍କର ପୂର୍ଣ୍ଣ ଚେତା ଥିଲା । ମନ୍ଦରଦେବ ତାଙ୍କ ମାୟାଶକ୍ତିରେ ରାଜକୁମାରଙ୍କୁ ଧ୍ୱଂସ କରିବାକୁ ଚେଷ୍ଟାକଲେ । କିନ୍ତୁ ତାଙ୍କୁ ପ୍ରତ୍ୟେକ କ୍ଷେତ୍ରରେ ମୁକାବିଲା କରିବାକୁ ରାଜକୁମାର ସକ୍ଷମ ଥିଲେ । ମନ୍ଦରଦେବ ହାତୀଟିଏ ପାଲଟି ଯାଇ ତାଙ୍କ ଆଡ଼କୁ ମାଡ଼ି ଆସିଲା ମାତ୍ରେ ରାଜକୁମାର ସିଂହଟିଏ ପାଲଟିଯାଇ ତାଙ୍କ ଉପରକୁ କୁଦି ପଡ଼ିଲେ । ସଙ୍ଗେ ସଙ୍ଗେ ମନ୍ଦରଦେବ ନିଜ ରୂପ ହୋଇ ଖଣ୍ଡାରେ ରାଜକୁମାରଙ୍କୁ ଆକ୍ରମଣ କଲେ । ହାତ ସଫେଇ କଲା ଭଳି ରାଜକୁମାର ତାଙ୍କଠାରୁ ଖଣ୍ଡାଟିକୁ ଛଡ଼ାଇ ଆଣିଲେ । ମନ୍ଦରଦେବ ଯେଉଁ ଅସ୍ତ୍ର ପ୍ରୟୋଗ କଲେ, ନରବାହନଦତ୍ତ ତାକୁ ପ୍ରତିହତ କଲେ । ଶେଷରେ ସେ ତାଙ୍କୁ ତଳେ ପକାଇ ଦେଇ ତାଙ୍କ ମୁଣ୍ଡ ଉପରକୁ ଚୋଟ ଉଠାଇଲା ବେଳେ ମନ୍ଦରଦେବଙ୍କ ଭଉଣୀ ମନ୍ଦାରଦେବୀ ତାଙ୍କ ଭାଇକୁ ନ ମାରିବାକୁ ରାଜକୁମାରଙ୍କୁ ଅନୁରୋଧ କଲା । ସେ ତାଙ୍କ ତପୋବନରେ ତପସ୍ୟା କରୁଥିବା ଦେଖି ତାଙ୍କ ପ୍ରେମରେ ପଡ଼ିଯାଇଥିଲା । ନରବାହନଦତ୍ତ ଜାଣିଥିଲେ ଯେ, ମନ୍ଦାରଦେବୀ ଭବିଷ୍ୟତରେ ତାଙ୍କର ରାଣୀ ହେବେ,



ସେ ମନ୍ଦରଦେବଙ୍କୁ ଦୟାକରି ଛାଡ଼ି ଦେଲେ । ସେ ତାଙ୍କୁ ସାନ୍ତ୍ୱନା ଦେଇ କହିଲେ– ଯୁଦ୍ଧରେ ଗୋଟିଏ ପକ୍ଷର ଜୟ ହୁଏ । ତେଣୁ ହାରିଲେ ଅପମାନିତ ବୋଧ କରିବାର କୌଣସି କାରଣ ନାହିଁ । ବିଜୟୀ ଓ ବିଜିତ ପରସ୍ପରର ବନ୍ଧୁ ହୋଇଯିବା ଉଚିତ । ରାଜକୁମାରଙ୍କ କଥା ଶୁଣି ମନ୍ଦରଦେବ ତାଙ୍କୁ ସମ୍ମାନ ଜଣାଇ ତାଙ୍କ ଭଉଣୀକୁ ସାଙ୍ଗରେ ନେଇ ତାଙ୍କ ବାପାଙ୍କ ଆଶ୍ରମକୁ ଚାଲିଗଲେ ।

ଧର୍ମବତୀ ତାଙ୍କ ମାୟା ଉଠାଇ ନଲେ ଓ ତାଙ୍କ ପୁଅ ଚଣ୍ଡସିଂହଙ୍କ ସହିତ ସମସ୍ତେ ଚେତା ପାଇ ଉଠିପଡ଼ିଲେ । ସେ କେବଳ ରକ୍ତପାତ ନ ହେବା ପାଇଁ ମାୟା କରିଥିଲେ । ଜଣେ କେହି ବି ନମରି ରାଜକୁମାର ଯୁଦ୍ଧ ଜିଣିଗଲେ । ସାରାରାତି ନାଚଗୀତରେ କଟିଲା । ସକାଳେ କୈଳାସ ପର୍ବତର ଉତ୍ତର ପାଦଦେଶ ଛାଡ଼ି ନରବାହନଦତ୍ତ ସେନାବାହିନୀ ଓ ପାତ୍ର ମନ୍ତ୍ରୀଙ୍କ ସହିତ ଆଗେଇ ଚାଲିଲେ । ଖୁବ୍ କମ୍ ସମୟ ଭିତରେ ସେମାନେ ମନ୍ଦରଦେବଙ୍କ ରାଜଧାନୀ ବିମଳାପୁରରେ ପହଞ୍ଚିଲେ । ବିମଳାପୁରର ଚାରିପାଖ ସୁନା ପାଚେରୀରେ ବେଷ୍ଟିତ ହୋଇଥିଲା । ମନେ ହେଉଥିଲା ଯେମିତି ସୁବର୍ଣ୍ଣ ମେରୁ କୈଳାସ ପର୍ବତକୁ ସମ୍ମାନ ଜଣାଇବାକୁ ଆସିଛନ୍ତି । ନରବାହନଦତ୍ତ ନଗର ମଧ୍ୟରେ ପ୍ରବେଶ କରି ସିଂହାସନ ଆରୋହଣ କଲେ ଓ ତାଙ୍କର ପାତ୍ରମନ୍ତ୍ରୀ ଓ ବନ୍ଧୁମାନେ ଯେ ଯାହାର ଉପଯୁକ୍ତ ସ୍ଥାନ ଗ୍ରହଣ କଲେ । ଅନ୍ତଃପୁରର ପୁରାତନ ସେବକମାନେ ତାଙ୍କ ପାଖକୁ ଧାଇଁ ଆସି ଜଣାଇଲେ ଯେ ମନ୍ଦରଦେବଙ୍କ ରାଣୀମାନେ ସତୀ ହେବାପାଇଁ ଚିତା ପ୍ରସ୍ତୁତ କରୁଛନ୍ତି । ରାଜକୁମାର ସେମାନଙ୍କୁ ସେଥିରୁ ନିବୃତ୍ତ କଲେ । ସେ ସେମାନଙ୍କୁ ଆଶ୍ୱାସନା ଦେଲେ ଯେ, ସେ ସେମାନଙ୍କୁ ନିଜ ଭଉଣୀର ସମ୍ମାନ ଦେବେ । ମନ୍ଦରଦେବଙ୍କ ରାଣୀମାନେ ନରବାହନଦତ୍ତଙ୍କ କଥା ଶୁଣି ଖୁସିହୋଇ ତାଙ୍କ ଆଶ୍ରୟରେ ରହିଲେ । ସେ ପୁଣି ଘୋଷଣା କଲେ ଯେ, ମନ୍ଦରଦେବଙ୍କ ସେବକମାନେ ତାଙ୍କର ବନ୍ଧୁ ଓ ସେ ସେମାନଙ୍କୁ ଉପଯୁକ୍ତ ସମ୍ମାନ ଦେବେ । ସେବକମାନେ ଦରବାରକୁ ଆସି ତାଙ୍କୁ ସମର୍ଥନ ଜଣାଇବାକୁ ଶପଥ କଲେ । ଏହିପରି ସେ ଉତ୍ତର ଗୋଲାର୍ଦ୍ଧର ମଧ୍ୟ ସମ୍ରାଟ୍ ହେଲେ ଓ ଅମିତ ଗତି ସମସ୍ତଙ୍କ ଉପସ୍ଥିତିରେ ତାଙ୍କର ଅଭିଷେକ କରାଇଲେ । ସ୍ୱର୍ଗୀୟ ଉଦ୍ୟାନରେ ସମ୍ରାଟ୍ ତାଙ୍କ ରାଣୀ ଓ ଦଳବଳଙ୍କ ସହ କିଛିଦିନ ଆନନ୍ଦରେ କଟାଇଲେ ।

କୌତୂହଳବଶତଃ ସମ୍ରାଟଙ୍କ ମନରେ ମେରୁ ପର୍ବତ ଓ ତା'ର ପାର୍ଶ୍ୱବର୍ତ୍ତୀ ଅଞ୍ଚଳକୁ ଜୟ କରିବାକୁ ଇଚ୍ଛା ହେଲା । ସେ ତାଙ୍କର ମନ୍ତ୍ରୀମାନଙ୍କ ଆପତ୍ତିକୁ ଶୁଣିଲେ ନାହିଁ । ସୌଭାଗ୍ୟକୁ ନାରଦ ମୁନି ଦିନେ ଆସି ପହଞ୍ଚି ତାଙ୍କୁ ଉପଦେଶ ଦେଲେ– ରାଜା ! ନୀତିଶାସ୍ତ୍ର ଓ ରାଜନୀତିରେ ତମେ ପଣ୍ଡିତ ! ଏପରି ଅସତ୍ ଇଚ୍ଛା କରୁଛ କାହିଁକି ? ଅହଙ୍କାରରୁ ରାବଣ ଥରେ କୈଳାସ ପର୍ବତକୁ ଓପାଡ଼ିବାକୁ ଚେଷ୍ଟାକରି ବିଫଳ ହୋଇଥିଲା । ଏପରିକି ସୂର୍ଯ୍ୟ ଓ ଚନ୍ଦ୍ର ମଧ୍ୟ ମେରୁ ପର୍ବତ ଉପରେ ଯାତାୟତ କରନ୍ତି ନାହିଁ । ଶଙ୍କର ତମକୁ ବିଦ୍ୟାଧରମାନଙ୍କ ସମ୍ରାଟ୍ କରିଛନ୍ତି, ଦେବତାମାନଙ୍କର ପ୍ରଭୁତ୍ୱ ଦେଇ ନାହାନ୍ତି । ହିମାଳୟ ହେଉଛି ବିଦ୍ୟାଧରମାନଙ୍କ ବାସସ୍ଥଳୀ ଓ ତମେ ତାହାକୁ ଜୟ କରିଛ । ମେରୁ ହେଉଛି ଦେବତାମାନଙ୍କ ବାସସ୍ଥଳୀ । ତମର ସେଠାରେ କିଛି କରିବାର ନାହିଁ । ତେଣୁ ତମ ଚେଷ୍ଟାରୁ ତମେ କ୍ଷାନ୍ତ ହୁଅ । ମନ୍ଦରଦେବର ବାପା ଅକମ୍ପନ ତାଙ୍କ ଆଶ୍ରମରେ ତପ ସାଧନା କରୁଛନ୍ତି । ତାଙ୍କୁ ଯାଇ ସମ୍ମାନ ଜଣାଅ । ତମର ମଙ୍ଗଳ ହେବ ।

ସମ୍ରାଟ୍ ନାରଦଙ୍କ ଉପଦେଶ ଗ୍ରହଣ କଲେ ଓ ତାଙ୍କୁ ସାଷ୍ଟାଙ୍ଗ ପ୍ରଣାମ ଜଣାଇ ବିଦାୟ ଦେଲେ ।

ସମ୍ରାଟ ତାଙ୍କ ଦଳବଳ ସହିତ ମନ୍ଦରଦେବ ଓ ମନ୍ଦାରବତୀଙ୍କ ବାପା ଅକମ୍ପନଙ୍କ ଆଶ୍ରମକୁ ଗଲେ । ଅକମ୍ପନଙ୍କ ବିଶାଳ ଜଟାଜୁଟ ତାଙ୍କୁ ବହୁ ଓହଳଧାରୀ ବଟବୃକ୍ଷ ଭଳି ପ୍ରତୀୟମାନ କରୁଥିଲା ।

ସମ୍ରାଟ୍ ଯାଇ ଋଷିଙ୍କ ପାଦତଳେ ସାଷ୍ଟାଙ୍ଗ ପ୍ରଣାମ୍ କଲେ । ଋଷି ସମ୍ରାଟଙ୍କୁ ସ୍ୱାଗତ କରି କହିଲେ– ସମ୍ରାଟ୍ ! ତମେ ମୋ ଆଶ୍ରମକୁ ଆସି ଭଲ କରିଛ । ନହେଲେ ମୁଁ ତମକୁ ଅଭିଶାପ ଦେଇଥା’ନ୍ତି ।

ଏତିକିବେଳେ ମନ୍ଦରଦେବ ତାଙ୍କ ଭଉଣୀ ମନ୍ଦାରବତୀ ସହ ଆସି ପହଞ୍ଚିଲେ । ନରବାହନଦତ୍ତ ତାଙ୍କୁ କୋଳାଗ୍ରତ କରି କହିଲେ ପ୍ରେମଦ୍ୱାରା ଶତ୍ରୁ ମିତ୍ର ହୋଇଯାଏ । ଅକମ୍ପନ ସମ୍ରାଟଙ୍କୁ କହିଲେ– ଏଇ ଯୁବତୀ ହେଉଛି ମୋ ଝିଅ ମନ୍ଦାରବତୀ । ତା’ଜନ୍ମ ସମୟରେ ଶୂନ୍ୟବାଣୀ ହୋଇଥିଲା ସେ ଜଣେ ସମ୍ରାଟ୍‌ର ରାଣୀ ହେବ । ମୁଁ ତାକୁ ତମକୁ ଦାନ କରୁଛି । ତାକୁ ବାହାହୁଅ ।

ମନ୍ଦାରବତୀ ଆଗେଇ ଆସି କହିଲା– ବାପା ! ଏମାନେ ମୋର ସାଙ୍ଗ କନକାବତୀ, କଳାବତୀ, ଶ୍ରୁତି ଓ ଅମରପ୍ରଭା । ସେମାନେ କାଞ୍ଚନଦଂଷ୍ଟ୍ର, କାଳଜିହ୍ୱା, ଦୀର୍ଘଦଂଷ୍ଟ୍ର ଓ ପୋତ୍ରରାଜଙ୍କ ଝିଅ । ଆମେ ପାଞ୍ଚଜଣଯାକ ଏକାଠି ଓ ଏକ ସମୟରେ ସମ୍ରାଟଙ୍କୁ ବିବାହ କରିବୁ ବୋଲି ଶପଥ ନେଇଛୁ । ଜଣେ ଯଦି ତାଙ୍କୁ ବାହାହୁଏ, ତା’ହେଲେ ଅନ୍ୟ ସମସ୍ତେ ଆତ୍ମହତ୍ୟା କରିବେ । ତେଣୁ ମୁଁ ମୋର ଚାରିଜଣ ସାଙ୍ଗଙ୍କ ସହିତ ତାଙ୍କୁ ବିବାହ କରିବି । ଆମେ ଆମପ୍ରତି ମିଥ୍ୟାଚରଣ କରିବୁ ନାହିଁ । ଅକମ୍ପନ ଅନ୍ୟ ଯୁବତୀମାନଙ୍କର ବାପା-ମା’ମାନଙ୍କ ନିକଟକୁ ଖବର ପଠାଇଲେ । ସେମାନେ ଶିଘ୍ର ପହଞ୍ଚି ସବୁ କଥା ଜାଣିଲେ । ସେମାନେ ଆନନ୍ଦରେ ସମ୍ମତି ଦେଲେ । ନରବାହନଦତ୍ତ ସେଇ ଶୁଭ ମୁହୂର୍ତ୍ତରେ ସମସ୍ତଙ୍କୁ ବିବାହ କଲେ । ସେ ଆଶ୍ରମର ଋଷିମାନଙ୍କୁ ସମ୍ମାନ ଜଣାଇ କେତେ ଦିନ ଆଶ୍ରମରେ କଟାଇଲେ ।

ଦିନେ ଅକମ୍ପନ ସମ୍ରାଟ୍‌ଙ୍କୁ ପାଖକୁ ଡାକି କହିଲେ– ସମ୍ରାଟ୍ ! ତମେ ତମର ମହାଭିଷେକ ପାଇଁ ଋଷଭାଦ୍ରିକୁ ଯାଅ । ତମର ପୂର୍ବବର୍ତ୍ତୀ ସମ୍ରାଟ୍‌ମାନେ ସେଇଠାରେ ହିଁ ମହାଭିଷିକ୍ତ ହୋଇଥିଲେ । କିନ୍ତୁ ସେନାପତି ହରିଶିଖ ପରାମର୍ଶ ଦେଲେ ଯେ ତଟଂ ପାଖରେ ଥିବା ମନ୍ଦର ପର୍ବତରେ ମହାଭିଷେକ କଲେ ଭଲ ହେବ । ସଙ୍ଗେ ସଙ୍ଗେ ଶୂନ୍ୟବାଣୀ ହେଲା– ଋଷଭର ସିଦ୍ଧପଦ ପାଇଁ ତମେ କେବଳ ସେଇଠାକୁ ଯାଅ । ସମ୍ରାଟ୍ ସେଇ ବାଣୀକୁ ମାନିନେଲେ । ଗୋଟିଏ ଶୁଭ ଦିନରେ ସେ ସପରିବାର ଋଷିମାନଙ୍କ ଠାରୁ ବିଦାୟ ନେଇ ତ୍ରିଶିରା ଗୁମ୍ଫାକୁ ଯାଇ କାଳରାତ୍ରୀଙ୍କୁ ପୂଜା କଲେ । ତା’ପରେ ସେ ଗୁମ୍ଫା ମଧ୍ୟରେ ପ୍ରବେଶ କରି ଦକ୍ଷିଣ ପାଖରେ ବାହାରିଲେ । ଦେବମାୟାଙ୍କ ଅନୁରୋଧରେ ତାଙ୍କ ନଗରରେ ସେ ଦିନିଟିଏ କଟାଇଲେ । ସେଠାରେ ସେ ଶଙ୍କରଙ୍କୁ ପୂଜା କରିବା ଉଚିତ୍ ମନେକଲେ । ସେ ଗୋମୁଖଙ୍କୁ ସଙ୍ଗରେ ନେଇ ଶଙ୍କରଙ୍କ ବାସସ୍ଥଳୀକୁ ଗଲେ । ସେ ନମ୍ରତାର ସହିତ କାମଧେନୁ ଓ ଋଷଭଙ୍କୁ ନମସ୍କାର କଲେ ଓ ନନ୍ଦୀଙ୍କ ଚାରି ପାଖରେ ପ୍ରଦକ୍ଷିଣ କଲେ । ନନ୍ଦି ଆନନ୍ଦିତ ହୋଇ ତାଙ୍କୁ ମନ୍ଦିର ଭିତରକୁ ଯିବାକୁ ଅନୁମତି ଦେଲେ । ସେ ଶଙ୍କର ଓ ପାର୍ବତୀଙ୍କ ସମ୍ମୁଖରେ ଠିଆହୋଇ ପ୍ରାର୍ଥନା କଲେ ଓ ସେମାନଙ୍କ ପାଦ ତଳେ ସାଷ୍ଟାଙ୍ଗ ପଡ଼ିଗଲେ । ଶଙ୍କର କହିଲେ– ବତ୍ସ ! ତମେ ଏଠାକୁ ଆସି ଭଲ କରିଛ । ଯଦି ଆସି ନଥା’ନ୍ତ ତା’ହେଲେ ସବୁ ବିଦ୍ୟା ତମକୁ ଛାଡ଼ି ଚାଲିଯାଇଥା’ନ୍ତା । ସେମାନେ ବର୍ତ୍ତମାନ ସବୁଦିନ ପାଇଁ ତମ ସାଥିରେ ରହିବେ । ତମେ ବର୍ତ୍ତମାନ ଋଷଭ ପର୍ବତକୁ ଯାଅ । ସେଠାରେ ତମର ମହାଭିଷେକ ପୂର୍ଣ୍ଣ ହେବ ।

ସମ୍ରାଟ୍ ପୁଣି ଥରେ ଶଙ୍କର ଓ ଭବାନୀଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରି ଦେବମାୟାଙ୍କ ନଗରକୁ ଫେରି ଆସିଲେ ।

ତହିଁ ପରଦିନ ନରବାହନଦତ୍ତ ରାଣୀମାନଙ୍କୁ, ପାତ୍ର-ମନ୍ତ୍ରୀ ଓ ସର୍ଦ୍ଦାର ଓ ବିଦ୍ୟାଧରମାନଙ୍କୁ ସାଙ୍ଗରେ ନେଇ ଋଷଭ ପର୍ବତ ଅଭିମୁଖେ ଚାଲିଲେ । ସେ ତାଙ୍କ ପକ୍ଷୀ ବିମାନରେ ବସି ଯାଉଥିଲା ବେଳେ ଆକାଶରେ ଦୁଇଟି ସୂର୍ଯ୍ୟ ଉଦ୍ଭାସିତ ହେଲାଭଳି ମନେ ହେଉଥିଲା । ଜଣେ ପ୍ରାକୃତିକ ସୂର୍ଯ୍ୟ ଥିଲେ ଓ ଅନ୍ୟ ଜଣକ ନରବାହନଦତ୍ତ ନିଜେ । ସେ ସିଦ୍ଧ ପର୍ବତ ଋଷଭରେ ପହଞ୍ଚିଲେ ଓ ତାଙ୍କର



ମହାଭିଷେକ ପାଇଁ ଆୟୋଜନ ଚାଲିଲା । ସବୁ ଦିଗରୁ ବିଦ୍ୟାଧରମାନେ ସମ୍ରାଟ୍‌ଙ୍କ ପାଇଁ ଉପହାରମାନ ନେଇ ପହଞ୍ଚିଲେ । ସମସ୍ତେ ଏକ ସ୍ୱରରେ କହିଲେ ଯେ, ସମ୍ରାଟ୍‌ଙ୍କର ତାଙ୍କ ସବୁ ରାଣୀମାନଙ୍କ ଗହଣରେ ଅଭିଷେକ କରାଯିବ । ଏଇ ସମୟରେ ଶୂନ୍ୟବାଣୀ ହେଲା– ହେ ବିଦ୍ୟାଧରମାନେ, ଶୁଣ ! ରାଣୀ ମଦନମଞ୍ଚୁକା ଜଣେ ମରଣଶୀଳ ମାନବୀ ନୁହଁନ୍ତି । ତମମାନଙ୍କର ପ୍ରଭୁ ନରବାହନଦତ୍ତ ନିଜେ କାମଦେବ । ରତି ଦେବୀ ମଦନମଞ୍ଚୁକା ହୋଇ ଜନ୍ମ ହୋଇଛନ୍ତି । ଦେବତାମାନେ ମାୟା କରିଥିଲେ । କଳିଙ୍ଗସେନା ପୁଅଟିଏ ଜନ୍ମ ଦେଇଥିଲେ । ସେଇ ପୁଅଟିକୁ ଉଠାଇ ନେଇ ମାନସବେଗକୁ ଦେଇ ଦିଆଯାଇଥିଲା, ଯିଏ ତାକୁ ଇତ୍ୟକ ରୂପରେ ପାଳିଛି । ସେଇ ପୁଅ ସ୍ଥାନରେ ଦେବ ଶିଶୁ ରତିକୁ ରଖି ଦିଆଯାଇଥିଲା । ତେଣୁ ମଦନମଞ୍ଚୁକାର ହିଁ ସମ୍ରାଟ୍‌ଙ୍କ ଅଭିଷେକ ବେଳେ ତାଙ୍କ ପାଖରେ ସିଂହାସନରେ ବସିବାର ଅଧିକାର ଅଛି । ବହୁଦିନ ପୂର୍ବେ ଶଙ୍କର ରତିଦେବୀଙ୍କୁ ଏହି ବର ଦେଇଥିଲେ ।

ଶୂନ୍ୟବାଣୀ ଶୁଣି ସମସ୍ତେ ଆନନ୍ଦିତ ହେଲେ ଓ ଅନ୍ୟ ସମସ୍ତ ରାଣୀମାନେ ମଦନମଞ୍ଚୁକାଙ୍କୁ ପ୍ରଶଂସା କଲେ ।

ନରବାହନଦତ୍ତଙ୍କର ମହାଭିଷେକ ମହାସମାରୋହରେ ସମ୍ପନ୍ନ ହେଲା ।

ଏହିପରି ନରବାହନଦତ୍ତଙ୍କ ଇଚ୍ଛା ପୂରଣ ହେଲା ଓ ଶିବଙ୍କ ବରର ସମ୍ପୂର୍ଣ୍ଣ ଫଳ ତାଙ୍କୁ ମିଳିଲା । ସେଇ ସୁଖ ସମୟରେ ସେ କିନ୍ତୁ ତାଙ୍କ ବାପା-ମା’ଙ୍କୁ ଭୁଲି ନଥିଲେ । ଏଇ ଶୁଭ ଖବର କୌଶାମ୍ବୀରେ ତାଙ୍କ ବାପା ମହାରାଜା ଉଦୟନ ଓ ମା’ ମହାରାଣୀ ବାସବଦତ୍ତାଙ୍କୁ ଜଣାଇ ଦେଇ ଆସିବାକୁ ଦୂତ ପଠାଇଲେ ।

ପୁଅର ଅନୁରୋଧ ରକ୍ଷାକରି ମହାରାଜ ଉଦୟନ ଓ ମହାରାଣୀ ବାସବଦତ୍ତା ବିଦ୍ୟାଧରଙ୍କ ଦେଶକୁ ଆସିଲେ । ନରବାହନଦତ୍ତଙ୍କୁ ସମ୍ରାଟ୍ ରୂପେ ଦେଖି ସେମାନେ ବହୁତ ଖୁସି ହେଲେ ଓ ସେଇ ଦିବ୍ୟ ଭୂମିରେ କିଛିଦିନ ମହା ଆନନ୍ଦରେ କଟାଇଲେ । ଦିନେ ସେମାନେ ନରବାହନଦତ୍ତଙ୍କୁ ଡାକି କହିଲେ– ପୁଅ ! ଏଇ ବିଦ୍ୟାଧର ଦେଶର ସ୍ୱର୍ଗୀୟ ସୁଖ ଉପଭୋଗ ବିଷୟରେ ବା କ’ଣ କହିବା ! ତୋତେ ଏଠାରେ ସମ୍ରାଟ୍ ହୋଇଥିବା ଦେଖି ଆମକୁ ବଡ଼ ଆନନ୍ଦ ଲାଗୁଛି । କିନ୍ତୁ ନିଜ ଜନ୍ମମାଟି କଥା ଅଲଗା । ତାଠୁଁ ଦୂରରେ ରହି ଆମକୁ ଏଠାରେ ଭଲ ଲାଗୁନାହିଁ । ଏବେ ଆମକୁ କୌଶାମ୍ବୀ ଯିବାକୁ ଦେ ।

ବାପା-ମା’ଙ୍କ କଥା ଶୁଣି ନରବାହନଦତ୍ତଙ୍କ ଆଖି ଲୁହ ଛଳ ଛଳ ହୋଇଗଲା । ସେ ନିଜର ରାଣୀମାନଙ୍କ ସହ ଦୁଃଖ ମନରେ ମହାରାଜ ଉଦୟନ ଓ ମହାରାଣୀ ବାସବଦତ୍ତାଙ୍କୁ ବିଦାୟ ଦେଲେ ।

ବାପା-ମା’ ବିଦାୟ ନେଇ ଯିବାପରେ କେତେ ଦିନ ପାଇଁ ନରବାହନଦତ୍ତ ଉଦାସ ମନରେ କଟାଇଲେ । ତାଙ୍କର ମନ କ୍ଷୁର୍ଣ୍ଣ ଦେଖି ଦିନେ ଗୋମୁଖ କହିଲେ– ମହାରାଜ ! ଆପଣ କେତେ ବିପଦକୁ ଲଙ୍ଘନ କରି ଓ ଉଦ୍ଦେଇ କରି ଏତେ ଦିବ୍ୟ ଐଶ୍ୱର୍ଯ୍ୟ ପାଇଛନ୍ତି । ଆତ୍ମୀୟଙ୍କ ଠୁଁ ବିଚ୍ଛେଦ ସବୁବେଳେ ଦୁଃଖ ଦେଇଥାଏ । ସେଇ ବିଷୟରେ ମୁଁ କଥାଟିଏ କହୁଛି, ଶୁଣନ୍ତୁ ।

# ସୁରସେନ ଓ ସୁଷେଣା କଥା

ଗୋମୁଖ କହିଲେ– ଶ୍ରାବସ୍ତୀରେ ସୁରସେନ ନାମରେ ଜଣେ ରାଜସେବକ ଥିଲା । ସେ ରାଜାଙ୍କର ଅତି ପ୍ରିୟ ଥିଲା । ତା’ମନରେ ସବୁବେଳେ ରାଜାଙ୍କର ସେବା କରିବା ଭାବନା ଥିଲା । ତା’ର ସ୍ତ୍ରୀ ସୁଷେଣା ତା’ପ୍ରତି ଗଭୀର ଭାବରେ ଅନୁରକ୍ତ ଥିଲା ଓ ତାକୁ ତା’ ନିଜ ଜୀବନଠୁଁ ବେଶୀ

ଲଭ ପାଉଥିଲା । ଥରେ ଶ୍ରାବସ୍ତୀ ରାଜାଙ୍କର ପଡ଼ୋଶୀ ରାଜାଙ୍କ ସହିତ ଯୁଦ୍ଧ ଲାଗିଲା ଓ ସେନାବାହିନୀ ଅଭିଯାନ କରିବାକୁ ଲାଗିଲେ । ରାଜା ସୁରସେନକୁ ଡକାଇ ପଠାଇଲେ । ସୁରସେନ ସୁଷେଣାକୁ କହିଲା— ସେନାବାହିନୀ ସହିତ ଯିବାପାଇଁ ରାଜା ମୋତେ ଡକାଇଛନ୍ତି । ମୋତେ ଯିବାକୁ ପଡ଼ିବ ।

ସୁଷେଣା କହିଲା— ଆର୍ଯ୍ୟପୁତ୍ର ! ମୋତେ ଏଠାରେ ଏକୁଟିଆ ଛାଡ଼ିଦେଇ ଯାଅ ନାହିଁ । ତମ ବିନା ମୁଁ ଏଠାରେ କ୍ଷଣଟିଏ ରହି ପାରିବି ନାହିଁ ।

ସୁରସେନ କହିଲା— ସୁନ୍ଦରୀ ! ରାଜା ଡାକିଛନ୍ତି ଆଉ ମୁଁ ଯିବିନି, ଏ କେମିତି ହୋଇପାରିବ ? ମୁଁ ରାଜାଙ୍କ ସେବକ । ମୁଁ ସ୍ୱାଧୀନ ନୁହେଁ । ରାଜାଙ୍କ ଆଦେଶ ପାଳନ କରିବା ମୋ ପକ୍ଷରେ ଉଚିତ ।

ସୁଷେଣ କହିଲା— ଯଦି ତମେ ଯିବା ନିହାତି ଆବଶ୍ୟକ, ତେବେ ଏତିକି ମନେରଖ— ତମ ବିନା ମୁଁ ରହି ପାରିବି ନାହିଁ ।

ସୁରସେନ ତାକୁ ବହୁତ ବୁଝାଇଲା । ପରେ ସୁଷେଣା ତା'ଠାରୁ ପ୍ରତିଶ୍ରୁତି ନେଲା ଯେ, ବସନ୍ତ ଋତୁ ଆସିବା ମାତ୍ରେ ସୁରସେନ ଫେରି ଆସିବ । ସୁଷେଣା କହିଲା— ଯଦି ବସନ୍ତ ଋତୁ ଆସିବା ପରେ ତମେ ଆସିବାକୁ ଗୋଟିଏ ଦିନ ଡେରିକର, ତା'ହେଲେ ମୁଁ ବଞ୍ଚିବି ନାହିଁ ।

ସୁରସେନ ମଧ କଥା ଦେଲା— ପ୍ରିୟେ ! ଫାଲ୍‌ଗୁନ ମାସର ପ୍ରଥମ ଦିନ, ଯେତେ କାମ ଥିଲେ ବି, ମୁଁ ସବୁ କାମ ଛାଡ଼ି ତମ ପାଖକୁ ଫେରି ଆସିବି ।

ତା'ପରେ ସୁଷେଣା ତାକୁ ଯିବାପାଇଁ ଅନୁମତି ଦେଲା । ସୁରସେନ ସେନାବାହିନୀ ସହ ଚାଲିଗଲା । ସୁଷେଣା ଫାଲ୍‌ଗୁନ ମାସର ପ୍ରଥମ ଦିନକୁ ଆକୁଳତାର ସହିତ ଅପେକ୍ଷା କରିବାକୁ ଲାଗିଲା । ସେ ସବୁଦିନ ଦିନ ଗଣିବାକୁ ଲାଗିଲା । ଦିନ ପରେ ଦିନ କୌଣସି ପ୍ରକାରେ ଦିନଗୁଡ଼ିକ ବିତିବାକୁ ଲାଗିଲା । ବସନ୍ତୋତ୍ସବ ଦିନ ଆସିଗଲା । ପକ୍ଷୀମାନେ ରାବ ଦେଉଥିଲେ, ନଗରରେ ଆନନ୍ଦ ଉଲ୍ଲାସ ଛାଇଯାଇଥିଲା । ସୁଷେଣା ଭାବୁଥିଲା— ବସନ୍ତ ଉତ୍ସବ ଦିନ ତ ଆସିଗଲା, ଆଜି ନିଶ୍ଚୟ ମୋ ପ୍ରିୟ ଲେଉଟି ଆସିବେ ।

ସେ ସାଧୋଇ ଭଲ ଭାବରେ ସଜବାଜ ହେଲା ଓ ପ୍ରିୟର ବାଟକୁ ଚାହିଁ ରହିଲା । ଦିନ ବିତିଲା, ସଞ୍ଜ ହେଲା, ରାତି ମଧ ହେଲା । ସୁଷେଣାର ହୃଦୟକୁ ନିରାଶ ଘାରି ପକାଇଲା । ସେ ଭାବିବାକୁ ଲାଗିଲା— ମୋର ମରିବା ସମୟ ଆସିଗଲା; ପ୍ରିୟ ଆସିଲେ ନାହିଁ । ପରର ସେବାରେ ଲାଗିଥିବା ଲୋକର ନିଜ ଲୋକଙ୍କ ପାଇଁ ସ୍ନେହ ରହିପାରିବବା କେଉଁଠି ? —ଏଇଭଳି ନିଜର ପ୍ରିୟକୁ ଭାବି ଭାବି ବିରହ ନିଆଁରେ ଜଳି ଜଳି ତା'ର ପ୍ରାଣ ବାହାରିଗଲା ।

ଅନ୍ୟ ପକ୍ଷରେ ସୁରସେନ ତ ଦିନସାରା ସେନା କାର୍ଯ୍ୟରେ ବ୍ୟସ୍ତ ରହିଲା, ସଞ୍ଜହେଲା ମାତ୍ରେ ରାଜାଙ୍କ ଠାରୁ କୌଣସିମତେ ଅନୁମତି ନେଇ ଗାଁକୁ ବାହାରି ପଡ଼ିଲା । ସେ ଗୋଟିଏ ଦ୍ରୁତଗାମୀ ଓଟ ଉପରେ ସବାର ହେଲା । ତା' ସ୍ତ୍ରୀକୁ ଭେଟିବା ପାଇଁ ସୁରସେନର ଜୀବନ ଯେମିତି ଜାଗ୍ରତ ହୋଇଥିଲା । ଓଟକୁ ଜୋର୍‌ରେ ଦଉଡ଼ାଇ ଦଉଡ଼ାଇ କୌଣସିମତେ ଅଧରାତି ବେଳକୁ ସେ ଘରେ ପହଞ୍ଚିଲା । ଘରେ ପହଞ୍ଚି ସେ ଦେଖିଲା ଯେ, ତା' ସ୍ତ୍ରୀ ଖଟ ଉପରେ ଶୋଇଛି, ଅପୂର୍ବ ଭାବରେ ନିଜକୁ ସଜାଇଛି ଆଉ ସବୁ ଅଳଙ୍କାର ପିନ୍ଧିଛି । ସୁରସେନ ଯେତେବେଳେ ତାକୁ କୋଳାଗ୍ରତ କରିବାକୁ ଉଠାଇଲା, ସେ ଜାଣିପାରିଲା ଯେ, ସୁଷେଣା ଦେହରେ ଜୀବନ ନାହିଁ । ତଥାପି ସେ ସୁଷେଣାର ଦେହକୁ କୋଳରେ ଧରି କରୁଣ ସ୍ୱରରେ କାନ୍ଦିବାକୁ ଲାଗିଲା ଓ କାନ୍ଦି କାନ୍ଦି ଶୋକର ଆବେଗରେ ତା' ଜୀବନ ମଧ ଚାଲିଗଲା ।



ବଂଶର ଦେବୀ ଚଣ୍ଡୀ ଦେଖିଲେ ଯେ, ପରସ୍ପର ପ୍ରତି ନିର୍ମଳ ପ୍ରେମ ହେତୁ ଦୁଇ ଜଣଯାକ ସ୍ୱାମୀ-ସ୍ତ୍ରୀ ପ୍ରାଣ ଦେଇ ଦେଇଛନ୍ତି, ସେ ସେମାନଙ୍କୁ ଜୀବନ ଦାନ ଦେଲେ । ଦୁଇଜଣଯାକ ସହସା ଜାଗି ଉଠିଲେ ଓ ପରସ୍ପରକୁ କୋଳାଗ୍ରତ କରି ଆନନ୍ଦରେ ବିଭୋର ହୋଇ ଉଠିଲେ ।

କଥାଟି ଶୁଣାଇ ଗୋମୁଖ କହିଲେ— ମଣିମା ! ପ୍ରିୟଜନଙ୍କ ବିଚ୍ଛେଦ ଏହିପରି ପୀଡ଼ାଦାୟକ ହୋଇଥାଏ ।

ଗୋମୁଖ ଶୁଣାଇଥିବା କାହାଣୀ ଶୁଣି ନିଜ ବାପା ଓ ମା'ଙ୍କ ପାଇଁ ନରବାହନଦତ୍ତଙ୍କର ମନ ଆହୁରି ବ୍ୟାକୁଳ ହୋଇ ଉଠିଲା । କୌଣସି ପ୍ରକାର ସେ ଦିନ ବିତାଇବାକୁ ଲାଗିଲେ । ରାତିରେ ବଡ଼ କଷ୍ଟରେ ତାଙ୍କୁ ନିଦ ହେଲା ଓ ନିଦରେ ସେ ସ୍ୱପ୍ନଟିଏ ଦେଖିଲେ । ସ୍ୱପ୍ନରେ ସେ ଦେଖିଲେ ଯେ, ତାଙ୍କ ବାପା ମହାରାଜ ଉଦୟନଙ୍କୁ କଳାବର୍ଣ୍ଣର ସ୍ତ୍ରୀଲୋକଟିଏ ଦକ୍ଷିଣ ଦିଗକୁ ଟାଣି ଟାଣି ନେଇ ଯାଉଛି । ନରବାହନଦତ୍ତ ଯେମିତି ସେଇ ସ୍ତ୍ରୀଲୋକକୁ ବଡ଼ ପାଟିକରି ଡାକିଛନ୍ତି, ତାଙ୍କର ନିଦ ଭାଙ୍ଗିଗଲା । ସେ ତାଙ୍କର ପ୍ରଜ୍ଞାପ୍ତି ନାମକ ବିଦ୍ୟାକୁ ଧ୍ୟାନ କଲେ । ବିଦ୍ୟା ତାଙ୍କ ସମ୍ମୁଖରେ ସାକାର ହୋଇ ପ୍ରକଟ ହେଲେ । ନରବାହନଦତ୍ତ ତାଙ୍କୁ ପଚାରିଲେ— କୁହ, ମୋର ଏଇ ସ୍ୱପ୍ନର ମାନେ କ'ଣ ?

ପ୍ରଜ୍ଞାପ୍ତି କହିଲେ— ଦେବ, ଶୁଣନ୍ତୁ ! ମହାରାଜ ଉଦୟନଙ୍କୁ ଖବର ମିଳିଲା ଯେ ତାଙ୍କ ଶ୍ୱଶୁର ମହାରାଜ ଚଣ୍ଡସେନ ଆଉ ନାହାଁନ୍ତି ଓ ତାଙ୍କ ଶାଶୁ ଅଙ୍ଗାରବତୀ ଚଣ୍ଡସେନଙ୍କ ଚିତା ଉପରେ ସତୀ ହେବାକୁ ଯାଉଛନ୍ତି । ଏହି ଖବର ଶୁଣି ସେ ମୂର୍ଚ୍ଛା ଚାଲିଗଲେ । କିଛି ସମୟ ପରେ ସେ ଦେବୀ ବାସବଦତ୍ତାଙ୍କୁ ସାଥିରେ ନେଇ ଉଜ୍ଜୟନି ଯିବେ ।

ପ୍ରଜ୍ଞାପ୍ତି ବିଦ୍ୟା ଦ୍ୱାରରେ ନରବାହନଦତ୍ତଙ୍କୁ ଯେଉଁ ସୂଚନା ମିଳିଥିଲା, ତାହା ସତ୍ୟ ଥିଲା । ମହାରାଜା ଉଦୟନ ତାଙ୍କ ଶ୍ୱଶୁର ମହାରାଜ ଚଣ୍ଡସେନଙ୍କ ମରିବା ଖବର ଶୁଣି ସେ ବିଚଳିତ ହୋଇଗଲେ । ପୁଣି କୌଣସି ମତେ ଧୈର୍ଯ୍ୟଧରି ମହାରାଣୀ ବାସବଦତ୍ତାଙ୍କୁ ସଙ୍ଗରେ ନେଇ ସେ ଉଜ୍ଜୟିନୀରେ ପହଞ୍ଚିଲେ । ଉଜ୍ଜୟିନୀରେ ମହାରାଜ ଉଦୟନ ଚଣ୍ଡସେନଙ୍କ ଶବକୁ ଧରି ସେ ବିକଳ ହୋଇ କାନ୍ଦିବାକୁ ଲାଗିଲେ । ଉଜ୍ଜୟିନୀର ମନ୍ତ୍ରୀମାନେ ତାଙ୍କୁ ବୁଝାଇଲେ— ମହାରାଜ ! ଧୈର୍ଯ୍ୟ ଧରନ୍ତୁ । ମହାରାଜ ଚଣ୍ଡସେନ ତାଙ୍କର ପୁରା ଆୟୁ ପର୍ଯ୍ୟନ୍ତ ପରିପୂର୍ଣ୍ଣ ଜୀବନ ବିତାଇଲେ, ତାଙ୍କର ଗୋପାଳକଙ୍କ ଭଳି ପୁଅ ଓ ଆପଣଙ୍କ ଭଳି ଜ୍ୱାଇଁ ଅଛନ୍ତି । ତାଙ୍କର ଶୋକ କରିବା ଉଚିତ ନୁହେଁ । —ଏଇଭଳି ବୁଝାସୁଝା କରାଇବା ପରେ ମହାରାଜ ଉଦୟନ କୌଣସିମତେ ନିଜ ଶ୍ୱଶୁରଙ୍କର ଅନ୍ତ୍ୟେଷ୍ଟିକ୍ରିୟା ସମ୍ପନ୍ନରେ ସହାୟତା କଲେ ।

ତା'ପରେ ମହାରାଜ ଉଦୟନଙ୍କର ସଂସାର ପ୍ରତି ଯେପରି ବୈରାଗ୍ୟ ଆସିଗଲା । ସେ ଯୌଗନ୍ଧରାୟଣଙ୍କୁ କହିବାକୁ ଲାଗିଲେ— ଏଇ ସଂସାର ଅସାର । ଏବେ ମୋତେ ମୁକ୍ତି ଲାଭ କରିବା ପାଇଁ ଯତ୍ନ କରିବାକୁ ପଡ଼ିବ । ସବୁ ସୁଖ ମୁଁ ଭୋଗ କରିସାରିଛି । ତେଣୁ ମୁଁ କାଳିଞ୍ଜର ଗିରୀକୁ ଯାଇ ଏଇ ଦେହକୁ ତ୍ୟାଗ କରିବି । —ଏଇ ସିଦ୍ଧାନ୍ତ କରି ପାଳକଙ୍କୁ ଉଜ୍ଜୟିନୀ ରାଜପଦରେ ଅଭିଷେକ କରାଇଲେ ଓ ଗୋପାଳକଙ୍କୁ ବୁଝାଇସୁଝାଇ ଓ ଜୋର ଜବରଦସ୍ତି କରି କୌଶାମ୍ବୀ ରାଜ ପଦରେ ଅଭିଷେକ କରାଇଲେ । ତା'ପରେ ସେ ସେ କାଳିଞ୍ଜର ଗିରୀକୁ ଯିବାକୁ ପ୍ରସ୍ତୁତ ହୋଇଗଲେ । ମହାରାଣୀ ବାସବଦତ୍ତା ଓ ଯୌଗନ୍ଧରାୟଣ ଓ ରୁମଣ୍ୱାନ ପ୍ରଭୃତି ମନ୍ତ୍ରୀମାନେ ତାଙ୍କୁ କହିଲେ— ଆମେମାନେ ମଧ ଆପଣଙ୍କ ସାଙ୍ଗରେ ଯିବୁ ।

ମହାରାଜ ଉଦୟନଙ୍କ ପଛେ ପଛେ ଗୋପାଳକ ଓ କୌଶାମ୍ବୀର ପ୍ରଜାମାନେ କାନ୍ଦି କାନ୍ଦି ଚାଲିବାକୁ ଲାଗିଲେ । ମହାରାଜ ଉଦୟନ ସେମାନଙ୍କୁ ସମସ୍ତଙ୍କୁ ବୁଝାଇ ସୁଝାଇ ଫେରାଇ ଦେଲେ । ତା'ପରେ କାଳିଞ୍ଜର ଗିରୀକୁ ଯାଇ ନିଜ ପତ୍ନୀ ଓ ମନ୍ତ୍ରୀମାନଙ୍କ ସହିତ ଦେହ ତ୍ୟାଗ କଲେ ।

ମହାରାଜ ଉଦୟନ ଚାଲିଯିବା ପରେ ଗୋପାଳଙ୍କ ମନ କୌଶାମ୍ବୀରେ ଲାଗିଲା ନାହିଁ । ସେ ନିଜ ସାନଭାଇ ପାଳକଙ୍କୁ ଡକାଇ କହିଲେ— ତମେ ଉଜ୍ଜୟିନୀ ଓ କୌଶାମ୍ବୀ ଦୁଇ ରାଜ୍ୟକୁ ସମ୍ଭାଳ । ତା'ପରେ ସେ ତାଙ୍କୁ ବହୁତ ବୁଝାଇ ସୁଝାଇ କୌଶାମ୍ବୀର ରାଜ୍ୟଭାର ଦେଇ ତପୋବନକୁ ଚାଲିଗଲେ ।

ନରବାହନଦତ୍ତଙ୍କୁ ତାଙ୍କର ବିଦ୍ୟାର ପ୍ରଭାବରେ ସବୁ ଖବର ଜଣାପଡ଼ିଲା । ସେ ଶୋକାକୁଳ ହୋଇ ବାପା ଓ ମା'ଙ୍କ ଅନ୍ତ୍ୟେଷ୍ଟିକ୍ରିୟା ସମ୍ପନ୍ନ କଲେ । ତା'ପରେ ତାଙ୍କୁ ବିଦ୍ୟାଧର ରାଜ୍ୟର ଅଦ୍ଭୁତ ଐଶ୍ୱର୍ଯ୍ୟ ମଧ୍ୟ ଅସାର ଲାଗିଲା ।

ଅନ୍ୟ ପକ୍ଷରେ ଗୋପାଳଙ୍କ ସାନଭାଇ ପାଳକ ଉଜ୍ଜୟିନୀ ଓ କୌଶାମ୍ବୀ- ଦୁଇଟିଯାକ ରାଜ୍ୟର ଭାର ସମ୍ଭାଳିଲେ । ଦିନେ ତାଙ୍କ ମନ୍ତ୍ରୀମାନେ ତାଙ୍କୁ କହିଲେ— ରାଜନ ! ଆଜି ଜଳଦାନ ଉତ୍ସବ । ଆପଣ ଜଳଦାନ କରାନ୍ତୁ ।

ପାଳକ ପଚାରିଲେ— ଜଳଦାନ ଉତ୍ସବ କାହିଁକି କରାଯାଏ ?

ମନ୍ତ୍ରୀମାନେ କହିଲେ— ଆପଣଙ୍କ ବାପା ଚଣ୍ଡମହାସେନ ଅଙ୍ଗାରକ ନାମକ ଅସୁରକୁ ମାରି ତା'ର ଝିଅ ଦେବୀ ଅଙ୍ଗାରବତୀଙ୍କୁ ବିବାହ କରିଥିଲେ । ମରିବା ବେଳେ ଅସୁର ଅଭିଶାପ ଦେଇଥିଲା ଯେ, ଯିଏ ତାହାକୁ ମାରିଛି, ସେ ଯଦି ପ୍ରତିବର୍ଷ ତା'ପାଇଁ ଜଳଦାନ ଉତ୍ସବ ନକରାଏ ତା'ହେଲେ ତା' ମନ୍ତ୍ରୀମାନେ ମରିଯିବେ । ତେଣୁ ଉଜ୍ଜୟିନୀରେ ସେ ଅସୁରର ଶ୍ରାଦ୍ଧଦିନ ଜଳଦାନ ଉତ୍ସବ କରାଯାଏ ।

ଏଇ କଥା ଶୁଣି ପାଳକ ଜଳଦାନ ଉତ୍ସବ କରିବା ପାଇଁ ଆଦେଶ ଦେଲେ । ସାରା ନଗର କୋଳାହଳ ନୃତ୍ୟ, ସଙ୍ଗୀତରେ ବୁଡ଼ିଗଲା । ଏଇ କୋଳାହଳ ଯୋଗୁଁ ରାଜାଙ୍କ ସେନାର ଗୋଟିଏ ହାତୀ ପାଗଳ ହୋଇ ସେ ବନ୍ଧା ହୋଇଥିବା ଖମ୍ବକୁ ଭାଙ୍ଗିଦେଇ ପଳାଇଲା । ମାହୁନ୍ତମାନେ ତାକୁ ଆୟତ୍ତ କରିବାକୁ ଦୌଡ଼ିଲେ କିନ୍ତୁ ସେମାନଙ୍କ ଭିତରୁ କେହି ହାତୀଟିକୁ ଆୟତ୍ତ କରିପାରିଲେ ନାହିଁ କି ଅଙ୍କୁଶ ମାରି ବି ତା'ର କିଛି କରିପାରିଲେ ନାହିଁ । ଲୋକମାନେ ହାତୀ ଭୟରେ ପ୍ରଧାନ ରାସ୍ତା ଛାଡ଼ି ଏଣେତେଣେ ଦଉଡ଼ିଲେ । ପଳାଇ ଯାଉ ଯାଉ ହାତୀଟି ନଗର ବାହାରେ ଥିବା ଚଣ୍ଡାଳ ବସ୍ତିରେ ପଶିଗଲା । ସେ ଚଣ୍ଡାଳବସ୍ତି ଭିତରେ ବୁଲିବାକୁ ଲାଗିଲା । ସେତିକି ବେଳେ ଜଣେ ଅତି ସୁନ୍ଦରୀ ଚଣ୍ଡାଳ ଯୁବତୀ ଗୋଟିଏ ଘର ଭିତରୁ ବାହାରି ଆସିଲା । ସେ ହାତୀ ଆଗକୁ ଯାଇ ତା' ଶୁଣ୍ଢକୁ ଧରିନେଲା । ତା'ର ଛୁଇଁବାଟା ହାତୀ ଉପରେ ଯାଦୁଭଳି ପ୍ରଭାବ ପକାଇଲା । ସେ ଗର୍ଜନ କରିବା ଓ ପଳେଇବା ବନ୍ଦକରି ଯୁବତୀ ଆଗରେ ଶାନ୍ତ ହୋଇ ବସିଗଲା । ତା'ପରେ ଯୁବତୀଟି ତା' ଉପରେ ଚଢ଼ିଗଲା । ତା'ପରେ ହାତୀଟି ଠିଆ ହୋଇଗଲା ଓ ଯୁବତୀଟିକୁ ତା' ପିଠିରେ ବସାଇ ନଗର ଭିତରେ ବୁଲାଇବାକୁ ଲାଗିଲା ।

ଏତିକିବେଳେ ପାଳକଙ୍କ ପୁଅ ରାଜକୁମାର ଅବନ୍ତୀବର୍ଦ୍ଧନଙ୍କର ଦୃଷ୍ଟି ହାତୀ ଉପରେ ବସିଥିବା ସୁନ୍ଦରୀ ଯୁବତୀଟି ଉପରେ ପଡ଼ିଲା । ଉଜ୍ଜୟିନୀର ଲୋକମାନେ ତ ଚକିତ ହୋଇ ସେ ଚମତ୍କାରିତା ଦେଖୁଥିଲେ— ଯେଉଁ ହାତୀକୁ ବଡ଼ ବଡ଼ ମାହୁନ୍ତମାନେ ଆୟତ୍ତ କରିପାରି ନଥିଲେ, ତାକୁ ସେଇ ଯୁବତୀଟି ଯେମିତି ତା'ର କିଣା ଚାକର କରିନେଇଥିଲା । ରାଜକୁମାର ଅବନ୍ତିବର୍ଦ୍ଧନ ମଧ୍ୟ ମୁଗ୍ଧହୋଇ ସେଇ ଯୁବତୀଟିକୁ ଦେଖୁଥିଲେ । ସେତିକିବେଳେ ସେଇ ଯୁବତୀଟିର ଦୃଷ୍ଟି ମଧ୍ୟ ରାଜକୁମାରଙ୍କ ଉପରେ ପଡ଼ିଗଲା ଓ ସେ ରାଜକୁମାରଙ୍କୁ ଅପଲକ ଆଖିରେ ନିରିଖେଇ ଦେଖିବାରେ ଲାଗିଲା । ସେତିକିବେଳେ ସେଇ ହାତୀଟି ଟାଣ ଖରା ଯୋଗୁଁ ସେଇ ଯୁବତୀକୁ ବିଶ୍ରାମ ଦେବା ପାଇଁ ଗୋଟିଏ ଗଛ ଛାଇ ତଳକୁ



ନେଇ ଅଟକି ଗଲା । ସେତିକିବେଳେ ସେଇ ହାତୀର ମାହୁନ୍ତ ମଧ୍ୟ ଆସି ପହଞ୍ଚିଗଲା । ସେଇ ଯୁବତୀଟି ହାତୀ ପିଠିରୁ ଓହ୍ଲାଇ ଓ ରାଜକୁମାରଙ୍କୁ ପ୍ରେମପୂର୍ଣ୍ଣ ଦୃଷ୍ଟିରେ ଚାହିଁ ଚାହିଁ ଚଣ୍ଡାଳ ବସ୍ତିକୁ ଫେରିଗଲା ।

ରାଜକୁମାରଙ୍କ ମନ ସେଇ ଉତ୍ସବ ଉପରୁ ଛାଡ଼ିଗଲା । ଚଣ୍ଡାଳ କନ୍ୟା ତାଙ୍କ ହୃଦୟରେ ବସି ଯାଇଥିଲା । ସେ କହିବା ଓ ହସିବା ବନ୍ଦ କରିଦେଲେ ଓ ଦିନରାତି ଚଣ୍ଡାଳ କନ୍ୟାକୁ ଧ୍ୟାନ କରିବାରେ ବୁଡ଼ି ରହିଲେ ।

ରାଜକୁମାରଙ୍କ ଏଇ ଅବସ୍ଥା ଦେଖି ତାଙ୍କ ମା' ଅବନ୍ତୀ ଦେବୀ, ବାପା ପାଳକ ଓ ତାଙ୍କ ବନ୍ଧୁମାନେ ଚିନ୍ତିତ ହୋଇଗଲେ । ମହାରାଜ ପାଳକ ପତ୍ତା ଲଗାଇଲେ । ସେଇ ଯୁବତୀଟି ଉତ୍ପଳହସ୍ତ ନାମକ ଜଣେ ଚଣ୍ଡାଳର ଝିଅ । ତା'ର ନାମ ସୁରତ ମଞ୍ଜରୀ । ତା'ର ଅପୂର୍ବ ସୌନ୍ଦର୍ଯ୍ୟ ଚର୍ଚ୍ଚା ଚଣ୍ଡାଳବସ୍ତିରୁ ବାହାରି ସାରା ନଗରରେ ଖେଳିଗଲା ।

ମହାରାଜ ପାଳକ ଦ୍ୱନ୍ଦ୍ୱରେ ପଡ଼ିଗଲେ ଯେ, ପୁଅ ପ୍ରେମରେ ପଡ଼ିଲା ଯେ, ପୁଣି ଗୋଟିଏ ଚଣ୍ଡାଳ ଝିଅ ସାଙ୍ଗରେ । ରାଣୀ ଅବନ୍ତୀ ଦେବୀ କହିଲେ— ପୁଅକୁ ବୁଝାଅ, ସୁଝାଅ । ସେ ହୁଏତ ତମ କଥା ମାନି ଯାଇପାରେ ।

ମହାରାଜ ପାଳକ କହିଲେ— ଦେବୀ, ପ୍ରେମର ଗତି ବିଚିତ୍ର ହୋଇଥାଏ । ଯେତେ ବୁଝାଇଲେ ବି ଆମ ପୁଅ ଉପରେ କିଛି ପ୍ରଭାବ ପଡ଼ିବ ନାହିଁ । ମହାରାଜ ପ୍ରସେନ୍‌ଜିତଙ୍କ ରାଜ ବଂଶରେ ବି ଏମିତି ହୋଇ ସାରିଛି । ସେଇ ଘଟଣା ମୁଁ ତମକୁ କହୁଛି, ଶୁଣ ।

## କୁରଙ୍ଗୀ କଥା

ଶ୍ରାବସ୍ତୀରେ ରାଜା ପ୍ରସେନଜିତ ରାଜତ୍ୱ କରୁଥିଲେ । ତାଙ୍କର ଗୋଟିଏ ଝିଅ ଥିଲା ତା' ନାଁ କୁରଙ୍ଗୀ । ସେ ଅପ୍ସରା ଭଳି ସୁନ୍ଦରୀ ଥିଲା । ଥରେ ସେ ବଗିଚାରେ ବୁଲୁଥିଲାବେଳେ ଜଙ୍ଗଲରୁ ଖସି ଯାଇଥିବା ଗୋଟେ ପାଗଳା ହାତୀ ପଳାଇ ଯାଉ ଯାଉ ସେଇ ବଗିଚା ଭିତରକୁ ଧସେଇ ପଶିଗଲା । ସେ ତା' ଶୁଣ୍ଢରେ ଗୁଡ଼ାଇ କୁରଙ୍ଗୀକୁ ଉଠାଇ ନେଲା । ରାଜକୁମାରୀ ସହିତ ଥିବା ଦାସୀ ଓ ସଖୀମାନେ ହାଉଳି ଖାଇ ଡରରେ ଯେ ଯୁଆଡ଼େ ପାରିଲେ ପଳାଇ ଗଲେ । ରାଜକୁମାରୀ ମଧ୍ୟ ନିଜକୁ ବଞ୍ଚାଇବା ପାଇଁ ହାଉଳି ଖାଇବାକୁ ଲାଗିଲା । ସେତିକିବେଳେ ଜଣେ ଚଣ୍ଡାଳ ଯୁବକ ସେଇ ବାଟେ ଯାଉଥିଲା । କୋଳାହଳ ଶୁଣି ସେ ବଗିଚାକୁ ବାହାରି ଆସିଲା ଓ ରାଜକୁମାରୀକୁ ଏଭଳି ଅବସ୍ଥାରେ ଦେଖି ଖଣ୍ଡା ବାହାର କରି ହାତୀ ଶୁଣ୍ଢକୁ ହାଣି ପକାଇଲା । ହାତୀଟି ମରି ପଡ଼ିଲା । ରାଜକୁମାରୀ ସେଇ ଚଣ୍ଡାଳ ଯୁବକର ବୀରତ୍ୱ ଓ ସୌନ୍ଦର୍ଯ୍ୟରେ ମୁଗ୍ଧହୋଇ ତାକୁ ପ୍ରେମପୂର୍ଣ୍ଣ ଦୃଷ୍ଟିରେ ଚାହିଁ ଚାହିଁ ନିଜର ସଖୀମାନଙ୍କ ସହିତ ରାଜଭବନକୁ ଫେରିଗଲା । ଚଣ୍ଡାଳ ଯୁବକ ମଧ୍ୟ ତା' ବସ୍ତିକୁ ଚାଲିଗଲା । ରାଜକୁମାରୀ ପ୍ରତିଜ୍ଞା କଲା ଯେ, ଯିଏ ହାତୀଠୁଁ ତା ଜୀବନ ବଞ୍ଚାଇଛି, ସେ ହିଁ କେବଳ ତା'ର ସ୍ୱାମୀ ହେବ, ନହେଲେ ସେ ଜୀବନ ହରାଇ ଦେବ ।

ସେଇ ଚଣ୍ଡାଳ ଯୁବକ ମଧ୍ୟ ରାଜକୁମାରୀର କଟାକ୍ଷରେ ଘାଏଲ ହୋଇଯାଇଥିଲା । ଘରକୁ ଫେରି ସେ ରାଜକୁମାରୀ ସ୍ମୃତିରେ ହଜିଗଲା । ପୁଣି ଭାବିବାକୁ ଲାଗିଲା— ମୁଁ କୋଉଠି ଆଉ ସେ ରାଜକୁମାରୀ କୋଉଠି ? କିନ୍ତୁ ମୁଁ ତ ତାକୁ ଭୁଲି ପାରିବିନି । ଆଉ ତାକୁ ନ ପାଇଲେ ମୋ ଜୀବନ ବ୍ୟର୍ଥ । —ଏଇୟା ଭାବି ରାତି ଅଧରେ ସେ ମଶାଣିରେ ପହଞ୍ଚିଲା । ମଶାଣିରେ ସେ ନିଜ ଚିତା

ନିଜେ ତିଆରି କଲା ଓ କାମନା କଲା ଯେ, ପରଜନ୍ମରେ ରାଜକୁମାରୀ ତା'ର ସ୍ତ୍ରୀ ହେବ । ତା'ପରେ ସେ ନିଆଁକୁ ଡେଇଁ ପଡ଼ିଲା । ମାତ୍ର ଅଗ୍ନି ଦେବତା ସ୍ୱୟଂ ତା' ସମ୍ମୁଖରେ ଆବିର୍ଭୂତ ହେଲେ । ଅଗ୍ନି ଦେବତା ତାକୁ କହିଲେ— ତୁ ଚଣ୍ଡାଳ ନୁହଁ, ତୁ ମୋ ପୁଅ । ତୁ ଘରକୁ ଯା । ରାଜା ପ୍ରସେନଜିତ ନିଜେ ତା' ଝିଅକୁ ତୋ' ସହିତ ବିବାହ ଦେବ ।

ତା'ପରଦିନ ରାଜା ପ୍ରସେନଜିତ ନିଜର ସେବକମାନଙ୍କୁ ପଠାଇ ଚଣ୍ଡାଳ ଯୁବକକୁ ଡକାଇ ନେଇ ନିଜ ଝିଅ ସହିତ ତା'ର ବିବାହ କରାଇଲେ ।

କଥାଟି ଶୁଣାଇ ସାରି ରାଜା ପାଳକ ରାଣୀ ଅବନ୍ତୀଦେବୀଙ୍କୁ କହିଲେ— ତେଣୁ ମୁଁ ଭାବୁଛି ଯଦି ଆମ ପୁଅର ମନ ସେଇ ଚଣ୍ଡାଳ ଝିଅ ଉପରେ ଲାଗିଛି ଓ ସେ ତାକୁ କୌଣସିମତେ ଭୁଲି ପାରୁନାହିଁ, ତା'ହେଲେ ତାକୁ ସେଇ ଝିଅଟି ସହ ବାହା କରିଦେବା ଭଲ ହେବ । ମୋର ମନେ ହେଉଛି ସେ ଚଣ୍ଡାଳ ଝିଅ କୌଣସି ଦେବୀ ହୋଇଥିବ ନିଶ୍ଚୟ ।

ଏହି କଥାବାର୍ତ୍ତା ଶୁଣୁଥିବା ପାଳକଙ୍କର ମନ୍ତ୍ରୀ କହିଲେ— ମହାରାଜ ! ଏଇ ପ୍ରକାର ବିବାହ ମଧ୍ୟ ଆଗରୁ ହୋଇ ଆସୁଛି । ଶାସ୍ତ୍ରଜ୍ଞ ପଣ୍ଡିତମାନେ ମଧ୍ୟ ମତ ଦେଇଛନ୍ତି ଯଦି କୌଣସି ଯୁବକର ମନ ଓ ଆଖି କୌଣସି ଯୁବତୀ ସହିତ ମିଳିଚି, ତା'ହେଲେ ଦୁଇଜଣଙ୍କୁ ବାହା କରିଦେବା ଉଚିତ । ଏହି ବିଷୟରେ ମୁଁ ଆପଣମାନଙ୍କୁ ଗୋଟିଏ ଗପ ଶୁଣାଉଛି ।

## କୈବର୍ତ୍ତ ଯୁବକ କଥା

ରାଜଗୃହରେ ମଳୟ ସିଂହ ନାମରେ ଜଣେ ରାଜା ରାଜତ୍ୱ କରୁଥିଲେ । ତାଙ୍କର ମାୟାବତୀ ନାମରେ ଅପୂର୍ବ ସୁନ୍ଦରୀ ଝିଅଟିଏ ଥିଲା । ଦିନେ ସେ ରାଜାଙ୍କ ବଗିଚାରେ ଖେଳୁ ଥିଲାବେଳେ ଜଣେ କୈବର୍ତ୍ତ ଯୁବକର ଦୃଷ୍ଟି ତା' ଉପରେ ପଡ଼ିଗଲା । ସୁପ୍ରହାର ନାମକ ସେଇ କୈବର୍ତ୍ତ ଯୁବକ ରାଜକୁମାରୀକୁ ଦେଖି ତା' ପ୍ରେମରେ ବ୍ୟାକୁଳ ହୋଇଗଲା । ଘରକୁ ଯାଇ ଶୋଇଲା । କିନ୍ତୁ ନିଶ୍ଚଳ ହୋଇ ପଡ଼ି ରହିଲା ଓ ସେଇ ଦିନଠୁଁ ସେ ମାଛ ମାରିବା ଛାଡ଼ି ଦେଲା । ଖାଇବା ମଧ୍ୟ ଛାଡ଼ିଦେଲା । ତା' ମା' ତାକୁ ସ୍ନେହରେ ପଚାରିଲା— କଥା କ'ଣ ? ସେ ତା' ମା'କୁ ତା ମନ କଥା କହିଦେଲା ।

ତା' ମା'ର ନାଁ ରଚନିକା ଥିଲା । ରଚନିକା ତା' ପୁଅକୁ କହିଲା— ପୁଅ ! ତୁ ଚିନ୍ତା କରନା । ମୁଁ ତୋ କାମ କରିଦେବି । ତୁ ନିଶ୍ଚିନ୍ତ ହୋଇ ଖାଇନେ । ମୁଁ ରାଜକୁମାରୀ ସହିତ ତୋର ଭେଟ କରାଇବା ପାଇଁ ବାହାରିଲି ।

ମା' କଥା ମାନି ସୁପ୍ରହାର ଭାତ ଖାଇଲା । ତା'ପରେ ରଚନିକା ଗୋଟିଏ ଟୋକେଇରେ ଭଲ ଭଲ ମାଛ ଭର୍ତ୍ତିକରି ରାଜପ୍ରାସାଦରେ ପହଞ୍ଚିଲା । ରାଣୀ ଅନ୍ତଃପୁରର ଦ୍ୱାର ପାଖରେ ପହଞ୍ଚି ସେ ଜଗୁଆଳୀମାନଙ୍କୁ କହିଲା— ମୁଁ ରାଜକୁମାରୀଙ୍କ ପାଇଁ କିଛି ଉପହାର ଆଣିଛି, ତାଙ୍କୁ ହିଁ କେବଳ ଦେବି ।

ଜଗୁଆଳୀମାନେ ତାକୁ ରାଜକୁମାରୀ ପାଖରେ ପହଞ୍ଚାଇ ଦେଲେ । ରଚନିକା ରାଜକୁମାରୀଙ୍କୁ ମାଛ ଦେଲା ଓ କିଛି ସମୟ ଧରି ତାକୁ ମିଠା ମିଠା କଥା କହିଲା । ତା'ପରେ ସେ ପ୍ରତିଦିନ ରାଜକୁମାରୀକୁ ଭେଟିବାକୁ ଗଲା ଓ ଭଲ ଭଲ ମାଛ ରାଜକୁମାରୀକୁ ଉପହାର ଦେବାକୁ ସାଙ୍ଗରେ ନେଇଗଲା । ଦିନେ ସେ ଓର ଉଣ୍ଡି ରାଜକୁମାରୀକୁ କହିଲା— ଜେମା ! ମୁଁ ତମକୁ ଏକାନ୍ତରେ କିଛି କହିବାକୁ ଚାହୁଁଛି ।



ରଚନିକାର କଥା ଶୁଣି ରାଜକୁମାରୀ ତା'ର ଦାସୀ ଓ ସାଥୀମାନଙ୍କୁ ବାହାରକୁ ପଠାଇ ଦେଲା । ତା'ପରେ ରଚନିକା ରାଜକୁମାରୀକୁ କହିଲା— ଜେମା ! ମୋ ପୁଅ ଥରେ ତମକୁ ବଗିଚାରେ ବୁଲିଲା ବେଳେ ଦେଖିଥିଲା । ସେଇ ଦିନଠୁଁ ସେ ତମ ବିନା ବ୍ୟାକୁଳ । ଥରେ ତମେ ତାକୁ ଦେଖି ଛୁଇଁ ଦେଲେ ସେ ବଞ୍ଚିବ, ନ ହେଲେ ସେ ଜୀବନ ହରାଇ ଦେବ ।

ରଚନିକା କଥା ଶୁଣି ରାଜକୁମାରୀ ଲାଜେଇ ଗଲା, ପୁଣି ଚିନ୍ତାରେ ପଡ଼ିଗଲା । ରଚନିକା ପୁଣି ତାକୁ ମିନତି କରିବାକୁ ଲାଗିଲା । ରାଜକୁମାରୀ ତାକୁ କହିଲା— ଠିକ୍ ଅଛି । ରାତିରେ ତମ ପୁଅକୁ ଗୋପନରେ ମୋ ଘରକୁ ପଠାଇ ଦିଅ । ଯେମିତି ଏ କଥା କାହାରି କାନକୁ ନଯାଏ ।

ରଚନିକା ଖୁସିହୋଇ ନିଜ ଘରକୁ ଫେରିଲା । ରାତି ହେବାରୁ ସେ ପୁଅକୁ ଭଲଭାବେ ସଜାଇ ଗୋପନରେ ରାଣୀ ଅନ୍ତଃପୁରକୁ ନେଇ ଆସିଲା । ରାଜକୁମାରୀ ମଧ୍ୟ ସେଇ କୈବର୍ତ୍ତ ଯୁବକର ସରଳ ଓ ସହଜ ଅନୁରାଗ ଦେଖି ଆନନ୍ଦିତ ହେଲା । ଦୁହେଁ କିଛି ସମୟ ଧରି ଆଳାପ କଲେ । ତା'ପରେ ରାଜକୁମାରୀ ସ୍ନେହରେ ସୁପ୍ରହାରର ପିଠି ଥାପୁଡ଼ାଇ ତାକୁ କହିଲା— ତମେ ସେଇ ଘରକୁ ଯାଅ । ସମସ୍ତେ ଶୋଇଗଲା ପରେ ମୁଁ ତମକୁ ପଛ ଦରଜା ବାଟେ ବାହାରକୁ ପଠେଇ ଦେବି ।

ସୁପ୍ରହାର ସେଇ ଶେଜ ଉପରେ ଶୋଇପଡ଼ିଲା । ରାଜକୁମାରୀ କିଛି ସମୟ ଧରି ମୁଗ୍ଧହୋଇ ତା'ର ସେଇ ପ୍ରେମିକକୁ ଚାହିଁ ରହିଲା । ତା'ପରେ କାଳେ କେହି ସଖି ଜାଣିପାରିବେ ଭାବି ସେ ସେଇ ଘରକୁ ବାହାରୁ ବନ୍ଦକରି ସଖିମାନଙ୍କ ଗହଣରେ ଯାଇ ବସି ପଡ଼ିଲା । କିଛି ସମୟ ପରେ ସୁପ୍ରହାରର ନିଦ ଭାଙ୍ଗିଗଲା । ରାଜକୁମାରୀକୁ ନଦେଖି ବେଦନାରେ ତା'ର ଜୀବନ ଚାଲିଗଲା । ରାଜକୁମାରୀ ଫେରିଆସି ଦେଖିଲା ଯେ, ତା'ର ପ୍ରିୟ ମରି ପଡ଼ିଛି । ସେ ଛାଉଁକି ଖାଇ କାନ୍ଦିବାକୁ ଲାଗିଲା । ଅନ୍ତଃପୁରର ସମସ୍ତେ ଚେଇଁ ଉଠିଲେ । ରାଜା ଓ ରାଣୀଙ୍କ ପାଖକୁ ଖବର ଗଲା । ରାଜକୁମାରୀ କହିଲା ଯେ, ସେ ସଙ୍ଗେ ସଙ୍ଗେ ତା'ର ପ୍ରିୟର ଚିତା ଉପରେ ପୋଡ଼ିହୋଇ ଜୀବନ ହରାଇ ଦେବ । ରାଜକୁମାରୀ କଥା ଶୁଣି ତା'ର ବାପା ଓ ମା' ସ୍ତବ୍ଧ ହୋଇଗଲେ । ସମସ୍ତେ ରାଜକୁମାରୀକୁ ଏମିତି ଅନର୍ଥ ନ କରିବାକୁ ବୁଝାଇଲେ । ରାଜକୁମାରୀ ନିଜ ନିଷ୍ପତ୍ତିରୁ ଟଳିଲା ନାହିଁ । ତା'ପରେ ରାଜା ମଳୟ ସିଂହ ଆମରଣ ସାଙ୍କୁ ବ୍ରତ କରି ବସିଗଲେ ଓ ଦେବତାମାନଙ୍କୁ ସମ୍ବୋଧନ କରି କହିଲେ— ଯଦି ମୋ'ର ଭଗବାନ ଶିବଙ୍କ ପ୍ରତି ସଚ୍ଚା ଭକ୍ତିଥାଏ, ତା'ହେଲେ ପ୍ରଭୁ ମୋତେ କୁହନ୍ତୁ ଏଇ ସଙ୍କଟର ସମାଧାନ କେମିତି କରାଯିବ ।

ରାଜାଙ୍କ ପ୍ରାର୍ଥନାରେ ଆକାଶବାଣୀ ହେଲା— ସୁପ୍ରହାର ଏହି ରାଜକୁମାରୀର ସଚ୍ଚା ପ୍ରେମିକ ଆଉ ସେ ତା'ର ସ୍ୱାମୀ ହେବ । ଯଦି ରାଜକୁମାରୀ ତା' ନିଜ ଆୟୁଷରୁ ଅଧେ ସୁପ୍ରହାରକୁ ଦେଇ ଦେବ, ତା' ହେଲେ ସେ ଜୀଇ ଉଠିବ ।

ଆକାଶବାଣୀ ଶୁଣିବା ମାତ୍ରେ ରାଜକୁମାରୀ ତା' ନିଜ ଆୟୁଷରୁ ଅଧେ ସଂକଳ୍ପ କରି ସୁପ୍ରହାରକୁ ଦାନ କରିଦେଲା । ସୁପ୍ରହାର ଜୀଇ ଉଠିଲା । ତା'ପରେ ସମସ୍ତେ ଆନନ୍ଦ ଉତ୍ସବ କଲେ ଓ ରାଜକୁମାରୀର ବିବାହ ସୁପ୍ରହାର ସହିତ କରିଦିଆଗଲା ।

ମନ୍ତ୍ରୀଙ୍କ ଠାରୁ ଏଇ କଥା ଶୁଣି ପାଳକ ନିଜ ପୁଅର ଜୀବନ ବଞ୍ଚାଇବା ପାଇଁ ବିନା ଦ୍ୱିଧାରେ ଚଣ୍ଡାଳ ଝିଅ ସହିତ ତା'ର ବିବାହ କରିବାକୁ ସିଦ୍ଧାନ୍ତ ନେଲେ । ସେ ସଙ୍ଗେ ସଙ୍ଗେ ଚଣ୍ଡାଳ ଝିଅ ସୁରତମଞ୍ଜରୀର ହାତ ମାଗିବା ପାଇଁ ତାଙ୍କ ଦୂତକୁ ସୁରତମଞ୍ଜରୀର ବାପା ଉତ୍ପଳଦେବଙ୍କ ପାଖକୁ ପଠାଇଲେ । ଉତ୍ପଳଦେବ କହିଲେ— ମୋ ଝିଅର ବାହାଘର ଉଜ୍ଜୟିନୀର ରାଜକୁମାରଙ୍କ ସହିତ ହେବ, ଏହାଠାରୁ ବଳି ଆନନ୍ଦର କଥା ଆଉ କ'ଣ ହୋଇପାରେ ? କିନ୍ତୁ ମୁଁ ମଧ୍ୟ ମୋ ଝିଅର ବିବାହ ବିଷୟରେ ଗୋଟିଏ ପ୍ରତିଜ୍ଞା କରି ରଖିଛି ।

ଦୂତ ପଚାରିଲା– ଆପଣଙ୍କ ପ୍ରତିଜ୍ଞା କ'ଣ ?

ଉତ୍ପଳଦେବ କହିଲେ– ଯିଏ ମୋ ଘରକୁ ଅଠର ହଜାର ବ୍ରାହ୍ମଣଙ୍କୁ ଆଣି ଭୋଜନ କରାଇବ, ମୁଁ ତାକୁ ମୋ ଝିଅକୁ ଦେବି ।

ଦୂତ ଫେରିଯାଇ ରାଜାଙ୍କୁ ଉତ୍ପଳଦେବଙ୍କ ପ୍ରତିଜ୍ଞା ବିଷୟରେ ଜଣାଇଲା । ମହାରାଜ ରାଜାଙ୍କ ଉଜ୍ଜୟିନୀର ସବୁ ବ୍ରାହ୍ମଣଙ୍କୁ ଡକାଇ କହିଲେ– ମୋର ଆଦେଶ, ଆପଣମାନେ ଯାଇ ଚଣ୍ଡାଳ ଉତ୍ପଳଦେବଙ୍କ ଘରେ ଭୋଜନ କରନ୍ତୁ । ଯଦି ଆପଣ ସେଇଆ ନ କରିବେ, ଭଲ ହେବ ନାହିଁ ।

ଉଜ୍ଜୟିନୀର ସବୁ ବ୍ରାହ୍ମଣ ରାଜାଙ୍କ ଏଇ ଆଦେଶରେ ବିଚଳିତ ହୋଇଗଲେ । ସେ ରାଜାଙ୍କ କ୍ରୋଧକୁ ବି ଡରୁଥିଲେ ଆଉ ଚଣ୍ଡାଳ ଘରେ ଖାଇଲେ ନିଜର ଧର୍ମ ହାନି ହେବ ବୋଲି ମଧ୍ୟ ଡରୁଥିଲେ । ସେମାନେ ସମସ୍ତେ ମହାକାଳଙ୍କ ମନ୍ଦିରକୁ ଯାଇ ମହାକାଳଙ୍କୁ ପ୍ରାର୍ଥନା କଲେ– ଭଗବାନ ! ଆମକୁ ଏଇ ସଙ୍କଟରୁ ବଞ୍ଚାନ୍ତୁ ।

ବ୍ରାହ୍ମଣମାନଙ୍କ ପ୍ରାର୍ଥନାରେ ମହାକାଳ ସେମାନଙ୍କୁ ଦର୍ଶନ ଦେଇ କହିଲେ– ବିନା ଦ୍ୱିଧାରେ ତମେ ସମସ୍ତେ ଚଣ୍ଡାଳରାଜ ଉତ୍ପଳଦେବ ଘରକୁ ଯାଇ ଭୋଜନ କର । ସେ ତ ପୂର୍ବ ଜନ୍ମର ବିଦ୍ୟାଧର ।

ଭଗବାନ ମହାକାଳଙ୍କ ଆଦେଶ ମାନି ସେଇସବୁ ବ୍ରାହ୍ମଣମାନେ ଚଣ୍ଡାଳ ଉତ୍ପଳଦେବଙ୍କ ଘରେ ଭୋଜନ କଲେ । ତା'ପରେ ସୁରତମଞ୍ଜରୀର ରାଜକୁମାର ଅବନ୍ତୀବର୍ଦ୍ଧନଙ୍କ ସହିତ ବିବାହ ଧୁମ୍‌ଧାମ୍‌ରେ ସମ୍ପନ୍ନ କରାଗଲା ।

ମହାଭାରତ ଯୁଦ୍ଧ ପରେ ପଞ୍ଚ ପାଣ୍ଡବ ଓ ଦ୍ରୌପଦୀ ହିମାଳୟକୁ ଯାଇ ଦେହତ୍ୟାଗ କରିବା ଭଳି ମହାରାଜ ଉଦୟନ, ତାଙ୍କ ଦୁଇ ରାଣୀ ଓ ମନ୍ତ୍ରୀମାନେ ସଂସାର ପ୍ରତି ବିମୁଖ ହୋଇ ରାଜଭୋଗ ତ୍ୟାଗ କରି କାଳିଞ୍ଜର ପର୍ବତକୁ ଯାଇ ଦେହ ତ୍ୟାଗ କଲେ ।

ତା ନ ବାପା ଓ ମା'ଙ୍କ ଦେହ ତ୍ୟାଗ ଖବର ନରବାହନଦତ୍ତ ପାଇଲେ ଓ ତାଙ୍କ ଉପରେ ସତେ ଯେମିତି ବଜ୍ରପାତ ହୋଇଛି, ସେଇଭଳି ସେ ଅନୁଭବ କଲେ । ଗୋମୁଖ ପ୍ରଭୃତି ମନ୍ତ୍ରୀମାନେ ତାଙ୍କୁ ବୁଝାଇବାରେ ସେ ସମସ୍ତ ମୃତକମାନଙ୍କର ଅନ୍ତ୍ୟେଷ୍ଟିକ୍ରିୟା ଶେଷ କଲେ ।

ତା'ପରେ ନରବାହନଦତ୍ତ ବିଦ୍ୟାଧରମାନଙ୍କ ଉପରେ ଅନନ୍ତକାଳ ଧରି ଏକଚ୍ଛତ୍ର ରାଜତ୍ୱ କରିବାକୁ ଲାଗିଲେ ।

ସେଇ ନରବାହନଦତ୍ତଙ୍କୁ ନେଇ ରଚିତ ଏଇ ବୃହତକଥାକୁ ଗୁଣାଢ୍ୟ ଲେଖିଲେ । ଏଇ ବୃହତ୍‌କଥାକୁ ଶୁଣି କାଣଭୂତି ରୂପରେ ବିନ୍ଧ୍ୟ ଜଙ୍ଗଲରେ ରହୁଥିବା ସୁପ୍ରତିକ ନାମକ ଶାପଗ୍ରସ୍ତ ଯକ୍ଷ ଶାପରୁ ମୁକ୍ତ ହେଲେ । ବରରୁଚି ହୋଇଥିବା ଶିବଙ୍କ ସେବକ ପୁଷ୍ପଦନ୍ତ ମଧ୍ୟ କାଣଭୂତିଙ୍କୁ ଏଇ କଥା ଶୁଣାଇ ଶିବଲୋକକୁ ଯାତ୍ରା କଲେ । ପୁଣି କାଣଭୂତିଙ୍କଠୁଁ ଏଇ କଥା ଶୁଣିଥିବା ଗୁଣାଢ୍ୟ ରୂପଧାରୀ ମାଲ୍ୟବାନ ଏଇ କଥାକୁ ପୃଥିବୀରେ ପ୍ରସିଦ୍ଧ କରିଦେଲେ । ବାସ୍ତବରେ ଏଇ ବୃହତ୍ କଥା ଶିବ-ପାର୍ବତୀଙ୍କ ପ୍ରଣୟରୂପୀ ମନ୍ଦିରକୁ ମନ୍ଥନ ଦ୍ୱାରା ଉତ୍ପନ୍ନ ହୋଇଥିବା ଅମୃତ । ଏହି ମର୍ତ୍ତ୍ୟଲୋକରେ ଲୋକମାନେ ଏହାକୁ ମନେ ରଖୁଥିବେ ଓ ଏହା ସବୁବେଳେ ଅକ୍ଷୟ ହୋଇ ରହିଥିବ ।

❑❑❑



ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀରେ ଗୁଣାଢ଼୍ୟ ବିରଚିତ 'ବୃହତ୍ କଥା' ବିଶ୍ୱ କଥା ସାହିତ୍ୟରେ ଅତୁଳନୀୟ । ପରବର୍ତ୍ତୀ କାଳରେ, ଏକାଦଶ ଶତାବ୍ଦୀରେ ବୃହତ୍ କଥାର ଭିତ୍ତିଭୂମି ଓ ମୂଳ କାହାଣୀକୁ ଆଧାର କରି ରଚିତ ସୋମଦେବ ଭଟ୍ଟଙ୍କ 'କଥା ସରିତ ସାଗର' । ଏହା ପୁରାଣ ଓ ଇତିହାସ, ବାସ୍ତବ ଓ ଅବାସ୍ତବ, ସତ୍ୟ ଓ ଇନ୍ଦ୍ରଜାଲର ଅପୂର୍ବ କାହାଣୀରେ ଚିତ୍ରିତ । ମୋଟ ଉପରେ ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀଠୁ ମଧ୍ୟଯୁଗ ପର୍ଯ୍ୟନ୍ତ ଆମ ଭାରତୀୟ ପରମ୍ପରା ଓ ସଂସ୍କୃତିର ଏକ ଅମୂଲ୍ୟ ଦସ୍ତାବିଜ୍ 'କଥା ସରିତ ସାଗର' ।

ସେଇ 'କଥା ସରିତ ସାଗରର' ଓଡ଼ିଆ ରୂପାନ୍ତର ଗାଳ୍ପିକ ଜଗନ୍ନାଥ ପାତ୍ରଙ୍କ ଆମ ଓଡ଼ିଆ ସାହିତ୍ୟକୁ ଏକ ଅମୂଲ୍ୟ ଅବଦାନ । ଏହାର ଭାଷା ଅତ୍ୟନ୍ତ ସରଳ, ସାବଲୀଳ । ଭାବ ଅତୀବ ପ୍ରାଞ୍ଜଳ । କନ୍ଦୁକୁଣ୍ଡଳା, ଦିଗ୍‌ବିଜୟ, ଜଳା କଟାସର ଆଖି ତାଙ୍କ ରଚିତ ତିନୋଟି ଗଳ୍ପ ସଙ୍କଳନ । ଯୁଗ୍ମ ଉପନ୍ୟାସ ଶୋଷ ବ୍ୟତୀତ ସାରା ରାତି ବର୍ଷା, ଗୀତାଞ୍ଜଳି ଓ ଗଙ୍ଗା ନଦୀର ବାଙ୍କ ତାଙ୍କ ଅନୁଦିତ ତିନୋଟି ପୁସ୍ତକ ।